# ନୂଆ ପାଠ ନୂଆ ବାଟ

## ଅଗ୍ରଗାମୀର ରଜତଜୟନ୍ତୀ ଉପଲକ୍ଷେ ପ୍ରକାଶିତ

ସମ୍ପାଦନା ମଣ୍ଡଳୀ

ଶ୍ରୀ ଅଚ୍ୟୁତ ଦାସ - ମୁଖ୍ୟ ସଂପାଦକ

ଶ୍ରୀମତୀ ବିଦ୍ୟା ଦାସ

ଶ୍ରୀ ପ୍ରଫୁଲ୍ଲ କୁମାର ବେହେରା

ପ୍ରଫେସର ଚିତ୍ତରଞ୍ଜନ ଦାସ

ଡଃ ଉଦ୍ଧବ ଚରଣ ନାୟକ

**ଅଗ୍ରଗାମୀ, ପ୍ରକାଶନ, କାଶୀପୁର**

**ରାୟଗଡ଼ା, ଓଡ଼ିଶା**

# Nua Patha Nua Bata

*Edited by*
**Achyut Das**

*Published by*
**AGRAGAMEE**
Kashipur - 765015
Dist- Rayagada (Orissa)

*Published in*
**September- 2007**

*Printed at :* **Siksha Prakasani**
Bhubaneswar

Price: **Rs.150/-**

# ନୂଆ ପାଠ ନୂଆ ବାଟ

ସଂପାଦନା: **ଅଚ୍ୟୁତ ଦାସ**

ପ୍ରକାଶକ: **ଅଗ୍ରଗାମୀ**
କାଶୀପୁର-୭୬୫୦୧୫
ଜିଲ୍ଲା - ରାୟଗଡା, ଓଡିଶା

ପ୍ରକାଶନ କାଳ:
ସେପ୍ଟେମ୍ବର - ୨୦୦୭

ମୁଦ୍ରଣ : **ଶିକ୍ଷା ପ୍ରକାଶନୀ**
ଭୁବନେଶ୍ୱର - ୭୫୧୦୦୩

ମୂଲ୍ୟ: ଟ.୧୫୦.୦୦

# ପ୍ରକାଶକଙ୍କ କଲମରୁ...

ଅକ୍ଟୋବର ୧୯୯୮ରେ 'ନୂଆ ପାଠ ନୂଆ ବାଟ' ଗୋଟିଏ ପତ୍ରିକା ଭାବରେ ଆତ୍ମପ୍ରକାଶ କଲା । ଏହା ଯେଉଁଦିନ ମୋ ହାତକୁ ଆସିଲା, ସେଦିନ ମୋର ଅନେକ ଦିନର ଏକ ସ୍ୱପ୍ନ ସାକାର ହେଲାଭଳି ଲାଗିଲା । ଅଗ୍ରଗାମୀ ହେବା ଦିନଠାରୁ ଶିକ୍ଷା ଆନ୍ଦୋଳନର ଯେଉଁ ଭିତ୍ତିଭୂମି ପ୍ରତିଷ୍ଠା ହୋଇଛି, ଏ ପତ୍ରିକା ତା'ର ହେଉଛି ଏକ ଝଲକମାତ୍ର ।

ସାରା ପୃଥିବୀରେ ଯୋଗାଯୋଗ ତଥା ନେଟୱାର୍କ ଏକ ଆବଶ୍ୟକତାରେ ପରିଗଣିତ ହୋଇଯାଇଛି । ସମଭାବାପନ୍ନ ବ୍ୟକ୍ତିମାନେ, ଆପଣା ଭିତରେ ମନର କଥାକୁ ଓ ଅଙ୍ଗେନିଭେଇଥିବା ଅନୁଭୂତିକୁ ଆଦାନପ୍ରଦାନ କରିବେ, ଏହା ହେଉଛି ନେଟୱାର୍କର ମୂଳ ଉଦ୍ଦେଶ୍ୟ । ଆମର ଗୁରୁଭାଇ ଭଉଣୀମାନେ ଜାଣିବାରେ ହେଉ କି ଅଜାଣତରେ ହେଉ, ଏହିଭଳି ଏକ ନେଟୱାର୍କ ଶିକ୍ଷା ଆନ୍ଦୋଳନ ପରିପ୍ରେକ୍ଷୀରେ ପ୍ରତିଷ୍ଠା କରିଥିଲେ । ଆମେ ବରାବର ଚାହୁଁଥିଲୁ- ଆମର ଗୁରୁଭାଇ ଭଉଣୀମାନେ ଗୋଟିଏ ନୂଆ ପୃଥିବୀ ଗଢ଼ିବେ । ଆଉ ସେହି ପୃଥିବୀରେ ଏକ ନୂତନ ଚଲାବାଟ ସୃଷ୍ଟି କରିବେ । ସେଇଥିପାଇଁ ନୂଆପାଠ ନୂଆବାଟ ପତ୍ରିକାକୁ ଗୋଟିଏ ମାଧ୍ୟମ ଭାବରେ ବ୍ୟବହାର କରିବାର ଯୋଜନା କରାଯାଇଥିଲା । ପତ୍ରିକାଟିର ନାମକରଣ ପଛରେ ବିଖ୍ୟାତ ଶିକ୍ଷାବିତ୍ ପାଉଲ ଫ୍ରାଂୟରେ 'ୱି ମେକ୍ ଦି ରୋଡ଼ ବାଇ ୱାକିଙ୍ଗ୍' (We make the road by walking)ର ବହୁଳ ପ୍ରଭାବ ନିଶ୍ଚିତ ଭାବରେ ରହିଛି । ବାସ୍ତବିକ ଏହା କେତେ ସତ ଯଦି ସେମାନେ ଗୋଟିଏ ବାଟରେ ଚାଲିବେ, ଅବାଟ ହେଲେ ବି କେତେ ଦିନ ଭିତରେ ତାହା ଏକ ଚଲାପଥରେ ପରିଣତ ହୋଇଯିବ ନିଶ୍ଚୟ ।

ଦୁର୍ଗମ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ 'ନବସୃଜନ ଶିକ୍ଷାକେନ୍ଦ୍ର'ମାନ ଏହିପରି ନୂତନ ଚଲାପଥ ସୃଷ୍ଟି କରିଛନ୍ତି । ଗୁରୁଭାଇ ଭଉଣୀମାନେ ବିଭିନ୍ନ ପ୍ରକାର ପରୀକ୍ଷାମୂଳକ ପଦ୍ଧତିମାନ ଅବଲମ୍ବନକରି ଆଦିବାସୀ ପିଲାମାନଙ୍କୁ ପଢ଼ାଉଥିଲେ । ଆଉ ସମ୍ମୁଖୀନ ହେଉଥିଲେ କେତେପ୍ରକାର ସମସ୍ୟାର । ଅଗ୍ରଗାମୀର ସାହାଯ୍ୟ ମିଳୁ କି ନମିଳୁ ସେମାନେ ନିଜସ୍ୱ ଢ଼ଙ୍ଗରେ ଏହି ସମସ୍ୟା ଗୁଡିକର ସମାଧାନ କରୁଥିଲେ । ଆଉ ସେମାନେ ଯେଉଁସବୁ

ଆହ୍ୱାନର ସମ୍ମୁଖୀନ ହେଉଥିଲେ, ସେ ସବୁ ମଧ୍ୟ ଲିପିବଦ୍ଧ କରିବା ଏକାନ୍ତ ଜରୁରୀ ହୋଇ ପଡୁଥିଲା । 'ନୂଆପାଠ ନୂଆବାଟ' ପତ୍ରିକା ଏହାକୁ ସଫଳ କରିବାରେ ସହାୟକ ହେଲା ।

'ନୂଆପାଠ ନୂଆବାଟ' ଖାଲି ଶିକ୍ଷକଙ୍କ ପାଖକୁ ଯାଉ ନଥିଲା । ଏହା ମଧ୍ୟ ଶିକ୍ଷାବିତ୍ ଓ ସରକାରୀ କର୍ମଚାରୀମାନଙ୍କ ପାଖକୁ ଯାଉଥିଲା । ଏହାକୁ ପଢ଼ି ସାରିବା ପରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ ଯେ, ଅଳ୍ପଶିକ୍ଷିତ ଗୁରୁଭାଇ ଭଉଣୀଙ୍କ ଲେଖନୀରୁ କିଭଳି ଗୁଣାତ୍ମକ ଲେଖା ବାହାରିପାରେ । ମୁଁ ଦୃଢ଼ ଭାବରେ କହିପାରେ ଆମର ଗୁରୁଭାଇ ଭଉଣୀମାନେ ସେମାନଙ୍କର ଆଭିମୁଖ୍ୟକୁ ଯେଉଁଭଳି ଭାବରେ ପ୍ରକାଶ କରିଛନ୍ତି ଏହା ଆମ ଭିତରେ ଥିବା ଅନେକ ଉଚ୍ଚ ଶିକ୍ଷିତ ବ୍ୟକ୍ତିମାନଙ୍କ ପକ୍ଷରେ ସମ୍ଭବ ନୁହେଁ ।

ସର୍ବଶିକ୍ଷା ଅଭିଯାନ ଆଦି ସରକାରୀ ଶିକ୍ଷା କାର୍ଯ୍ୟକ୍ରମ ଚାଲିବାରୁ ଏବଂ ଅଗ୍ରଗାମୀର ଆର୍ଥିକ ଦୁରବସ୍ଥା ଯୋଗୁ ନବସୃଜନ ଶିକ୍ଷା କେନ୍ଦ୍ର ଆଉ ଚାଲିପାରିଲା ନାହିଁ । ଗରୁଭାଇ ଭଉଣୀମାନେ ନବସୃଜନ ଶିକ୍ଷାକେନ୍ଦ୍ର ଛାଡି କିଏ କେଉଁ ଆଡ଼େ ନିଜକୁ ନିୟୋଜିତ କଲେ । 'ନୂଆପାଠ ନୂଆବାଟ' ପତ୍ରିକାର ପ୍ରକାଶନ ବନ୍ଦ ହୋଇଗଲା । କିନ୍ତୁ ସେମାନଙ୍କର ପ୍ରକାଶିତ ଏହି ଆଲେଖ୍ୟ ସବୁ ଅଗ୍ରଗାମୀର ଇତିହାସରେ ଚିରଦିନ ପାଇଁ ଜୀବିତ ହୋଇ ରହିଅଛି ।

'ନୂଆପାଠ ନୂଆବାଟ'ର ପରିକଳ୍ପନା ଓ ସଂଯୋଜନାରେ ଚିତ୍ତଭାଇ (ପ୍ରଫେସର ଚିତ୍ତ ରଞ୍ଜନ ଦାସ)ଙ୍କ ପ୍ରେରଣା ନିଶ୍ଚିତ ଥିଲା । ମୋର ସହକର୍ମୀମାନେ ଯେଉଁମାନେ କି ଶିକ୍ଷା ବିଭାଗରେ ଥିଲେ ସେମାନଙ୍କୁ ଅଶେଷ ଧନ୍ୟବାଦ । ସେହି ପତ୍ରିକାମାନଙ୍କରୁ କେତୋଟି ନିର୍ବାଚିତ ଲେଖାକୁ ଗ୍ରହଣ କରାଯାଇ ଗୋଟିଏ ପୁସ୍ତକ ଆକାରରେ ପ୍ରକାଶ କରିବା ଯଥେଷ୍ଟ ତାତ୍ପର୍ଯ୍ୟପୂର୍ଣ୍ଣ ।

'ନୂଆପାଠ ନୂଆବାଟ' ପତ୍ରିକା ପ୍ରକାଶ ପାଇବାରେ ଶ୍ରୀ ଅଶୋକ ସାହୁ ଓ ଶ୍ରୀ ଅନୀଲ କୁମାର ପ୍ରଧାନଙ୍କର ଉତ୍ସାହ ଓ ଉଦ୍ଦୀପନାକୁ ଭୁଲିବାର ନୁହେଁ । ଅଶୋକ ସମ୍ପାଦନା ଦାୟିତ୍ୱ ହସ ହସ ମୁହଁରେ ତୁଲାଉଥିଲେ । ପ୍ରାୟ ପ୍ରତ୍ୟେକ ଗୁରୁଭାଇ ଓ ଭଉଣୀଙ୍କୁ ସେ ବ୍ୟକ୍ତିଗତ ଭାବେ ଜାଣିଥିଲେ । ସୃଜନଶୀଳତାର ଆବଶ୍ୟକ ପ୍ରୋତ୍ସାହନ ଯୋଗାଇବାରେ ସେ ପାରଙ୍ଗମ ଥିଲେ । ଅଗ୍ନି ମାଝୀ, କର୍ଣ୍ଣ ମାଝୀ, ବଳରାମ ମାଝୀ, ସାଧୁରାମ ନାଏକ, କୃପାସିନ୍ଧୁ ସାଉଁତା ଆଦି ଗୁରୁଭାଇମାନଙ୍କ ଆଗ୍ରହକୁ ମଧ୍ୟ ଭୁଲିବାର ନୁହେଁ । ପ୍ରେରଣା ମିଳିଲେ ଜଣେ କେତେ ସୁନ୍ଦର ଓ ସୁଖପାଠ୍ୟ ବିଷୟ ଲେଖିପାରେ, ଏମାନଙ୍କର ଲେଖାରୁ ଯଥେଷ୍ଟ ଆଭାସ ମିଳେ ।

ଏହି ନୂଆପାଠ ନୂଆବାଟ ପୁସ୍ତକର ପ୍ରକାଶନ ପାଇଁ ମୋର ସହକର୍ମୀ ବନ୍ଧୁ ସାହିତ୍ୟିକ ଡ଼ଃ ଉଦ୍ଧବ ଚରଣ ନାୟକଙ୍କୁ ଧନ୍ୟବାଦ ଜଣାଉଛି ।

ଅଚ୍ୟୁତ ଦାସ
ନିର୍ଦ୍ଦେଶକ

# ନକହିଲେ ନଚଳେ

ସୃଜନଶୀଳତା ମଣିଷର ଜନ୍ମଗତ । ଏହା ପ୍ରତ୍ୟେକ ମଣିଷ ନିକଟରେ ସ୍ୱାଭାବିକ ଭାବେ ରହିଥାଏ । ମାତ୍ର ଅନେକଙ୍କ କ୍ଷେତ୍ରରେ ପ୍ରତିକୂଳ ପ୍ରଭାବ ଦ୍ୱାରା ଏହି ସୃଜନଶୀଳତା ନଷ୍ଟ ହୋଇଯାଏ ବା ଉଧେଇ ପାରେନାହିଁ । ଉପଯୁକ୍ତ ପରିମାଣର ପାଣି, ପବନ ପାଇଲେ ମଞ୍ଜିରୁ ଯେପରି ଚାରା ହୁଏ ଓ ଚାରାରୁ ବିରାଟ ବୃକ୍ଷ, ସାମାନ୍ୟ ପ୍ରେରଣା ଦ୍ୱାରା ବି ବାଧା ବନ୍ଧନକୁ ଖାତିର ନକରି ସର୍ଜନାତ୍ମକତା ଫୁଟିଉଠେ କେବେ ନା କେବେ, କେଉଁଠି ନା କେଉଁଠି ! ଏଭଳି ପ୍ରତିକୂଳତା ସହ ଯୁଝିଯୁଝି ନିଜେ ପାଠ ପଢ଼ିବା ସହ ଅନ୍ୟକୁ ଶିକ୍ଷିତ କରାଇବାର ମହନୀୟ ଦୀକ୍ଷା ନେଇଥିଲେ ନବସୃଜନ ଶିକ୍ଷାକେନ୍ଦ୍ରର ଗୁରୁ ଭାଇଭଉଣୀମାନେ । ସାଧୁରାମ ନାଏକ, ମୁଟୁ ମୁଦୁଲି, ମଧୁବନ ନାଏକ, ଦାମୋଦର ଗୌଡ଼, ଦିବାକର ଜାନୀ, ତ୍ରିନାଥ ମାଝୀ, ଦେଖିଣା ମାଝୀ, ରଘୁ ହରିଜନ, ଧନୁର୍ଜୟ ନାଏକ, ସୁବାସ ମଲିକ, ଯଶୋବନ୍ତ ମାଝୀ, ସୁଖିରାମ ସଗରିଆ, କୃଷ୍ଣ ନାଏକ, ଓମେନ ଜାନୀ....- ଏମାନଙ୍କର ଜନ୍ମ ଓ ରହଣି କାଶୀପୁର, ଦଶମନ୍ତପୁର, ମାଲକାନଗିରି, ମୟୂରଭଞ୍ଜ, କନ୍ଧମାଳ ଓ କଳାହାଣ୍ଡିର ଦୁର୍ଗମ ଡଙ୍ଗରିଆ ଗାଁରେ, ଯେଉଁଠି ମଣିଷ ବଞ୍ଚିବାପାଇଁ ଜୀବନକୁ ବାଜି ଲଗାଇ ସଂଗ୍ରାମ କରୁଥାଏ ଅହରହ । ରୋଗ ବେମାର ହେଲେ ପାଖରେ ନା ଥାଏ ଡାକ୍ତର କି ପାଠ ଦି' ଅକ୍ଷର ପଢ଼ିବାକୁ ଚାହିଁଲେ ନା ଥାଏ ସ୍କୁଲ । ଏଭଳି ପରିସ୍ଥିତିରେ କାହାକୁ ପାଠ ପଢ଼ାଇବା କି କଲମ ଧରି କିଛି ଲେଖିବା ଦୁଃସାହସ ଛଡ଼ା ଆଉ କିଛି ନୁହେଁ । ମାତ୍ର ଏହି ଆହ୍ୱାନକୁ ଗ୍ରହଣ କରିନେଇଥିଲେ ରାତିସ୍କୁଲର ଏଇ ଗୁରୁ ଭାଇଭଉଣୀମାନେ । ସେମାନେ ପାଠ ସିନା କମ୍ ପଢ଼ିଥିଲେ, କିନ୍ତୁ ପାଠ ପଢ଼ାଇବାର ଅସଲ ସୂତ୍ରଗୁଡ଼ିକୁ ଆପେ ଆପେ ଶିଖି ନେଇଥିଲେ । ପିଲାଙ୍କୁ ପଢ଼ାଇବା ପାଇଁ ତେଣୁ ସେମାନେ ଆଉ କିଏ ଲେଖିଥିବା ବହିର ଆଶ୍ରୟ ନେଉନଥିଲେ । ଅନେକ ସମୟରେ ନିଜ ପାରିପାର୍ଶ୍ୱିକ ସ୍ଥିତିକୁ ନେଇ ନିଜ ଭାଷାରେ ଗୀତଟିଏ ଗାଇ କି ଗପଟିଏ କହି ଶିଖାଉଥିଲେ ପିଲାଙ୍କୁ । ଝରଣା ପରି ଏହାର ଗତି ବେଶ୍ ସାବଲୀଳ ଓ ଚଳଚଞ୍ଚଳ । ତେବେ ସେମାନଙ୍କ ପାଇଁ ଯେ ବାଟ

ବେଶ୍ ସୁଗମ ଥିଲା, ତାହା ନୁହେଁ; ବରଂ ପ୍ରତିମୁହୂର୍ତ୍ତରେ ସେମାନଙ୍କୁ ଅସଂଖ୍ୟ ସମସ୍ୟାର ସାମ୍ନା କରିବାକୁ ପଡୁଥିଲା । ପିଲାଙ୍କୁ ପଢ଼ାଇବାବେଳେ ହେଉ କି ଗାଁଲୋକଙ୍କୁ ସାକ୍ଷର ସଚେତନ କରିବା ସମୟରେ ହେଉ, ସେମାନଙ୍କୁ ଅନେକ ଥର ଝୁଣ୍ଟି ପଡ଼ି ଉଠିବାକୁ ହେଉଥିଲା । ସେସବୁର ସମାଧାନର ବାଟ ବତାଇବା ପାଇଁ ସେମାନଙ୍କ ପାଖରେ କେହି ନଥିଲେ । ତେଣୁ ସେମାନଙ୍କୁ ନିଜକୁ ହିଁ ବାଟଟିଏ ଖୋଜିବାକୁ ପଡୁଥିଲା । ଏହି ଖୋଜିବା ଆଳରେ ଅନେକ ସମୟରେ ସେମାନେ ନୂଆ ବାଟଟିଏ ହିଁ ତିଆରି କରିପକାଉଥିଲେ । ପାଠ ବେଳକୁ ବି ଠିକ୍ ସେଇ କଥା । ସେଇ ନୂଆ ପାଠ ଓ ନୂଆ ବାଟ ତିଆରିବାର ଅନନ୍ୟ, ଅସାଧାରଣ ତେଣୁ ସଂପୂର୍ଣ୍ଣ ମୌଳିକ ଅନୁଭୂତି ଓ ଅଭିଜ୍ଞତାକୁ ନିଜ ଭାଷାରେ ନିଜ ଶୈଳୀରେ ସେମାନେ ପ୍ରକାଶ କରୁଥିଲେ । ଏଭଳି ଏକ ମହତ୍ ପ୍ରୟାସରୁ ଜନ୍ମ ନେଇଥିଲା 'ନୂଆପାଠ ନୂଆବକ୍ସାଟ' ପତ୍ରିକା । ତେଣୁ 'ନୂଆପାଠ ନୂଆବାଟ' ସଂକଳନଟି କେବଳ ନିରକ୍ଷର ମଣିଷକୁ ପାଠ ବତାଇବ ନାହିଁ, ବାଟ ପାଉନଥିବା ଓ ବାଟ ହୁଡ଼ିଥିବା ଲୋକଙ୍କୁ ମଧ୍ୟ ବାଟ ଦେଖାଇପାରିବ, ଏଭଳି ଆଶା କରିବା ମୋ ପାଇଁ ଖୁବ୍ ସମୀଚୀନ । ଜୀବନ ସଂଗ୍ରାମର ନିଛକ ଚିତ୍ର ଦେଖାଉଥିବା ଏହି ଛଳକପଟଶୂନ୍ୟ ସହଜ, ସରଳ ଓ ସୁବୋଧ୍ୟ ଲେଖାଗୁଡ଼ିକ ଯେ ସମସ୍ତଙ୍କୁ ପ୍ରେରଣା ଦେବ, ଏଥିରେ ସନ୍ଦେହ ନାହିଁ ।

ଅଶୋକ ସାହୁ, ସମାଜ
ଗୋପବନ୍ଧୁ ଭବନ, କଟକ

# ସୂଚୀପତ୍ର

| କ୍ର.ନଂ. | ବିଷୟ | ପୃଷ୍ଠା |
|---|---|---|

**ଶିକ୍ଷା, ଶିକ୍ଷକ ଓ ଶିକ୍ଷାକେନ୍ଦ୍ର**


| | | |
|---|---|---|
| ୧. | ଭଲ ଶିକ୍ଷକର ଗୁଣ | ୩ |
| ୨. | ମୋ ଶିକ୍ଷାକେନ୍ଦ୍ରର କଥା | ୫ |
| ୩. | ଆମ ସ୍କୁଲ କଥା | ୮ |
| ୪. | ମୋ ଅନୁଭୂତିରୁ ଖିଏ | ୧୨ |
| ୫. | ମୋ ସ୍କୁଲ ମୋ ଜୀବନ | ୧୫ |
| ୬. | ତଥାପି ପିଲାଏ ପଢ଼ିବେ | ୧୭ |
| ୭. | ଆମ ଶିକ୍ଷକଙ୍କ ପାଇଁ | ୧୯ |
| ୮. | ମୁଁ ଓ ମୋର ଶିକ୍ଷାକେନ୍ଦ୍ରର କଥା | ୨୩ |
| ୯. | ଛୋଟ ଛୋଟ ଆଦିବାସୀ ପୁଅ ଝିଅମାନଙ୍କ ପାଇଁ ଶିକ୍ଷା | ୨୮ |
| ୧୦. | ଆମ ପିଲାଙ୍କୁ ଆଗେଇନେବା | ୩୦ |
| ୧୧. | ଅପାଠୁଆ ହେଲେ ଏମିତି ଦଶା | ୩୩ |
| ୧୨. | ପଢ଼ିଲେ ପାଠ ଦିଶିବ ବାଟ | ୩୭ |
| ୧୩. | ପିଲାମାନଙ୍କ ବିଷୟରେ କିଛି ପ୍ରଶ୍ନ | ୩୯ |
| ୧୪. | ମୁଁ ଓ ମୋର ଶିକ୍ଷାକେନ୍ଦ୍ରର କଥା | ୪୩ |
| ୧୫. | ଶିକ୍ଷାଦାନ ପଦ୍ଧତି | ୪୭ |
| ୧୬. | ମୋ ଶିକ୍ଷାକେନ୍ଦ୍ର ସମସ୍ୟା | ୫୦ |
| ୧୭. | ନଅମାସ ମଧ୍ୟରେ ଭ୍ରମରଯୋଡ଼ ଶିକ୍ଷାକେନ୍ଦ୍ର | ୫୪ |
| ୧୮. | ଲୁକୁମାରୀ ଗ୍ରାମରେ ଶିକ୍ଷା | ୬୦ |
| ୧୯. | ପିଲାମାନଙ୍କୁ ମାଡ଼ ନ ମାରିବା ପାଇଁ ଶିକ୍ଷା ପାଇଲି | ୬୨ |
| ୨୦. | ବୋରିଗୁମ୍ମା ଶିକ୍ଷାକେନ୍ଦ୍ର କଥା | ୬୪ |
| ୨୧. | ମୋ ଶିକ୍ଷାକେନ୍ଦ୍ର ସର୍ଗୀଗୁଡ଼ା | ୬୬ |


**ଅନୁଭୂତି**


| | | |
|---|---|---|
| ୧. | କେମିତି କାଟୁଛି ଦିନ | ୭୧ |

| | | |
|---|---|---|
| ୨. | ପିଲାଙ୍କ ସାଙ୍ଗରେ ଗୋଟିଏ ଆନନ୍ଦ ମୁହୂର୍ତ୍ତ | ୭୪ |
| ୩. | ମୋ ବର୍ଷକର ଅନୁଭୂତି | ୭୭ |
| ୪. | ଗତ ଅଢ଼େଇ ବର୍ଷ ଭିତରେ ମୋ ଶିକ୍ଷାକେନ୍ଦ୍ରର ଅନୁଭୂତି | ୮୨ |
| ୫. | ବୁଦ୍ଧିରାମ ସିଂକୁ | ୮୬ |
| ୬. | ନିଶିକା ନାଙ୍ଗାରୀ ମାଝୀ | ୯୦ |
| ୭. | ମୋ ପାଠପଢ଼ା ସମୟର କାହାଣୀ | ୯୨ |
| ୮. | ମୋ ଅନୁଭୂତିରୁ ଟିକିଏ କଥା | ୯୫ |
| ୯. | ଗତ ଅଢ଼େଇ ବର୍ଷ ଭିତରେ ମୋ ଶିକ୍ଷାକେନ୍ଦ୍ରର ଅନୁଭୂତି | ୯୮ |
| ୧୦. | ତଫାତ୍ କେତେ ? | ୧୦୦ |
| ୧୧. | ତାଲିମ୍ ଶିବିର ଓ ମୋର ଅଭିଜ୍ଞତା | ୧୦୩ |
| ୧୨. | ମୁଁ ପାଠପଢ଼ିଲି କେମିତି | ୧୦୭ |
| ୧୩. | ମୋ ବରଷକର ଅନୁଭୂତି | ୧୧୦ |
| ୧୪. | ମୋ ବର୍ଷକର ଅନୁଭୂତି | ୧୧୩ |
| ୧୫. | ତିନିବର୍ଷ ପାଞ୍ଚ ମାସ ଭିତରେ ପୁଷ୍ପଘାଟି ଶିକ୍ଷାକେନ୍ଦ୍ର | ୧୧୬ |
| ୧୬. | ଗୁରୁଭାଇ କେମିତି ହେବ ? | ୧୧୯ |
| ୧୭. | ମୋ ଶିକ୍ଷାକେନ୍ଦ୍ର କଥା | ୧୨୨ |
| ୧୮. | ଶିକ୍ଷକ ଜୀବନର ପ୍ରଥମ ଅନୁଭୂତି | ୧୨୭ |
| ୧୯. | ମୋ ଦୁଇବର୍ଷର ଅନୁଭୂତି | ୧୨୯ |
| ୨୦. | ମୋ ଅନୁଭୂତିରୁ କେଇପଦ | ୧୩୧ |
| ୨୧. | ମୋର ଶିକ୍ଷକ ଜୀବନର ଟିକିଏ ଅନୁଭୂତି | ୧୩୫ |
| ୨୨. | ମୋର ଅନୁଭୂତି | ୧୩୯ |
| ୨୩. | ମୋର ଅନୁଭୂତି ସମ୍ବନ୍ଧେ | ୧୪୧ |

**ପରିଚୟ**

| | | |
|---|---|---|
| ୧. | ପରିଚୟ | ୧୪୫ |
| ୨. | ପରିଚୟ | ୧୪୯ |
| ୩. | ପରିଚୟ | ୧୫୪ |
| ୪. | ପରିଚୟ | ୧୫୮ |
| ୫. | ପରିଚୟ | ୧୬୨ |

## ଗାଁର କଥା


| | | |
|---|---|---|
| ୧. | ଆମ ଗାଁର ମା'ମାନଙ୍କ କଥା | ୧୬୭ |
| ୨. | ରଙ୍ଗପଦରର ଖାସ୍ କଥା | ୧୭୦ |
| ୩. | ପ୍ରଥମ ଦିନରୁ ଆଜି ଯାଏଁ | ୧୭୨ |
| ୪. | ଗୋଟିଏ ବର୍ଷର କଥା | ୧୭୫ |
| ୫. | ଆମ ଗାଁର କେତୋଟି ସତ ଘଟଣା | ୧୭୮ |
| ୬. | ଆମ ଆଖିର ଅନ୍ଧ ପୁଟୁଳି ଖୋଲିବ କେବେ ? | ୧୮୧ |
| ୭. | ଉପରମାଣ୍ଡିଝୋଲା ଗାଁ | ୧୮୪ |
| ୮. | ସଭିଙ୍କ ମୁହଁରେ ଲାଠିକୁମ୍ପା | ୧୮୮ |
| ୯. | ଆଦର୍ଶ ଗାଁ କିପରି ? | ୧୯୨ |
| ୧୦. | ଆଦର୍ଶ ଗାଁ ମେରାକାନି | ୧୯୫ |


## ସଫଳ କାହାଣୀ


| | | |
|---|---|---|
| ୧. | ସପନ ସତ ହୋଇଛି | ୧୯୯ |
| ୨. | ଆଗେ ଓ ଏବେ | ୨୦୪ |
| ୩. | ପାଠ ଦେଖାଏ ବାଟ | ୨୦୬ |
| ୪. | ମୋ ଆଶା; ମୋ ସ୍ୱପ୍ନ | ୨୦୯ |
| ୫. | ଲୋକ ବଦଳୁଛନ୍ତି | ୨୧୧ |


* * *

# ଭଲ ଶିକ୍ଷକର ଗୁଣ

ମୋ ଭାଷାରେ ଜଣେ ଭଲ ଶିକ୍ଷକର ଏ ସବୁ ଗୁଣଗୁଡ଼ିକ ରହିବା ଦରକାର । ବର୍ତ୍ତମାନ ଭଲ ଶିକ୍ଷକଙ୍କର ଅଭାବ ରହିଛି । ତେଣୁ ମୁଁ ଆପଣଙ୍କ ପତ୍ରିକାକୁ ଶିକ୍ଷକଙ୍କ ବିଷୟରେ ଲେଖି ଜଣାଉଛି । ଭଲ ଶିକ୍ଷକଙ୍କର ନିମ୍ନଲିଖିତ ଗୁଣ ସବୁ ଥାଏ ।

୧) ଜ୍ଞାନ ଓ ଅଭିଜ୍ଞତା- ଶିକ୍ଷକଙ୍କର ନିଜେ ପଢ଼ାଉଥିବା ବିଷୟରେ ବିଶେଷ ଜ୍ଞାନ ଓ ଅଭିଜ୍ଞତା ଥିବା ଦରକାର । ଯଦି ଏହି ଗୁଣ ତାହେଲେ ସେ ପିଲାଙ୍କୁ ଉପଯୁକ୍ତ ତଥ୍ୟ ଯୋଗାଇପାରିବେ ନାହିଁ ।

୨) ଦକ୍ଷତା- ଦକ୍ଷତା ବଳରେ ଶିକ୍ଷକ ନିଜ ସ୍କୁଲର ଅସୁବିଧା ଜାଣି ତାକୁ ଦୂର କରିବା ପାଇଁ ପଦକ୍ଷେପ ନେବେ ।

୩) କର୍ମକୁଶଳତା- ଏହା ଶିକ୍ଷକଙ୍କର ଏକ ପ୍ରଧାନ ଗୁଣ । ଏହାଦ୍ୱାରା ଗୁରୁଭାଇ ସ୍କୁଲ ପାଇଁ ବିଭିନ୍ନ କାର୍ଯ୍ୟ ଯଥା; ସ୍କୁଲ ଗୃହ ସଫା, ବଗିଚା ତିଆରି ଓ ବିଭିନ୍ନ ଆବଶ୍ୟକୀୟ କାର୍ଯ୍ୟ ପାଇଁ ଉତ୍ସାହୀ ହେବେ ।

୪) ଲୋକସମ୍ପର୍କ- ଶିକ୍ଷକ ନିଜ ସ୍କୁଲର ବା ଗାଁଲୋକମାନଙ୍କ ସହିତ ସୁସମ୍ପର୍କ ରକ୍ଷା କରି ପାରୁଥିବେ । ଏହାଦ୍ୱାରା ସହଯୋଗ ବଳରେ ବିଭିନ୍ନ ହିତକର କାର୍ଯ୍ୟ ହୋଇପାରିବ ।

୫) ପରିଦର୍ଶନ- ଶିକ୍ଷକ ବିଭିନ୍ନ ଅଞ୍ଚଳ ପରିଦର୍ଶନ କରି ପିଲାମାନଙ୍କୁ ଶିକ୍ଷା ଦେବେ ।

୬) ସ୍ନେହ, ଭଦ୍ରତା, ସହିଷ୍ଣୁତା ଓ ଉଦାରତା ଥିବା ଦରକାର ।

ଯେଉଁ ସ୍କୁଲରେ ଶିକ୍ଷକ ଓ ଛାତ୍ରମାନଙ୍କ ସମ୍ପର୍କ ନିବିଡ଼ ଥାଏ, ସେଠାରେ ସହଯୋଗ ବଳରେ ନୂଆ କାର୍ଯ୍ୟ ସାଧିତ ହୁଏ । ଗୁରୁ ଓ ଛାତ୍ରମାନଙ୍କ ମତର ଆଦାନ ପ୍ରଦାନରେ ଶିକ୍ଷା ସଂଗଠିତ ହୁଏ । ଆଦର୍ଶ ସ୍କୁଲ ଗଢ଼ିବାକୁ ହେଲେ ସେପରି ଦକ୍ଷ

ଶିକ୍ଷକ ହୋଇଥିବା ଦରକାର । ଯେମିତି ଜାହାଜର କ୍ୟାପ୍‌ଟେନ୍ ସହିତ ଗୁରୁଭାଇଙ୍କୁ ତୁଳନା କରାଯାଇଥାଏ । ନବସୃଜନ ଶିକ୍ଷାକୁ ଲୋକମାନେ ବାସ୍ତବ ଶିକ୍ଷା ରୂପେ ଗ୍ରହଣ କରୁଛନ୍ତି । ଏହି ଯେଉଁ ନବସୃଜନ ଶିକ୍ଷା ଦିଆଯାଉଛି ତାହା ସରକାରୀ ବିଦ୍ୟାଳୟ ଠାରୁ ସଂପୂର୍ଣ୍ଣ ଅଲଗା । ତେଣୁ ପିଲାମାନେ ଘରର କାମ କରିବା ସତ୍ତ୍ୱେ ପାଠ ମଧ୍ୟ ପଢୁଛନ୍ତି । ଅଭିଭାବକମାନେ ମଧ୍ୟ ଖୁସିରେ ସେମାନଙ୍କର ପିଲାମାନଙ୍କୁ ସ୍କୁଲକୁ ପଠାଉଛନ୍ତି ଏବଂ ତାଙ୍କର କାର୍ଯ୍ୟରେ ବାଧା ଦେଉ ନାହାଁନ୍ତି । ଲୋକମାନେ ସବୁଦିନେ କିପରି ତାଙ୍କର ସ୍କୁଲ ଚଳାଇପାରିବେ ସେଥିପ୍ରତି ଦୃଷ୍ଟି ଦେଉଛନ୍ତି । ଏଣୁ ଏହା ଏକ ଆନନ୍ଦମୟ ଶିକ୍ଷା ଅଟେ ।

ଏହି ଶିକ୍ଷା ପଦ୍ଧତିରେ ପିଲାଏ ଆନନ୍ଦ ପାଇବା ସଙ୍ଗେ ସଙ୍ଗେ ଶିକ୍ଷା ପାଇ ପାରୁଛନ୍ତି । *ସରକାରୀ ସ୍କୁଲରେ ଲଦାହେଉଥିବା ବୋଝକୁ ଏହି ନବସୃଜନ ଶିକ୍ଷା ମାଧ୍ୟମରେ ଓହ୍ଲାଇ ଦିଆଯାଏ* । ପିଲାମାନେ ପ୍ରଥମେ କେବଳ ଘୋଷିକରି ମନେ ରଖୁଥିଲେ । କିନ୍ତୁ ଏହି ଶିକ୍ଷା ପଦ୍ଧତି ଦ୍ୱାରା ନାଚ, ଗୀତ ଓ ଛବି ମାଧ୍ୟମରେ ପିଲାମାନେ ସହଜରେ ମନେ ରଖି ପାରୁଛନ୍ତି । ଏହି ଶିକ୍ଷା ପଦ୍ଧତିରେ ପିଲା ଦେଖିପାରୁଛି, କହିପାରୁଛି ଓ ମନେରଖି ପାରୁଛି । ଏହାଦ୍ୱାରା ପିଲାମାନେ ଗୁରୁଭାଇ ସହିତ ମିଶି ପାରୁଛନ୍ତି; ଯାହା ଫଳରେ ସେମାନଙ୍କ ପାଖରେ ରହିଥିବା ଲଜ୍ଜା ଓ ଭୟ ଦୂର ହୋଇ ପାରୁଛି । ଏହି ଶିକ୍ଷା ପିଲାଙ୍କୁ ସାହସୀ, ସ୍ୱାଧୀନ ଓ ସମୟାନୁବର୍ତ୍ତୀ ହେବାରେ ସାହାଯ୍ୟ କରିଥାଏ ।

କେବଳ ବିଦ୍ୟାଳୟରେ ପାଠ ପଢ଼ାଇବା ହିଁ ଗୁରୁଭାଇଙ୍କର ଦାୟିତ୍ୱ ତାହା ନୁହେଁ, ସେ ଗାଁର ଜଣେ ସଦସ୍ୟ ହୋଇ ରହି ଗାଁର ଅଭାବ ଅସୁବିଧା ସହିତ ସଂପୃକ୍ତ ହେବା ଦରକାର । ଗାଁରେ ଚାଲୁଥିବା ବିଭିନ୍ନ ସରକାରୀ ଅନୁଷ୍ଠାନ ନିଜ ଅଞ୍ଚଳ ପାଇଁ ଠିକ୍ ରୂପେ କାମ କରୁଛି କି ନାହିଁ ସେ ବିଷୟରେ ବୁଝାସୁଝା କରିବା ଉଚିତ । ସେ ଜଣେ ସ୍ୱଦେଶପ୍ରେମୀ ହେବା ଦରକାର । ଗାଁର ଲୋକମାନଙ୍କ ସହିତ ମିଶି ଗାଁରେ ଚାଲୁଥିବା ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଉଚିତ ।

ରବି ଶଙ୍କର ଦିଗାଲ

ନବସୃଜନ ଶିକ୍ଷାକେନ୍ଦ୍ର, ସରୁପଡ଼ା

□□□

# ମୋ ଶିକ୍ଷାକେନ୍ଦ୍ର କଥା

ମୁଁ ଆଜିକୁ ଛଅମାସ ହେଲା ମିଣିଆ ପ୍ରକଳ୍ପର ନବସୃଜନ ଶିକ୍ଷାକେନ୍ଦ୍ର, ରାଙ୍ଗାମାଲାଠାରେ ଗୁରୁଭାଇ ରୂପେ କାମ କରୁଅଛି । ଗାଆଁ ଚାରିପଟେ ପାହାଡ ଜଙ୍ଗଲ ଘେରି ରହିଛି । ଜଙ୍ଗଲରେ ବଡ ଗଛ ନଥିଲେ ମଧ୍ୟ ଛୋଟ ଛୋଟ ଶାଳ ଗଛ ଗାଆଁଟିକୁ ଢ଼ାଙ୍କି ରଖିଛି । ମୁଁ ପ୍ରଥମେ ସେହି ଗାଁକୁ ଗଲା ପରେ ମୋତେ ଅଡୁଆ ଲାଗିଥିଲା । ତଥାପି ମୋତେ ଖାପ ଖୁଆଇ ଚଳିବାକୁ ପଡିଥିଲା । ପିଲାଙ୍କୁ ପଢ଼ାଇବା ପାଇଁ ପ୍ରଥମେ ମୋର ବହୁତ ଅସୁବିଧା ହେଉଥିଲା । ଗାଁରେ ସାକ୍ଷର ସଂଖ୍ୟା ମୋଟେ ନାହିଁ କହିଲେ ଚଳେ । ସରକାରଙ୍କ ଦୃଷ୍ଟି ମଧ୍ୟ ସେହି ଗ୍ରାମରେ ପଡୁନାହିଁ । ମୁଁ ସେହି ଗାଆଁକୁ ଯାଇ ଲୋକଙ୍କ ସାଙ୍ଗରେ ମିଶି ଗାଆଁରେ କିପରି ଉନ୍ନତିମୂଳକ କାର୍ଯ୍ୟ ହେବ ସେ ବିଷୟରେ ଆଲୋଚନା କରୁଛି । ପାଣିର ଅସୁବିଧା ଦୂର କରିବାକୁ ନଳକୂପ ଖନନ ପାଇଁ ଦରଖାସ୍ତ କରାଯାଇଛି । ପ୍ରତି ମାସରେ ସ୍କୁଲ କମିଟିର ବୈଠକ କରୁଛୁ । କମିଟିରେ ଶିକ୍ଷାକେନ୍ଦ୍ରର ଲକ୍ଷ୍ୟକୁ କିପରି ଆଗେଇ ନେଇପାରିବା ଓ ସେଥିପାଇଁ ଆସୁଥିବା ଅନୁଦାନକୁ କେମିତି ଠିକ ଭାବେ ପରିଚାଳନା କରିବା, ସେ ବିଷୟ ସ୍ଥିର କରିଛୁ । ସେଥିପାଇଁ ଆମେ ଛେଳି ଚାଷ ଓ ଋତୁକାଳୀନ ବ୍ୟବସାୟ କରିବା ପାଇଁ ଠିକ କରିଛୁ । ବର୍ତ୍ତମାନ ମାଆମାନେ ୧୦୦ଟି କାଜୁବାଦାମ ଗଛ ଲଗାଇଲେଣି ।

ଆମ ସ୍କୁଲର ପିଲାମାନେ ମଧ୍ୟ ଅମୃତଭଣ୍ଡା ଗଛ ଲଗାଇଛନ୍ତି । ସ୍କୁଲ ଗୃହଟି ବର୍ତ୍ତମାନ ସମ୍ପୂର୍ଣ୍ଣ ହୋଇଛି । କବାଟ ନ ଲାଗିବା ଯୋଗୁଁ ମୁଁ ସେହି ଗାଆଁରେ ଲିଜାରୀ ମା ଘରେ ରହୁଛି । ପ୍ରଥମେ ପିଲାଙ୍କୁ ମୁଁ ଗଛ ମୂଳରେ ପାଠ ପଢ଼େଇଲି ।

ତା'ପରେ ବର୍ଷା ମାସରେ ଲିଜାର ଘର ବାରଣ୍ଡାରେ ପିଲାଙ୍କୁ ପଢାଉଛି । ବର୍ତ୍ତମାନ ଘରତିଆରି କାମ ସରିଲାଣି । ଦଶହରା ପରେ ସ୍କୁଲରେ ପଢ଼ା ଆରମ୍ଭ କରିବା ପାଇଁ ସ୍ଥିର କରିଛୁ । ରାତିରେ ପିଲା ଅଧିକ ଆସୁଛନ୍ତି । ସକାଳେ ସ୍କୁଲ କଲେ

ପ୍ରାୟ ଆଠ/ନଅ ଜଣ ପିଲା ହେଉଛନ୍ତି । ରାତିରେ ପ୍ରାୟ କୋଡିଏ/ଏକୋଇଶ ଜଣ ପିଲା ପଢୁଛନ୍ତି । ମୋଟ ୨୭ଜଣ ପିଲା ଆମ କେନ୍ଦ୍ରରେ ନାମ ଲେଖାଇଛନ୍ତି । ପିଲାଙ୍କର ପଢ଼ିବା ପାଇଁ ଆଗ୍ରହ ଅଛି । ପ୍ରଥମେ ମୋତେ ପିଲାଙ୍କୁ ପଢ଼େଇବା ପାଇଁ ଅସୁବିଧା ହେଲା ପିଲା ଖଡି ବି ଧରି ଜାଣୁ ନ ଥିଲେ । ମୋର ବି ଅଭିଜ୍ଞତା ବେଶି ନ ଥିଲା । ବର୍ତ୍ତମାନ ଆମର ତାଲିମ ମୋତେ ଭଲ ସାହାଯ୍ୟ କରୁଛି । ମୁଁ *ଜଙ୍ଗଲ ଚିଠି* ବହିଟି ପଢି ସତରେ ପିଲାଙ୍କୁ ଗଢ଼ିବା କେତେ କଷ୍ଟ ଅନୁଭବ କରୁଛି । ମୁଁ ପିଲାଙ୍କୁ ନାଚ, ଗୀତ, ଗପ ମାଧ୍ୟମରେ ପଢ଼ାଉଛି; ପିଲା ଯେପରି ଖୁସି ହେବେ । ବର୍ତ୍ତମାନ ପିଲାମାନେ ମୋତେ ଏତେ ଭଲ ପାଉଛନ୍ତି ଯେ ସେମାନେ ମୋ କୋଳକୁ ପଶି ଆସୁଛନ୍ତି ।

କମିଟି ମେମ୍ବରମାନେ ମଧ୍ୟ ବେଳେବେଳେ ସ୍କୁଲ ଆସି ପିଲାଙ୍କୁ ଶିକ୍ଷା ଦିଅନ୍ତି । ପ୍ରଥମେ ଆମ ସ୍କୁଲ କମିଟିର ସଭ୍ୟ/ସଭ୍ୟା ମୋତେ କହିଲେ ଗୁରୁ ତୁମେ ପିଲାଙ୍କୁ ଡରାଉନ କି ମାଡ ଦେଉନ, ତେଣୁ ପିଲା ତୁମକୁ ଡରୁନାହାନ୍ତି; ତୁମେ ପିଲାଙ୍କୁ ଡରେଇ ମାଡ ଦିଅ । ମୁଁ ଅଡୁଆରେ ପଡିଗଲି ଏବଂ ଲୋକଙ୍କୁ ବୁଝାଇଲି ପିଲାଙ୍କୁ ମାଡ ଦେଲେ ପିଲା ପାଠ ପଢ଼େ ନାହିଁ । ତେଣୁ ଆମେ ପିଲାମାନଙ୍କୁ ଖୁସି କରାଇ ପାଠ ପଢ଼ାଉଛୁ । ତଥାପି ଲୋକ ନ ବୁଝିବାରୁ ମୁଁ କହିଲି କାଲି ସ୍କୁଲ ସମୟରେ ଆସି, ତୁମକୁ ପରୀକ୍ଷା କରି ଦେଖେଇଦେବି; ସେପରି ହେଲା । ସେଦିନ କମିଟି ସଭ୍ୟ ଓ ଅଭିଭାବକ ଚାରିଜଣ ଆସିଲେ । ମୁଁ ଗୋଟିଏ ପିଲାର କାନକୁ ଜୋରରେ ମୋଡିଦେଲି । ପିଲାଟି କାନ୍ଦିଲା, ପାଟି ଖୋଲିଲା ନାହିଁ । ପରେ ସଂଧ୍ୟାକୁ ସବୁ ପିଲା ଗୀତ ଗାଇ ନାଚ କଲେ, ସେତେବେଳେ ଯାଇ ପିଲାଟିର ପାଟି ଖୋଲିଲା । ମୁଁ ସେଠି ସେମାନଙ୍କୁ ଦେଖାଇ ବୁଝାଇ କହିଲି ଯେ ପିଲାମାନେ ମନଖୁସିରେ ଥିଲେ ସେମାନେ ଆଗ୍ରହର ସହିତ ପଢିବେ ।

ବର୍ତ୍ତମାନ ଆମର ଯେଉଁ ତାଲିମ ହେଉଛି ତାହା ମୋ ପାଇଁ ବହୁତ କାମ ଦେଉଛି । ତେଣୁ ଏହି ତାଲିମ ଲାଗି ରହିବା ଉଚିତ । ଗାଁରେ ବେଳେବେଳ ଛୋଟ ଛୋଟ ସମସ୍ୟା ଦେଖାଦେଉଛି । ଆମେ ସମସ୍ତେ ମିଶି ତା'ର ସମାଧାନ କରୁଛୁ । ସେଥିପାଇଁ ଗାଁ କମିଟି ମେମ୍ବରମାନଙ୍କ ପାଇଁ ତାଲିମ ହେବା ଉଚିତ । ଗାଁରେ ବେଶୀ ମାଆମାନଙ୍କର ସହଯୋଗ ଅଛି । ଆମ ପ୍ରକଳ୍ପର କର୍ମୀମାନେ ଆସି ପିଲା ଏବଂ ଗାଁର

ସୁବିଧା ଅସୁବିଧା ବିଷୟରେ ଆଲୋଚନା କରିଯାଉଛନ୍ତି । ବର୍ତ୍ତମାନ ଆମର ପିଲା 'ଅ' ରୁ 'ଭ' ପର୍ଯ୍ୟନ୍ତ ଶବ୍ଦ ଗଠନ କରିପାରୁଛନ୍ତି ଏବଂ ୨୦ରୁ ୫୦ ପର୍ଯ୍ୟନ୍ତ ସଂଖ୍ୟା ଲେଖି ପଢି ପାରୁଛନ୍ତି । କେତେ ଜଣ ବହି ବି ପଢିବା ପାଇଁ ସକ୍ଷମ ହେଲେଣି । ଆମ ପ୍ରକଳ୍ପକୁ ବହି ଆସିନାହିଁ; ପିଲା ବହି ପାଇଁ କହୁଛନ୍ତି । ଆମକୁ ପ୍ରତି ମାସରେ କିରୋସିନ ଏବଂ ଦରମା ଠିକ୍‌ରେ ମିଳୁଛି । ପିଲାଙ୍କ ପାଇଁ ଅକ୍ଷର ଚାର୍ଟ, ମ୍ୟାପ୍ ପ୍ରଭୃତି ଯୋଗାଇଦେଲେ ଭଲ ହୁଅନ୍ତା । ଏହି ଲେଖାଟି ପ୍ରକାଶ ପାଇଲେ ଭବିଷ୍ୟତରେ ଲେଖିବା ପାଇଁ ମୁଁ ପ୍ରେରଣା ପାଇବି ।

**ଶ୍ରୀ ବିଶ୍ୱମ୍ଭର ପ୍ରଧାନ**

**ରାଙ୍ଗାମାଲା ନବସୃଜନ ଶିକ୍ଷାକେନ୍ଦ୍ର**

□□□

# ଆମ ସ୍କୁଲ କଥା

ଆମ ଓଡ଼ିଶାର ଆଦିବାସୀ ଜିଲ୍ଲାମାନଙ୍କ ମଧ୍ୟରେ କନ୍ଧମାଳ ଜିଲ୍ଲା ଗୋଟିଏ । ଏଠାକାର ଅନେକ ଲୋକ ଜଙ୍ଗଲ ଉପରେ ନିର୍ଭରକରି ଚଳିଯାଆନ୍ତି । ଏଠାକାର ଲୋକମାନେ ବର୍ଷକରୁ ପାଞ୍ଚମାସ ଜଙ୍ଗଲକୁ ଭରସା କରି ଚଳିଯାଉଥିଲେ ହେଁ ଅନେକ ପ୍ରକାରର ଅସୁବିଧା ରହିଛି । ସେଥିମଧ୍ୟରୁ ଶିକ୍ଷା ହେଉଛି ସବୁଠାରୁ ବଡ ଅସୁବିଧା । ଏହାଦ୍ୱାରା ଲୋକମାନଙ୍କ ପାଖରେ ସବୁଥାଇ ମଧ୍ୟ ଉପାସ ରହିବାକୁ ବାଧ୍ୟ ହେଉଛନ୍ତି । ପ୍ରାୟତଃ ଜାଣନ୍ତି ଯେ କନ୍ଧମାଳରେ ପୁରୁଷ ସାକ୍ଷରତା ହାର ଶତକଡ଼ା ୧୩ କିମ୍ବା ୧୪ ଥିବାବେଳେ ମହିଳା ସାକ୍ଷରତା ହାର ମାତ୍ର ଶତକଡ଼ା ୩ରୁ ୪ । ଏହାକୁ ଦେଖିଲେ ଯେକେହି ଅନୁମାନକରି କହିଦେଇ ପାରିବ ଯେ, ଯେଉଁଠାରେ ଏତେ କମ୍ ସଂଖ୍ୟକ ଲୋକ ପାଠପଢ଼ାରୁ ବଞ୍ଚିତ ସେଠାରେ ଥିବା ଲୋକମାନେ ଭଲରେ ଚଳିବେ କେମିତି ? ଏହାକୁ ଆଖି ଆଗରେ ରଖି ଅଗ୍ରଗାମୀ ଏଠାରେ ସ୍କୁଲ ଚଳାଇଛି ।

ମୁଁ ଯେଉଁ ଗାଁଟିରେ ସ୍କୁଲ କରୁଛି ତାହା ଫିରିଙ୍ଗିଆ ବ୍ଲକ୍ ଅନ୍ତର୍ଗତ ବାଲନ୍ଦାପଡ଼ା ପଞ୍ଚାୟତ ଠାରୁ ଚାଲି ଚାଲି କରି ୧୭ କିଲୋମିଟର ଗଲେ ଏଇ ଗାଁଟି ପଡେ । ପ୍ରଥମେ ଏହି ଗାଁକୁ ଗଲେ ଜଣାପଡୁଥିଲା ଯେମିତି ଏଠାରେ ପାଠପଢ଼ାଇବା ଅତ୍ୟନ୍ତ ଦୁର୍ଭାଗ୍ୟଜନକ । ଏଠାରେ ସରକାରୀ ସ୍କୁଲ ଥାଇ ମଧ୍ୟ କେହି ଆସନ୍ତି ନାହିଁ । ଏତେଦୂର ଚାଲି ଚାଲି ଆସି ପାଠପଢ଼ାଇବା ଯେ ବହୁତ କଷ୍ଟ ତାହା ଯେକୌଣସି ବ୍ୟକ୍ତି ଅନୁଭବ କରିପାରିବ ତେଣୁ ଲୋକମାନେ ଶିକ୍ଷକଙ୍କୁ ମୋଟେ କିଛି କହିପାରୁ ନାହାଁନ୍ତି । ପିଲାମାନେ ପାଠପଢ଼ାରୁ ବଞ୍ଚିତ ହେଉଥିବାରୁ ଗାଁର ଲୋକମାନେ ସରକାରଙ୍କୁ କହି କହି ନିରାଶ ହେବାରୁ ଅଗ୍ରଗାମୀକୁ ସାହାଯ୍ୟ ମାଗି ସ୍କୁଲଟିକୁ ଚଳାଇଛନ୍ତି । ଏଠାରେ ସ୍କୁଲ ଚାଲିବା ଦଶମାସ ହୋଇଗଲାଣି । ବର୍ତ୍ତମାନ କେଉଁ ଅବସ୍ଥା ଦେଇ ସ୍କୁଲଟି ଚାଲୁଛି ସେହି ବିଷୟରେ ସମସ୍ତ ଗୁରୁଭାଇ ଓ ଭଉଣୀମାନଙ୍କୁ

ଏହି ପତ୍ରିକା ମାଧ୍ୟମରେ ଜଣାଇବାକୁ ଚାହୁଁଛି । ଭାବୁଛି ଏହା ଆସନ୍ତା ନୂଆପାଠ ନୂଆବାଟ ପତ୍ରିକାରେ ପ୍ରକାଶ ପାଇବ ବୋଲି ।

ଶିକ୍ଷାକେନ୍ଦ୍ର: ଆମ ବାରାହାଲା ଶିକ୍ଷାକେନ୍ଦ୍ରର ଶିକ୍ଷା କମିଟି ଓ ଗ୍ରାମବାସୀ ଉଭୟଙ୍କ ନିଷ୍ପତ୍ତି ଅନୁସାରେ ସ୍କୁଲଟି ଭଲରେ ପରିଚାଳିତ ହେଉଛି । ସେମାନଙ୍କର ନିଷ୍ପତ୍ତି ଅନୁଯାୟୀ ସ୍କୁଲର ସମୟ ନିର୍ଘଣ୍ଟ କରାଯାଇଛି । ସେହି ଅନୁସାରେ ସକାଳ ୧୦ଟା ଠାରୁ ଅପରାହ୍ନ ୪ଟା ପର୍ଯ୍ୟନ୍ତ ପାଠପଢ଼ା ହେଉଛି । ଆମ ସ୍କୁଲ ପାଇଁ ସ୍ୱତନ୍ତ୍ର ସ୍କୁଲ ଘର ହୋଇନାହିଁ । ସରକାରୀ ସ୍କୁଲ ଚାଲୁନାହିଁ; ତେଣୁ ଲୋକମାନେ ସରକାରୀ ସ୍କୁଲ ଘରେ ଆମ ସ୍କୁଲ କରିବା ପାଇଁ କହିଛନ୍ତି । ସେଠାରେ ସ୍କୁଲ କରି ଆସୁଛି । ସେଠାକୁ ୧୫ ରୁ ୨୫ ଜଣ ପିଲା ପଢ଼ିବାକୁ ଆସୁଛନ୍ତି । ପାଠପଢ଼ାଇଲାବେଳେ ସ୍କୁଲର ଶିକ୍ଷା କମିଟି ଏବଂ ଅଭିଭାବକମାନେ ମଧ୍ୟ ବେଳେବେଳେ ସ୍କୁଲ ଦେଖିବାକୁ ଆସୁଛନ୍ତି ।

ଶିକ୍ଷାକେନ୍ଦ୍ର ପରିଚାଳନା କରିବା ପାଇଁ ଶିକ୍ଷା କମିଟି ମାସକୁ ଥରେ ଲେଖାଏଁ ବସି ସବୁ ବିଷୟରେ ଆଲୋଚନା କରୁଛନ୍ତି । ସେହି ବୈଠକରେ ଗାଁର ସମସ୍ତ ଅଭିଭାବକମାନେ ଆସି ଯୋଗ ଦେଉଛନ୍ତି । ପରିଚାଳନା ନିମନ୍ତେ ଗାଁରେ ପାଣ୍ଠି ସୃଷ୍ଟି କରାଯାଇଛି । ଶିକ୍ଷାକେନ୍ଦ୍ରରେ ଝିଅମାନଙ୍କ ସଂଖ୍ୟା କମିଯାଉଛି ତେଣୁ ଅଧିକ ପିଲା କିଭଳି ଆସିବେ ସେଥିପାଇଁ ଗାଁର ଲୋକମାନଙ୍କୁ କହୁଛି । ଦିନରେ ଏହି ୬ଘଣ୍ଟା ସମୟ ଭିତରେ ପିଲାମାନଙ୍କୁ ଅକ୍ଷର, ଅଙ୍କ, ପରିବେଶ, ବହିପଢ଼ା, ଗୀତ, ଖେଳ, ନାଚ ଓ ବିଭିନ୍ନ ପ୍ରକାରର ସାଧାରଣ ଜ୍ଞାନ ଉପରେ ପାଠ ପଢ଼ାଉଛି । ପ୍ରଥମେ ଲୋକମାନେ ଯେତିକି ଆଗ୍ରହୀ ଥିଲେ ଏବେ ଧୀରେ ଧୀରେ ଅଧିକ ସଚେତନ ହୋଇଆସୁଛନ୍ତି । ପାଠପଢ଼ା ପ୍ରତି ଲୋକମାନଙ୍କର ଆଗ୍ରହ ଥିଲେ ମଧ୍ୟ ବେଳେବେଳେ ବିଭିନ୍ନ କାମ କରିବା ପାଇଁ ପିଲାମାନଙ୍କୁ ଅଟକାଇ ଦେଉଛନ୍ତି । ଯେଉଁ କେତେଜଣ ତାଙ୍କ ପିଲାଙ୍କୁ ସବୁଦିନେ ପଠାଉଛନ୍ତି, ସେମାନଙ୍କୁ ଅନ୍ୟ ପିଲାମାନଙ୍କୁ ପଠାଇବାର ଦାୟିତ୍ୱ ଦେଉଛି । ପାଠପଢ଼ା ଉପରେ ଲକ୍ଷ୍ୟ ଦେଇ ପିଲାମାନଙ୍କୁ ଅଧିକ ଅଧିକ ପଢ଼ିବା ପାଇଁ ପ୍ରବର୍ତ୍ତାଉଛି । ଗାଁ ଲୋକମାନେ ଯେକୌଣସି କାମ କଲେ ମୋତେ ଡାକୁଛନ୍ତି । ମୁଁ ଲୋକମାନଙ୍କ ସାଙ୍ଗରେ ମିଶି ସ୍କୁଲ ତଥା ଗାଁର ସମସ୍ତ କଥା ବୁଝିବାକୁ ଚେଷ୍ଟା କରୁଛି । ସ୍କୁଲକୁ କର୍ମୀମାନେ ଅଧିକ ସମୟ ପରିଦର୍ଶନରେ ଆସିଲେ ବହୁତ ଭଲ ହୁଅନ୍ତା ।

ପିଲାଙ୍କ ଅଗ୍ରଗତି: ଆମ ଶିକ୍ଷାକେନ୍ଦ୍ରରେ କମ୍ ପରିମାଣର ପିଲା ପ୍ରକୃତ ଆଗକୁ ଯାଇଛନ୍ତି । ଅକ୍ଷର ଶିକ୍ଷାଠାରୁ ଆରମ୍ଭ କରି ବହିପଢ଼ା ପର୍ଯ୍ୟନ୍ତ ସବୁକୁ ଲକ୍ଷ୍ୟକଲେ ଜଣାଯାଏ ଯେ ମାତ୍ର ୧୦ରୁ ୧୨ ଜଣ ପିଲା 'ଅ' ଠାରୁ 'ଳ' ପର୍ଯ୍ୟନ୍ତ ଶିଖିଲେଣି । ଅଙ୍କ ଭାବରେ ୧ରୁ ୫୦ ପର୍ଯ୍ୟନ୍ତ ୫ରୁ ୬ ଜଣ ପିଲା ଶିଖିଲେଣି । ଏହାକୁ ଛାଡି ୫ ଓ ୬ ଜଣ ପିଲା ଭଲ ଗୀତ ଓ ନାଚ କରିପାରିଛନ୍ତି । ପିଲାମାନଙ୍କ ମନରେ ଆଗ୍ରହ ହେବା ପାଇଁ ବେଳେବେଳେ ଗାଁ ପାଖରେ ଥିବା ଜଙ୍ଗଲକୁ ନେଇ ବିଭିନ୍ନ ପଶୁ ପକ୍ଷୀ ଇତ୍ୟାଦି ଦେଖାଉଛି ।

ଗାଁ ବିଷୟରେ: ଏହି ଗାଁରେ ମୋଟ ୩୫ଟି ପରିବାର ରହୁଛନ୍ତି । ସେଥିମଧ୍ୟରୁ ୨୬ଘର ଆଦିବାସୀ, ହରିଜନ ୬ ଘର ଓ ୩ଟି ଘର ସାଧାରଣ ପରିବାର ବାସ କରୁଛନ୍ତି । ଜନଗଣନା ଅନୁସାରେ ଗାଁର ସମୁଦାୟ ଲୋକସଂଖ୍ୟା ହେଉଛି ୧୫୦ । ଗାଁର ଅଧିକାଂଶ ଲୋକ ଜଙ୍ଗଲ ଉପରେ ନିର୍ଭର କରି ଚଳନ୍ତି । ତେଣୁ ସେମାନଙ୍କର ଅର୍ଥନୀତି ସେତେ ସୁଦୃଢ଼ ନୁହେଁ । କେତେକ ଲୋକ ମଧ୍ୟ ପୋଡୁଚାଷ ଉପରେ ନିର୍ଭର କରୁଛନ୍ତି । ଗାଁରେ କୌଣସି ମହିଳାମଣ୍ଡଳ ହୋଇନାହିଁ । ଗାଁରେ ଶିକ୍ଷିତ ଲୋକମାନଙ୍କର ସଂଖ୍ୟା କମ୍ ଥିବାରୁ ସଚେତନତାର ଅଭାବ ରହିଛି । ବର୍ତ୍ତମାନ ସୁଦ୍ଧା ଲୋକମାନେ ଅନେକ ସମୟରେ ଅନ୍ଧବିଶ୍ୱାସ କରୁଛନ୍ତି । ଅନେକ ସମୟରେ ଲୋକମାନଙ୍କୁ ଏ ବିଷୟରେ ବୁଝାଇବା ସଙ୍ଗେ ସଙ୍ଗେ ନିଜେ ଲୋକମାନଙ୍କୁ ଡାକ୍ତରଖାନାକୁ ନେଉଛି । ଶିକ୍ଷା ଓ ସଚେତନତାର ଅଭାବ ପାଇଁ ଗାଁ ଲୋକେ ଠକେଇରେ ପଡୁଛନ୍ତି । ଏହାକୁ ହଟାଇବା ପାଇଁ ଲୋକମାନେ ଆଗେଇ ଆସିଲେଣି । ଧୀରେ ଧୀରେ ପରିବର୍ତ୍ତନ ଦେଖାଯାଉଛି ।

ଯୋଗାଯୋଗ: ଏହି ଗାଁକୁ ଯିବା ଆସିବା କରିବା ପାଇଁ ରାସ୍ତା ନାହିଁ କହିଲେ ଚଳେ । ବାଲନ୍ଦାପଡାରୁ ୧୭ କିଲୋମିଟର ଚାଲି ଚାଲି କରି ଆସିବାକୁ ପଡୁଛି । ଏଥିପାଇଁ ଅନେକ ସମୟରେ ଅଡୁଆ ଅଡୁଆ ଲାଗୁଛି । ଗାଁକୁ ରାସ୍ତା କରିବା ପାଇଁ ପଞ୍ଚାୟତ ଚେଷ୍ଟା କରୁନାହିଁ । ପାହାଡ କାଟିଲେ ରାସ୍ତା କରିହେବ । ଏହାଛଡା ସରକାରୀ ଯୋଜନା ମୋଟେ ପହଞ୍ଚିପାରୁନାହିଁ । ଯେଉଁଥିପାଇଁ ଏହି ଗାଁରେ ସରକାରୀ ଶିକ୍ଷକ ରହୁ ନାହାନ୍ତି ସେକଥା ଏପର୍ଯ୍ୟନ୍ତ କେହି ବୁଝୁ ନାହାଁନ୍ତି ।

ଶେଷରେ ଏତିକି କହିବି ଏହା ପୂର୍ବରୁ ମୁଁ ଗାଁରେ ରହୁଥିଲି, ଅଗ୍ରଗାମୀରେ ହୋଇଥିବା ବହୁମୁଖୀ ତାଲିମ୍ ନେବା ପରେ ଅନେକ କଥା ଜାଣିପାରିଲି । ପରେ

ପରେ ଯେତେବେଳେ ଡେରାକୁମ୍ଭା ଠାରେ ଶିକ୍ଷକମାନଙ୍କର ତାଲିମ୍ ହେଲା ସେତେବେଳେ ଆହୁରି ଅନେକ କଥା ଜାଣିଲି, ଯାହାକି ମୋତେ ପାଠପଢ଼ାଇବା ପାଇଁ ବହୁତ ସାହାଯ୍ୟ କରିଛି । ବର୍ତ୍ତମାନ ସୁଦ୍ଧା ମୁଁ ସବୁକିଛି ଜାଣିଛି ବୋଲି କହି ପାରୁନାହିଁ । ମୋତେ ଆହୁରି କିଛିଦିନ ବିଭିନ୍ନ ବିଷୟରେ ଜାଣିବାକୁ ପଡିବ । ପାଠପଢ଼ାର ଯେ ଅନ୍ତ ନାହିଁ ସେ କଥା ମୁଁ ଜାଣେ । ଏହି ଗାଁର ସମସ୍ତ ପିଲା ପାଠ ପଢ଼ିଲେ ଏବଂ ଗାଁର ଲୋକେ ନିଜ କଥା ନିଜେ ବୁଝିଲେ ଯାଇ ମୋର ଆଶା ପୂରଣ ହେବ । ଶିକ୍ଷା କେବଳ ପାଠପଢିଲେ ହେବନାହିଁ ବରଂ ନିଜର ତଥା ନିଜ ଅଞ୍ଚଳର ସର୍ବାଙ୍ଗୀନ ଉନ୍ନତିରେ ଲାଗିପାରିବ, ସେକଥା ମଧ୍ଯ ଆମକୁ ଦେଖିବାକୁ ପଡିବ ।

ବିନୋଦ କହଁର

ନବସୃଜନ ଶିକ୍ଷାକେନ୍ଦ୍ର, ବାରାହାଲା



# ମୋ ଅନୁଭୂତିରୁ ଖିଏ

ମୁଁ ଆଜିକୁ ଆଠମାସ ହେବ ସ୍କୁଲ ଚଳାଇଆସୁଛି । ଗାଁର ଲୋକମାନେ ମୋତେ ରହିବାକୁ ଓ ପିଲାମାନଙ୍କୁ ପାଠପଢ଼ାଇବା ପାଇଁ ଘର କରି ଦେଇଛନ୍ତି । ମୋର ରହିବାରେ କିଛି ଅସୁବିଧା ହେଉନାହିଁ । ମୁଁ ଗ୍ରାମବାସୀମାନଙ୍କ ସହ ସୁସମ୍ପର୍କ ରଖି ବାପା ମା' ଓ ଭାଇବନ୍ଧୁ ଭାବରେ ଚଳିଯାଉଛି । ମୋର ସୁବିଧା ଅସୁବିଧା କଥା ଲୋକମାନେ ବୁଝୁଛନ୍ତି । ସ୍କୁଲରେ ନିୟମିତ ରହି ପାଠ ପଢ଼ାଉଛି । ଏହି ଗାଁରେ ଅଧିକାଂଶ ଲୋକ ଆଦିବାସୀ ପରିବାରର । ଏମାନେ ସକାଳୁ ସନ୍ଧ୍ୟା ଯାଏ କାର୍ଯ୍ୟକରିବା ପାଇଁ ଡଙ୍ଗର, ପାହାଡ ଓ ବିଲକୁ ଚାଲିଯାଉଛନ୍ତି । ସେଥିଲାଗି ଦିନରେ ଲୋକମାନେ ମୋତେ ଦିଶୁନାହାଁନ୍ତି । ଅନ୍ୟାନ୍ୟ ଲୋକମାନଙ୍କ ଭଳି ଏଠାରେ ମଧ୍ୟ ପେଟପାଇଁ ଅନେକ ହଇରାଣ ହେଉଛନ୍ତି ।

ମୁଁ ଏଠାରେ ସକାଳ ୭ଟା ଠାରୁ ୧୦ଟା ପର୍ଯ୍ୟନ୍ତ ଓ ସନ୍ଧ୍ୟା ୬ ଘଣ୍ଟାଠାରୁ ୯ ଘଣ୍ଟା ପର୍ଯ୍ୟନ୍ତ ସ୍କୁଲ କରୁଛି । ପିଲାମାନେ ଦିନରେ ବାପା ମା'ମାନଙ୍କୁ ସାହାଯ୍ୟ କରିବା ପାଇଁ ଜଙ୍ଗଲ ଓ ଡଙ୍ଗର ପ୍ରଭୃତିକୁ ଯାଉଥିବାରୁ ଦିନରେ କମ୍ ପିଲା ସ୍କୁଲକୁ ଆସୁଛନ୍ତି । ଏହା ଲୋକଙ୍କର ପେଟପାଟଣା କଥା ହୋଇଥିବାରୁ ଲୋକମାନଙ୍କୁ ପିଲାମାନଙ୍କୁ ପଠାଇବା ପାଇଁ ସେତେ ବାଧ କରୁନାହିଁ । ରାତିରେ କିନ୍ତୁ ପ୍ରାୟତଃ ସବୁ ପିଲା ସ୍କୁଲକୁ ଆସୁଛନ୍ତି । ସେହି ପିଲାମାନଙ୍କୁ ନେଇ ମୁଁ ପାଠପଢ଼ାଉଛି ।

**ପିଲାମାନଙ୍କ କାହାଣୀ:**

ଏହି ଗ୍ରାମରେ ଅଧିକାଂଶ ଆଦିବାସୀ ଲୋକ ରହୁଛନ୍ତି । ଏମାନେ ଯେଉଁଭଳି କାମରେ ବ୍ୟସ୍ତ ଠିକ୍ ସେମାନଙ୍କର ପିଲାମାନେ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ । ଯାହାଫଳରେ ଦିନରେ କମ୍ ଏବଂ ରାତିରେ ଅଧିକ ପିଲା ସ୍କୁଲକୁ ଆସୁଛନ୍ତି । ଏହି ଗାଁରେ ଆଗରୁ ସରକାରୀ ସ୍କୁଲ ନାହିଁ । ଗାଁରୁ ଗୋଟିଏ କିଲୋମିଟର ଦୂରରେ ସରକାରୀ ସ୍କୁଲଟି ରହିଛି । ସେଥିପାଇଁ ଛୋଟ ଛୋଟ ପିଲାମାନେ ସରକାରୀ ସ୍କୁଲକୁ ଯାଉନଥିଲେ ।

ଆମ ନବସୃଜନ ସ୍କୁଲ ହେବାରୁ ସବୁ ଛୋଟ ଛୋଟ ପିଲା ଆମ ସ୍କୁଲରେ ପଢୁଛନ୍ତି । ସେମାନେ ଆମ ସ୍କୁଲରେ କିଛି ଦିନ ପଢି ବଡ ହୋଇଗଲେ ସରକାରୀ ସ୍କୁଲକୁ ଯିବେ । ଗାଁରେ ସ୍କୁଲ ନଥିବାରୁ ପିଲାମାନେ ପାଠପଢ଼ି ପାରୁନଥିଲେ । ବର୍ତ୍ତମାନ ପିଲାମାନେ ପଢିପାରୁ ଥିବାରୁ ଗାଁର ଲୋକମାନେ ଖୁସୀ ହେଉଛନ୍ତି । ମୁଁ ମଧ୍ୟ ଆଶା କରୁଛି ଯେ ଏହି ଗାଁର ପିଲାମାନେ ଭବିଷ୍ୟତରେ ସରକାରୀ ସ୍କୁଲକୁ ନିୟମିତ ଭାବେ ଯିବେ । ଏହା ହେଲେ ଯାଇ ଏ ଗାଁରେ ଏକ ମୌଳିକ ପରିବର୍ତ୍ତନ ହୋଇପାରିବ । ପାଠପଢ଼ା ସମସ୍ୟା ଯେପର୍ଯ୍ୟନ୍ତ ଥିବ ସେପର୍ଯ୍ୟନ୍ତ ଗାଁର କୌଣସି ପ୍ରକାରର ସମସ୍ୟା ଦୂର ହୋଇ ପାରିବ ନାହିଁ । ପିଲାମାନେ ସ୍କୁଲକୁ ଆସିଲେ ସେମାନଙ୍କ ମନରେ ଥିବା ଅନେକ ପ୍ରକାରର ଭୟ ଓ ସନ୍ଦେହ ଦୂର ହୋଇପାରିବ ନାହିଁ । ପିଲାମାନେ ସ୍କୁଲକୁ ଆସିଲେ ସେମାନଙ୍କ ମନରେ ଥିବା ଅନେକ ପ୍ରକାରର ଭୟ ଓ ସନ୍ଦେହ ଦୂର ହୋଇପାରିବ ତେଣୁ ପିଲାମାନଙ୍କୁ ପାଠ ପଢ଼ାଇବା ଗାଁର ଲୋକମାନଙ୍କ ପାଇଁ ପ୍ରଥମ ଆବଶ୍ୟକତା ବୋଲି ଲୋକମାନଙ୍କୁ କହୁଛି ।

**ଗାଁର ସମସ୍ୟା ଓ ତାର ସମାଧାନ:**

ଏହି ଗାଁର ଲୋକମାନେ ସବୁ ସମୟରେ କାର୍ଯ୍ୟ ବ୍ୟସ୍ତ ରହନ୍ତି । ଏମାନେ ବାହାର ଦୁନିଆଁ କଥା ବହୁତ କମ୍ ଜାଣୁଛନ୍ତି । ଗାଁର ସମସ୍ତଙ୍କୁ ପାଖରେ ଚଳିବା ପାଇଁ ସେତେ ପରିମାଣର ଜମି ନାହିଁ । ଆଗରୁ ଏଠାରେ ଜମି ଥିଲା ବର୍ତ୍ତମାନ ତାହା ସବୁ ପାଣି ଘେରରେ ରହି ଯାଇଛି । ନିଜର ଚାଷ ଜମି ନଥିବାରୁ ଲୋକମାନେ ଅନେକ ସମୟରେ ପାଖଆଖ ଅନ୍ୟାନ୍ୟ ଗାଁକୁ କାମ କରିବା ପାଇଁ ଯାଇ ନିଜର ଗୁଜୁରାଣ ମେଣ୍ଟାଉଛନ୍ତି । ଗାଁରେ ନଳକୂଅର ବହୁତ ଅସୁବିଧା ଥିଲା; ଅଗ୍ରଗାମୀ ତରଫରୁ ଦୁଇଟି ନଳକୂଅ ହୋଇଯିବାରୁ ଆମକୁ ବହୁତ ସୁବିଧା ହେଉଛି ବୋଲି ଲୋକମାନେ କହୁଛନ୍ତି । ରାସ୍ତାଘାଟର ସୁବିଧା ନଥିବାରୁ ଲୋକମାନେ ପାହାଡ ଡେଇଁ ଯିବାଆସିବା କରୁଛନ୍ତି । ଘରଟିଏ କରିବା ପାଇଁ ମଧ୍ୟ ଭଲ ଜାଗା ନାହିଁ । ଲୋକମାନେ ପାହାଡ ତଳେ ଘର କରି ରହୁଛନ୍ତି । ସରକାରୀ କାମ କହିଲେ ଲୋକମାନେ କିଛି ବୁଝୁନଥିଲେ । ବର୍ତ୍ତମାନ ଟିକିଏ ଟିକିଏ ଜାଣିଲେଣି । ଯାହା ଫଳରେ ଲୋକମାନେ ଦୁଖରେ ଜୀବନ କାଟୁଛନ୍ତି ।

ଆମ ସ୍କୁଲ ଖୋଲାନହେବା ପୂର୍ବରୁ ଲୋକମାନେ ବହୁତ ମଦ ରାନ୍ଧୁଥିଲେ ଓ ପିଉଥିଲେ ମଧ୍ୟ । କିନ୍ତୁ ପ୍ରଥମେ ଯେତେବେଳେ ମୁଁ ଏହି ଗାଁକୁ ଆସିଲି ସେତେବେଳେ ଲୋକମାନଙ୍କର ମଦପିଆ ଦେଖି ତାଟକା ହୋଇଗଲି । ପରେ ଚିନ୍ତା କଲି ଲୋକମାନେ

ଯଦି ଏଭଳି ମଦ ପିଇବେ ତେବେ ସେମାନଙ୍କର ପିଲାମାନଙ୍କ ପ୍ରତି ନଜର କେମିତି ରହିବ । ଦିନସାରା କାମ କରିବେ ରାତିରେ ମଦପିଇବେ ତେବେ ସେମାନଙ୍କର ଅନ୍ୟ ବିଷୟରେ ଭାବିବା ପାଇଁ ସମୟ ରହିଲା କେଉଁଠି ? ଏହି ପ୍ରଶ୍ନ ମୋ ମନରେ ଅନେକ ଥର ଆସିଲା । ଏହି କଥା ଚିନ୍ତା କରିବା ପରେ ଗୋଟିଏ ଦିନ ଗାଁର ସମସ୍ତ ଲୋକଙ୍କୁ ଡାକି ଗାଁରେ ଆଲୋଚନା କଲି । ସବୁକଥା ବୁଝାଇବା ଭିତରେ ଯେଭଳି ମଦ କଥା ଆଲୋଚନା କଲି ତାହା ଶୁଣି ଲୋକମାନେ ମୋ କଥାକୁ ଖାତିର କଲେ ନାହିଁ ଏବଂ ଏମିତି କେତେ ଦିନ ମଦ ମଧ ପିଇଲେ । ବହୁବାର ଏମିତି ବୁଝାଇବାକୁ ଚେଷ୍ଟା କଲି । ଏମିତି ମାରମ୍ବାର ଲୋକମାନଙ୍କୁ ବୁଝାଇବାରୁ ଲୋକମାନେ ମଦ ରାନ୍ଧିବା ବନ୍ଦ କରିଦେଲେ । ଏପର୍ଯ୍ୟନ୍ତ ତାହାହିଁ ରହି ଆସିଛି । ଆଗରୁ ଯେଭଳି ମଦ ପିଉଥିଲେ ବର୍ତ୍ତମାନ ସେମିତି ପିଉନାହାନ୍ତି । ଖାଲି ପରବକୁ ଛାଡି ଦେଲେ ପ୍ରାୟତଃ ମଦପିଇବା ମଧ ବନ୍ଦ ହୋଇଯାଇଛି ।

ଆଗରୁ ଏହି ଗାଁରେ ପାଣ୍ଠି କିଛି ନଥିଲା । ସେଥିପାଇଁ ଗାଁରେ ବୈଠକ କରି ଲୋକମାନଙ୍କୁ କହିବାରୁ ପାଣ୍ଠି ପାଇଁ ଧାନ ଗୋଟାଇବା ଆରମ୍ଭ ହୋଇଗଲାଣି । ସବୁଠାରୁ ଖୁସୀ କଥା ହେଉଛି ଏହି ଗାଁର ମା'ମାନେ ମିଶି ସଞ୍ଚୟ ଓ ଋଣଦଳ ମାଧମରେ ପଇସା ଗୋଟେଇ ୯୮୦୦ ଟଙ୍କା ରଖିଲେଣି । ଧୀରେ ଧୀରେ ଏହି ଗାଁର ଲୋକମାନେ ସାମୂହିକ ଭାବେ କାମଦାମ କରିବା ଆରମ୍ଭ କଲେଣି । ଆଗକୁ ଗାଁ ଓ ମା'ମାନଙ୍କର ପାଣ୍ଠି ବଢ଼ିବା ସଙ୍ଗେ ସେଙ୍ଗ ପିଲାମାନେ ମଧ ସ୍କୁଲ ପାଇଁ ପାଣ୍ଠି କରିବେ ବୋଲି ଯୋଜନା କଲେଣି । ଏହିଭଳି ଉଦ୍ୟମ ଜାରି ରହିଲେ ଗାଁର ନିଶ୍ଚୟ ଉନ୍ନତି ହୋଇପାରିବ । ପ୍ରତ୍ୟେକ ଗାଁ ଭଳି ଏଠାରେ ମଧ ଲୋକମାନେ ପ୍ରଥମେ ଅନେକ କଥା ହଠାତ୍ ବିଶ୍ୱାସ କରୁନଥିଲେ କିନ୍ତୁ ବର୍ତ୍ତମାନ ତାହାକୁ ବିଶ୍ୱାସ କରୁଛନ୍ତି । ଲୋକମାନେ ନିଜ ଗାଁ କଥାନିଜେ ଭାବିଭାକୁ ଆରମ୍ଭ କଲେଣି ଏହାହିଁ ମୋତେ ବେଶି ଭଲ ଲାଗୁଛି । ଗାଁର ସମସ୍ତ ପିଲା ପଢ଼ି ଶିକ୍ଷିତ ହୋଇପାରିଲେ ଯାଇ ଏହି ଗାଁ ଆହୁରି ଆଗକୁ ଆସି ପାରିବ ବୋଲି ଭାବୁଛି ।

ରଘୁନାଥ ହରିଜନ

ଶିକାଡୁଙ୍ଗୀ ଶିକ୍ଷାକେନ୍ଦ୍ର, ଅନ୍ତ୍ରୀ



# ମୋ ସ୍କୁଲ ମୋ ଜୀବନ

ଏହି କଥାଟିକୁ ମନେପକାଇବା ବେଳେ ମୋତେ ବହୁତ ଖୁସୀ ଲାଗିଲା । ଯେଉଁଦିନ କାଶୀପୁରରୁ ବଡଭାଇ ମୋ ପାଖକୁ ଚିଠିଟିଏ ପଠାଇଲେ ସେହିଦିନ ମୋର ମଧ୍ୟ କିଛି ଲେଖିବା ପାଇଁ ମନେ ପଡିଲା । ସ୍କୁଲ ଭିତରେ ମଜ୍ଜି ରହିଯିବା ପରେ ମୋତେ ଅନେକ ଜିନିଷକୁ ଭୁଲିଯିବାକୁ ହେଲା । ପାଠପଢ଼ିବା ସମୟରେ ଆମ୍ଭେମାନେ ନିଜକୁ ଛାଡି ଅନ୍ୟମାନଙ୍କ କଥା ବହୁତ କମ୍ ଭାବୁଥିଲୁ । ଯେତେବେଳେ ଏଠାରେ ଗୋଟିଏ କାମ ଭିତରକୁ ପଶିଗଲୁ ତା'ପରେ ଅନେକ କଥା ମନେ ପଡିଲା । ବିଶେଷକରି ଡେରାକୁମ୍ଭାରେ ହୋଇଯାଇଥିବା ଶିକ୍ଷକ ସମାବେଶ ପରେ ପରେ ସ୍କୁଲ, ପିଲା ଓ ଗାଁକୁ ଛାଡି ଆମଠାରୁ ଦେଶ ବା ରାଜ୍ୟ ଅନେକ କିଛି ଆଶା କରୁଛି ବୋଲି ଭାବିବାକୁ ଖୋରାକ ମିଳିଗଲା ।

ପ୍ରାୟ ସମସ୍ତେ ମୋ ସହିତ ଏକମତ ହେବେ ଯେ ଉଦ୍ଦେଶ୍ୟବିହୀନ ମାନବ ଜୀବନ କର୍ଣ୍ଣଧାରବିହୀନ ନୌକା ପରି । ଯେମିତି ଭବିଷ୍ୟତ ଲକ୍ଷ୍ୟ ବିନା ଜୀବନ ଅନ୍ଧକାରମୟ ହୋଇଥାଏ । ସମସ୍ତେ ଜାଣନ୍ତି ଯେ ଶିକ୍ଷକ ଏବଂ ଶିକ୍ଷା ବିନା ଏ ପୃଥିବୀରେ କିଛି ସମ୍ଭବ ହେବା କଷ୍ଟକର । ଶିକ୍ଷକମାନେ ହେଉଛନ୍ତି ଆମ ଜାତିର ମେରୁଦଣ୍ଡ ସଦୃଶ । ସେମାନେ ଦେଶ ଓ ଜାତିର ଚରିତ୍ର ଗଠନ କରିବାରେ ଲାଗିଥାଆନ୍ତି । ବର୍ତ୍ତମାନ ଏଥିରେ ଏକମତ ହେବା ପାଇଁ ଅନେକ ଲୋକ ରାଜି ହେବେ ନାହିଁ । ତଥାପି ସେହି ଗୁରୁଙ୍କ କୃପାରୁ ମାନବର ଅଜ୍ଞାନତା ଦୂର ହୋଇଥାଏ । ସେ ଆଲୋକର ଶିଖା ଦେଖାନ୍ତି । ଏହି କଥାମାନ ଆଗରୁ ରହିଆସିଛି । ସମୟ ଥିଲା ପିଲାମାନେ ଶିକ୍ଷକଙ୍କୁ ଦେବତା ବୋଲି ମାନୁଥିଲେ ଏବଂ ଶିକ୍ଷା ସେତେବେଳେ ଭିନ୍ନ ଧରଣର ଥିଲା । ବର୍ତ୍ତମାନ ସ୍କୁଲର ପାଠପଢ଼ା ହିସାବରେ ପିଲାମାନେ ଅକ୍ଷର ସାରି ବହି ପଢିବା ଆରମ୍ଭ କଲେଣି । ଆମ ସ୍କୁଲରେ ସମୁଦାୟ ୪୦ ଜଣ ପିଲା ପାଠ ପଢୁଛନ୍ତି ।

ପ୍ରଥମେ ଯେଉଁ ଗାଁରୁ ପିଲା ସ୍କୁଲ କହିଲେ ଡରୁଥିଲେ ସେହି ଗାଁରେ ଆଜି ପ୍ରତ୍ୟହ ୪୦ଜଣ ପିଲା ଆସି ପଢୁଛନ୍ତି । ତାହାହିଁ ଆମ ଗାଁ ପାଇଁ ଖୁସୀ ଖବର ହୋଇଛି । ସ୍କୁଲ କମିଟିର ପିଲାମାନେ ବହୁତ ଖୁସୀ ହୋଇ ସ୍କୁଲ ଦେଖିବାକୁ ଆସୁଛନ୍ତି । ପିଲାମାନଙ୍କ ପାଠପଢ଼ା କଥା ବୁଝୁଛନ୍ତି । ସ୍କୁଲ ଘର କରିବା ପାଇଁ ଅନେକ ଗାଁରେ ଅନେକ ସମୟ ଲାଗିଛି କିନ୍ତୁ ଏଠାରେ ବହୁତ କମ୍ ସମୟ ଭିତରେ ବଡ ଘରଟିଏ ହୋଇଛି । ପିଲାମାନେ ଏଠାରେ ବସି ପଢୁଛନ୍ତି । ସକାଳ ୮ଟାରୁ ୧୧ ଘଟିକା ଏବଂ ସନ୍ଧ୍ୟା ୭ଟାରୁ ୯ ଟା ସମୟ ପର୍ଯ୍ୟନ୍ତ ପିଲାମାନଙ୍କୁ ପାଠପଢା ଯାଉଛି । ପିଲାମାନଙ୍କ ପାଇଁ ଅଧିକ ବହି ଦିଆଗଲେ ଭଲ ହୁଅନ୍ତା । ସ୍କୁଲ ଚଳାଇବା ପାଇଁ ଯେମିତି ଆଗ୍ରହ ପ୍ରକାଶ ପାଇଛି ତାହା କିଭଳି ଅନେକ ଦିନ ଧରି ରହିପାରିବ ଏବଂ ଲୋକମାନେ ନିଜେ କିଭଳି ଭବିଷ୍ୟତରେ ପାଠପଢ଼ାଇବେ ସେଥିପାଇଁ ମୁଁ ଗାଁରେ ଆଲୋଚନା କରୁଛି । ଅନ୍ୟ ପଟରେ ଦେଖିବାକୁ ଗଲେ ପିଲାମାନେ ପାଠପଢ଼ି ଗଲେ ହେବ ନାହିଁ । ପାଠପଢ଼ି ମଧ୍ୟ ଏଠାରେ ଅନେକ ପିଲା କୌଣସି କାମ ଧନ୍ଦା ନପାଇ ହଇରାଣ ଭୋଗୁଛନ୍ତି । ଲୋକମାନେ ଠକେଇ ଶୋଷଣରେ ପଡୁଛନ୍ତି । ତାହାକୁ ବନ୍ଦ କରିବା ପାଇଁ ଆମ ଶିକ୍ଷାରେ (ସରକାରୀ) କିଛି ଯୋଜନା ନାହିଁ । ସେଥିପାଇଁ ଅଗ୍ରଗାମୀ ସଚିତ୍ରସଂସାର ଭଳି ଆହୁରି ବହି ବାହାର କରିବା ଦରକାର । କନ୍ଧମାଳ ଜିଲ୍ଲାରେ ନିରକ୍ଷରତା ହାର ଯେମିତି ରହିଛି ତାହାକୁ ଯଦି କମା ନଯାଏ ତେବେ ଆମ ଶିକ୍ଷାର ମୂଲ୍ୟ ରହିବ ନାହିଁ ତେଣୁ ଅନ୍ୟ ଭାଇ ଭଉଣୀକୁ ଏଥିପ୍ରତି ଧ୍ୟାନ ଦେବା ପାଇଁ କହୁଛି ।

ଦାମୋଦର କହଁର

ନବସୃଜନ ଶିକ୍ଷାକେନ୍ଦ୍ର, ବୃଡିପଡ଼ା



# ତଥାପି ପିଲାଏ ପଢ଼ିବେ

ମୁଁ ଯେଉଁ ଗ୍ରାମରେ ଗୁରୁଭାଇ ରୂପେ କାମ କରୁଛି ତାହାର ନାମ ପିଶୁପଦର ଚୁଆଁ ସାହି । ଏହା କନ୍ଧମାଳ ଜିଲ୍ଲାର ଫୁଲବାଣୀ ବ୍ଲକ ଅନ୍ତର୍ଗତ ମିଣିଆ ପଞ୍ଚାୟତରେ ଅବସ୍ଥିତ । ଏହି ଗାଁରେ ଥିବା ନବସୃଜନ ସ୍କୁଲରେ ଶିକ୍ଷକ ଭାବେ କାମ କରୁଛି । ଏହି ଗାଁରେ ସମସ୍ତ ଅଧିବାସୀ ଆଦିବାସୀ ସମ୍ପ୍ରଦାୟର । ଗାଁର ସମସ୍ତ ଲୋକ ଚାଷ କରି ଜୀବିକା ଅର୍ଜନ କରନ୍ତି । ସମସ୍ତ ପୁଅଝିଅ ଆଗରୁ ପ୍ରାୟତଃ ପାଠ ପଢିବାକୁ ଆସୁନଥିଲେ । ଏହାର ଗୋଟିଏ ବଡ କାରଣ ହେଲା ପ୍ରାୟତଃ ସବୁପିଲାଙ୍କୁ ଘର କାମରେ ସାହାଯ୍ୟ କରିବାକୁ ପଡୁଥିଲା । ଗାଁ ପାଖରେ ସ୍କୁଲ ନଥିଲେ ମଧ ଅଙ୍ଗନବାଡ଼ି କେନ୍ଦ୍ର ରହିଛି । ସେଠାକୁ ପିଲାମାନେ ସକାଳେ ଖାଇବାକୁ ଯାଉଥିବାରୁ ସକାଳ ବେଳା କେବେ ସ୍କୁଲ କରି ହୁଏନାହିଁ । ବଡ ପିଲାମାନେ କାମ କରିବାକୁ ମଧ ଯାଆନ୍ତି । କିନ୍ତୁ ରାତିରେ ତିନିଘଣ୍ଟା ସ୍କୁଲ ହୁଏ । ଗାଁରେ ଥିବା ମଣ୍ଡପ ଘରେ ପ୍ରତିଦିନ ସ୍କୁଲ କରାଯାଉଛି । ବର୍ତ୍ତମାନ ସ୍କୁଲ ଘର କାମ ଆରମ୍ଭ ହୋଇଗଲାଣି । ଆଉ ମାସକ ଭିତରେ ଘର ସଂପୂର୍ଣ୍ଣ ହୋଇଯିବ ।

ଅଗ୍ରଗାମୀ ତରଫରୁ ଦିଆଯାଇଥିବା ପାଠ୍ୟ ଉପକରଣକୁ ଛାଡି ଆମେ ନିଜେ ନିଜେ ମଧ ଅନେକ ପ୍ରଣାଳୀରେ ପାଠ ପଢୁଅଛୁ । ସେଥିମଧରୁ ଗୀତ, ଗପ, ଚିତ୍ର, ମାଟି, ପଥର ଏବଂ ବାହାର ଜାଗା ପରିଭ୍ରମରଣ କରି ପିଲାମାନଙ୍କୁ ବିଭିନ୍ନ ବିଷୟରେ ଅବଗତ କରାଉଛୁ । ବର୍ତ୍ତମାନ ନିୟମିତ ସ୍କୁଲକୁ ପିଲା ଆସୁଛନ୍ତି । ମୋର ଗୋଟିଏ ଅସୁବିଧା ଯେ ମୁଁ ଗୋଟିଏ ସାହିରେ ରହି ଅନ୍ୟ ଗୋଟିଏ ସାହିରେ ପାଠ ପଢ଼ାଇବା ପାଇଁ ଯାଉଛି । ମୋ ସାଙ୍ଗରେ ସେହି ଗାଁର ପିଲାମାନେ ମଧ ଯାଉଛନ୍ତି । ତିନୋଟି ଗାଁର ପିଲାମାନେ ଗୋଟିଏ ଜାଗାରେ ପଢୁଛନ୍ତି । ସେଥିମଧରୁ ମୁଁ ଥିବା ଗାଁରୁ ଅନ୍ୟ ଗାଁକୁ ଗଲାବେଳକୁ ପ୍ରତିଦିନ ଗୋଟିଏ ନାଳ ଡେଇଁ ଯାଉଛି । କେନ୍ଦୁସାହି, କ୍ରାକିପଡା ଓ ଚୁଆଁସାହି ଏହି ତିନୋଟି ସାହିର ପିଲାମାନେ ଆମ ସ୍କୁଲରେ ପଢୁଛନ୍ତି । ପ୍ରତିଦିନ

ଆମ ସ୍କୁଲରେ ପାଠପଢ଼ା ସରିଲେ ମୁଁ ପ୍ରଥମେ ଗୋଟିଏ ସାହିର ପିଲାଙ୍କୁ ନେଇ ତାଙ୍କ ଘରକୁ ଛାଡ଼ିଯାଏ । ସେଠାରୁ ଫେରିଲା ପରେ ମୁଁ ରହୁଥିବା ସାହିର ପିଲାମାନଙ୍କୁ ନେଇ ନାଳ ଡେଇଁ ଯିବାକୁ ହୁଏ । ଏହିପରି ଭାବରେ ସବୁଦିନ ମୋତେ ହଇରାଣ ହେବାକୁ ପଡୁଛି । ବର୍ତ୍ତମାନ ପର୍ଯ୍ୟନ୍ତ ସ୍କୁଲଟି ଭଲରେ ଚାଲିଛି । ଗାଁର ଲୋକମାନେ ମାସକୁ ଦୁଇଥର ଗାଁ ଏବଂ ସ୍କୁଲ ବିଷୟରେ ବୈଠକ କରୁଛନ୍ତି । ମୁଁ ମଧ୍ୟ ଅନେକ ସମୟ ଗାଁ ବୈଠକରେ ଯୋଗଦିଏ । ଆମ ସ୍କୁଲ ବୈଠକରେ ବାପା ମା' ଉଭୟ ବସି ଭଲମନ୍ଦ କଥା ଆଲୋଚନା କରନ୍ତି । ଆମେ ସ୍କୁଲ ପରିଦର୍ଶନ ତଥା ମିଟିଂରେ କର୍ମୀମାନେ ଯୋଗଦିଅନ୍ତି ।

ବର୍ତ୍ତମାନ ଆମ ଅଞ୍ଚଳରେ ଥିବା ସାଲୁଙ୍କି ନଦୀରେ ଗୋଟିଏ ବଡ ଚେକ୍‌ଡ୍ୟାମ୍ ବାନ୍ଧିବା ପାଇଁ ସରକାର ଯୋଜନା କରୁଛନ୍ତି ବୋଲି ଶୁଣାଯାଉଛି । ଏହା ଅନେକ ଦିନରୁ ଯୋଜନା ହେବାର ଜଣାଯାଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ହୋଇପାରିନାହିଁ । କିନ୍ତୁ ଲୋକମାନଙ୍କ ମଧ୍ୟରେ ଏକଥା ଚହଳ ସୃଷ୍ଟି କରିସାରିଲାଣି । ଗାଁ ପାଖରେ ଯଦି ଜଳଭଣ୍ଡାର କରାଯାଏ, ଏ ଅଞ୍ଚଳରୁ କେତେକ ଗାଁ ଉଠିବାର ବି ଶୁଣାଯାଉଛି । ସେଥିପାଇଁ ଆମ୍ଭେମାନେ କେଉଁଆଡେ ରହିବୁ ସେକଥା ଅନେକ ସମୟରେ ଚିନ୍ତା କରିବାକୁ ପଡୁଛି । ଲୋକମାନେ ମଧ୍ୟ ଏକଥା ଜାଣି କୁଆଡେ କେମିତି ଜାଗା ମିଳିବ ସେକଥା ବି ମୋତେ ପ୍ରଶ୍ନ କରୁଛନ୍ତି । ଏ ବିଷୟରେ ଲୋକମାନଙ୍କୁ ଯେତେ ବୁଝାଇଲେ ମଧ୍ୟ ଲୋକମାନେ ବୁଝିବାକୁ ନାରାଜ । ଏଥିପାଇଁ ସେମାନଙ୍କୁ କିପରି ବୁଝାଇପାରିବି ଜାଣିପାରୁନାହିଁ । ଏହି ଜଳଭଣ୍ଡାର ବିଷୟରେ ସରକାର ବା ଜିଲ୍ଲାପାଳ କୌଣସି ଘୋଷଣା ମଧ୍ୟ କରିନାହାନ୍ତି । ଖବରକାଗଜରେ ମଧ୍ୟ କିଛି ପ୍ରକାଶ ପାଇନାହିଁ । କିନ୍ତୁ ଲୋକମାନେ ଗାଁ ଛାଡି ଚାଲିଯିବା ପାଇଁ ଚିନ୍ତା କରିବା ସଂଗେ ସଂଗେ ଆଉ କେତେକ ଲୋକ ମୋଟେ ଯିବେ ନାହିଁ ବୋଲି ମନାକରୁଛନ୍ତି । ଏହି ସମସ୍ୟାଟି ସ୍କୁଲ ଚଳାଇବାରେ ମଧ୍ୟ ବ୍ୟାଘାତ ସୃଷ୍ଟି କରୁଛି । ଏହାର ସମାଧାନ କିପରି କରାଯାଇପାରିବ ? ପତ୍ର ଦ୍ୱାରା ଜଣାଇଦେବେ ବୋଲି ଅନୁରୋଧ କରୁଛୁ ।

ପ୍ରକାଶ ଚନ୍ଦ୍ର ମଲିକ
ଅଗ୍ରଗାମୀ ମଣିଆ ଶିକ୍ଷାକେନ୍ଦ୍ର

□□□

# ଆମ ଶିକ୍ଷକଙ୍କ ପାଇଁ

ଆମ୍ଭେମାନେ ଅନେକ ଦିନ ଧରି ଶିକ୍ଷକ ଭାବରେ କାର୍ଯ୍ୟ କରିଆସିଲୁଣି । ଆମ୍ଭେମାନେ ଗାଁରେ ରହି ଲୋକମାନଙ୍କ ସହିତ ତଥା ପିଲାମାନଙ୍କ ସାଙ୍ଗରେ ମିଶି ଅନେକ କିଛି ଆଲୋଚନା କରୁଛୁ । ଜଣେ ଶିକ୍ଷକ ଭାବରେ ଆମକୁ ମଧ୍ୟ ଅନେକ କିଛି ଶିକ୍ଷା କରିବାର ରହିଛି । ସେଥିପାଇଁ ଜଣେ ଶିକ୍ଷକ ନିଜକୁ କିପରି ଭାବରେ ଲୋକମାନଙ୍କ ପାଖରେ ପହଞ୍ଚିବା ଦରକାର ସେ ବିଷୟରେ ମୁଁ ପଦେ ଲେଖିବାକୁ ଇଚ୍ଛା କରିଛି । ବର୍ତ୍ତମାନ ସମୟରେ ଶିକ୍ଷକମାନେ ନିଜକୁ ସ୍କୁଲ ଏବଂ ପିଲାମାନଙ୍କ ଠାରୁ ଅଲଗା ଭାବରେ ଦର୍ଶାଉଛନ୍ତି; ଯାହାଦ୍ୱାରା ପିଲା ଏବଂ ଶିକ୍ଷକଙ୍କ ମଧ୍ୟରେ ଏକ ଦୂରତା ରହିଯାଉଛି । ଆମ୍ଭେମାନେ କିଭଳି ହେବା ଦରକାର ଆମର ପ୍ରତ୍ୟେକ ଗୁଣ କିପରି ହେଲେ ପିଲାମାନେ ଆମଠାରୁ ଅନୁକରଣ କଲାବେଳେ ଭଲ ଜିନିଷଗୁଡ଼ିକ ଗ୍ରହଣ କରିବେ ସେକଥା ଚିନ୍ତା କରିବା ଦରକାର । ଶିକ୍ଷକ ଖାଲି ପାଠ ପଢ଼ାଇ ଦେଲେ ହେବ ନାହିଁ କିମ୍ବା ସ୍କୁଲ ପରିଚାଳନା କରିଦେଲେ ହେବ ନାହିଁ ତାହାର ଆହୁରି ମଧ୍ୟ ଅନେକ କର୍ତ୍ତବ୍ୟ ରହିଛି । ତାହାକୁ ନେଇ ଫୁଲବାଣୀର ଡେରାକୁମ୍ଭା ପ୍ରକଳ୍ପରେ ଏକ ଆଲୋଚନା ହୋଇଯାଇଛି । ତାହରି ଉପରେ ମୁଁ ଏକ ଲେଖା ଏଠି ଉପସ୍ଥାପନ କରୁଛି ।

ଜଣେ ଶିକ୍ଷକର ଗୁଣ କହିଲେ ଅନେକ ବିଷୟକୁ ବୁଝାଏ । କିନ୍ତୁ ମୋ ମତରେ ଜଣେ ଶିକ୍ଷକ ଯିଏକି ତା' ନିଜର କାମ ଠିକ୍ ଭାବରେ ଚଳାଇଥିବ ଏବଂ ନିଜେ ଶାନ୍ତ ସରଳ ହୋଇଥିବ, କାହା ଉପରେ ହିଂସା କରୁନଥିବ ଏବଂ ସମସ୍ତ ସମସ୍ୟାର ସମ୍ମୁଖୀନ ହୋଇପାରୁଥିବ; ତେବେ ସେ ଜଣେ ଭଲ ଶିକ୍ଷକ ହୋଇପାରିବ । ଯେହେତୁ ଶିକ୍ଷକର ଅଧିକ ସମ୍ପର୍କ ପିଲାମାନଙ୍କ ସହିତ ତେଣୁ ସେ କେନ୍ଦ୍ରର ପିଲାମାନେ କିଭଳି ସ୍କୁଲକୁ ଆସିବେ ଏବଂ ମନଖୁସିରେ ପାଠ ପଢ଼ିବେ ସେ ବିଷୟରେ ଆମେ ଲକ୍ଷ୍ୟ କରିବା କଥା । ଆମ ଗାଁଗହଳିର ପିଲାମାନେ ପରିଷ୍କାର ପରିଚ୍ଛନ୍ନ ହେଉନାହାନ୍ତି ।

ସେଥିପ୍ରତି ଶିକ୍ଷକ ଭାବରେ ଆମେ ସେମାନଙ୍କ ସୁସ୍ଥତା ଓ ପରିଷ୍କାର ପ୍ରତି ଯତ୍ନବାନ ହେବା କଥା । ସବୁଠାରୁ ବଡକଥା ହେଲା ଆମ ଅଞ୍ଚଳର ପିଲାମାନେ ବଡଲୋକମାନେ ଆସିଲେ କଥା କହିବାକୁ ଡରୁଛନ୍ତି । ତାହାକୁ ମଧ୍ୟ ସମାଧାନ କରିବାକୁ ଚେଷ୍ଟା କରିବା ଉଚିତ । ସର୍ବୋପରି ପିଲା, ସ୍କୁଲ, ଗାଁ ଓ ପରିବେଶ କିଭଳି ଭାବରେ ଭଲ ରହିବେ ସେଥିପ୍ରତି ଯେଉଁ ଶିକ୍ଷକ ଧ୍ୟାନ ଦେଉଥିବ ଏବଂ ସେଥିପାଇଁ ନିଜେ କାମ କରିବାକୁ ବାହାରୁ ଥିବ ତାହାର ହିଁ ଶିକ୍ଷକତା କରିବାର ଭଲ ଯୋଗ୍ୟତା ଅଛି ବୋଲି ଅନୁମାନ କରାଯାଇପାରେ । ଏହାକୁ ଆହୁରି ସରଳ ଭାବରେ କୁହାଯାଇପାରେ । ଏହିଗୁଡିକ ଗାଁରେ ଦେଖାଗଲେ ଗୁରୁଭାଇ ଠିକ୍‌ଭାବରେ କାମ କରୁଛି ବୋଲି ଜଣାଯାଇପାରିବ ।

୧. ଗାଁ ଓ ଗ୍ରାମବାସୀ ସ୍କୁଲକୁ ସହଯୋଗ କରୁଥିବେ ।

୨. ଶିକ୍ଷକ ଓ ପିଲାମାନଙ୍କ ମଧ୍ୟରେ ସୁସମ୍ପର୍କ ରହୁଥିବ ।

୩. ସ୍କୁଲଘର ଓ ସ୍କୁଲର ପରିବେଶ ଭଲ ଭାବରେ ଥିବ ।

୪. ଛାତ୍ରଛାତ୍ରୀମାନେ ନିୟମିତ ସ୍କୁଲକୁ ଆସୁଥିବେ ।

୫. ଗାଁରେ ସାମୂହିକ କାର୍ଯ୍ୟରେ ସମସ୍ତେ ସହଯୋଗ କରୁଥିବେ ।

୬. ପିଲାମାନଙ୍କର ଉଚ୍ଚତର ଶିକ୍ଷା ପାଇଁ ଶିକ୍ଷକ ଏବଂ ଅଭିଭାବକ ସର୍ବଦା ଚେଷ୍ଟା କରୁଥିବେ ।

ନବସୃଜନ ସ୍କୁଲର ଶିକ୍ଷକ ଭାବରେ ମୁଁ ଆପଣମାନଙ୍କୁ ଆମ ଶିକ୍ଷାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ବିଷୟରେ କିଛି କହୁଛି । ଉପରଲିଖିତ ସମସ୍ତ ବିଷୟଗୁଡିକ ପ୍ରତି ଧ୍ୟାନ ଦେବା ଆମ ପାଇଁ ନିତାନ୍ତ ଜରୁରୀ । ତା' ନହେଲେ ଆମର ଲକ୍ଷ୍ୟ ପୂରଣ ହୋଇପାରିବ ନାହିଁ । ଆମ ସ୍କୁଲକୁ ଗାଁର ସମସ୍ତେ ନିଜର ବୋଲି ଭାବିବେ । ନିଜର ଖୁସି ଅନୁସାରେ ସମସ୍ତେ ପାଠ ପଢ଼ିଆସିବେ । ସରକାରୀ ବିଦ୍ୟାଳୟକ ପରି ଆମ ସ୍କୁଲରେ ଭୟ ରହିବ ନାହିଁ । ଦେଶୀୟା ଗପ, ଗୀତ, ନାଚ ସାହାଯ୍ୟରେ ଅନେକ କଥା ପିଲାମାନଙ୍କୁ ଜଣାଇବା । ମୋ ଭାଷାରେ ନବସୃଜନ ଶିକ୍ଷା କହିଲେ ଯେ କୌଣସି କାମ ବା ଯେ କୌଣସି ଶିକ୍ଷା ନୂଆ କରି ତିଆରି କରିବା । ନୂଆ ଭାବରେ କିଛି ବାହାର କରି ପିଲାମାନଙ୍କୁ ଶିକ୍ଷା ଦେବା । ଏହା ହିଁ ନବସୃଜନ ଶିକ୍ଷାର ମୂଳ ଉଦ୍ଦେଶ୍ୟ । ତାକୁ ପୂରଣ ନକରିପାରିଲେ ଆମ ସ୍କୁଲରେ ଯେଉଁ ପୁରୁଣା ପଦ୍ଧତିସବୁ ରହିଆସିଛି ତାହାକୁ ପ୍ରଚଳନ

କରିଚାଲିଥିବା । ଆମେ ନୂଆ କିଛି କରିପାରିବା ନାହିଁ । କିଛି ନୂଆ ନକରିପାରିଲେ ପରିବର୍ତ୍ତନ ଦେଖାଯିବ ନାହିଁ । ତେଣୁକରି ଆମେ ମଧ୍ୟ ଆମ ପାଇଁ କିଛି ପରିବର୍ତ୍ତନ ଆଣିବା ଦରକାର ।

ନବସୃଜନ ଶିକ୍ଷାର ଆୟକାରୀ ପନ୍ଥା କହିଲେ ଯେଉଁ ସଂସ୍ଥାରୁ ଏହି ଟଙ୍କା ଦିଆଯିବ ତାହାର ଉଦ୍ଦେଶ୍ୟ ହେଲା ସେହି ଟଙ୍କାକୁ ନେଇ ତାହାରି ମାଧ୍ୟମରେ ବିଭିନ୍ନ ପ୍ରକାର ଆୟକାରୀ ପନ୍ଥା ଖୋଜି ଟଙ୍କା ଖଟେଇ ସେଥିରୁ ଲାଭ କରିବା । ସେହି ଲାଭାଂଶକୁ ନେଇ ଧୀରେ ଧୀରେ ସ୍କୁଲ ପାଇଁ ଆୟ ବଢ଼ାଇ ଚାଲିବା । ଆମ ଅଞ୍ଚଳରେ ଥିବା ସ୍କୁଲଗୁଡିକ ଯେଉଁଥିପାଇଁ ବନ୍ଦ ହୋଇଯାଉଛି ତାହାକୁ ରୋକିବା । ଲୋକଙ୍କ ପାଖରେ ପଇସା ନଥିବାରୁ ଲଣ୍ଠନ, ଖଡି, ସିଲଟ ଓ ପାଠ୍ୟୋପକରଣ ପିଲାମାନଙ୍କୁ ଯୋଗାଇପାରୁ ନାହାନ୍ତି । ଯାହାଦ୍ୱାରା ସ୍କୁଲଗୁଡିକ କୌଣସି ସଂସ୍ଥା ପଇସା ବନ୍ଦ କରିଦେଲେ ଆଉ ଚାଲୁନାହିଁ । ଏହି ସମସ୍ୟାର ସମାଧାନ ପାଇଁ ନବସୃଜନ ଶିକ୍ଷା ଲୋକମାନଙ୍କ ପାଖରେ ଏକ ବିକଳ୍ପ ହୋଇଛି । ଏହି କାର୍ଯ୍ୟକ୍ରମଟି ଆମ ପାଇଁ ବହୁତ ଭଲ । ଏହାକୁ ସଫଳ କରିବା ପାଇଁ ଆମେମାନେ ଚେଷ୍ଟା କରିବା ଦରକାର । ତାହା ନହୋଇ ପାରିଲେ ଆମ ଗାଁ ଗୁଡିକ ପୂର୍ବରୁ ଯେଭଳି ନିରକ୍ଷର ଓ ଅଶିକ୍ଷିତ ହୋଇ ରହିଥିଲା, ତାହା ହିଁ ରହିଯିବ । ଏଣୁ ଆମେ ସେହି ପଇସାକୁ ଖଟେଇ ତାହାରି ଲାଭରେ ଆମ ସ୍କୁଲକୁ ଚଳାଇବାର ବ୍ୟବସ୍ଥା କରିବା ।

ଆମର ପିଲାମାନଙ୍କ ପାଠ ପଢ଼ା ପ୍ରତି ଯତ୍ନ ନେବା ସଙ୍ଗେ ସଙ୍ଗେ ଗାଁ ଲୋକଙ୍କ ପାଇଁ ମଧ୍ୟ ଅନେକ କିଛି କରିବାର ଅଛି । ପ୍ରଥମେ ଆମ କେନ୍ଦ୍ରଟିକୁ ଭଲରେ ଚଳାଇବା । ତାପରେ ଗାଁର ପାନୀୟ ଜଳ, ଖାଦ୍ୟ ନିରାପତ୍ତା, ରାସ୍ତାଘାଟ, ଗାଁ ପାଣି ଓ ପରିବେଶ କିଭଳି ଭଲରେ ରହିବ ତା' ଉପରେ ଧ୍ୟାନ ଦେବା ଦରକାର । ଏହାଛଡା ଗାଁର ପରିଚାଳନା ପାଇଁ ଥିବା ଗାଁ କମିଟି କିଭଳି କାର୍ଯ୍ୟକ୍ରମ ତୁଲାଉଛି ସେଥିପ୍ରତି ଧ୍ୟାନ ଦେବା ଉଚିତ । ଗାଁ ଶିକ୍ଷାକମିଟି କିଭଳି ସ୍କୁଲ ସହିତ ଜଡିତ ହୋଇ କାମ କରିଚାଲିବ, ସେକଥା ବୁଝିବା ଆମର କର୍ତ୍ତବ୍ୟ । ଏମିତିକି ଛାତ୍ର, ଗୁରୁଭାଇ ଓ ଅଭିଭାବକମାନେ ବସି ଗାଁର ପ୍ରତ୍ୟେକ ବିଷୟରେ ମାସକୁ ଅନ୍ତତଃ ଦୁଇତିନି ଥର ଆଲୋଚନା କରିବା ଦରକାର । ତାହା ନହୋଇପାରିଲେ ଆମେମାନେ ଅନେକ ଅସୁବିଧାରେ ପଡିବା । ଅଭିଭାବକମାନେ ପିଲାମାନଙ୍କୁ ପଠାଇବେ, ଶିକ୍ଷା କମିଟି ସଭ୍ୟ/ସଭ୍ୟାମାନେ ସ୍କୁଲ

ପରିଚାଳନା ଦାୟିତ୍ୱ ନେବା ସଙ୍ଗେ ସଙ୍ଗେ ଆୟକାରୀ କାର୍ଯ୍ୟକ୍ରମକୁ ଆଗକୁ ଆଗେଇନେବେ । ଏହା ହିଁ ସବୁଠାରୁ ବଡକଥା ।

ଆମେ ଜାଣିରଖିବା ଦରକାର ଯେ ଶିକ୍ଷକ ହିସାବରେ ଗାଁର ପ୍ରତ୍ୟେକ ସମସ୍ୟା ପ୍ରତି ଆମେ ଧ୍ୟାନ ଦେବା ଉଚିତ । କାରଣ ପିଲାମାନଙ୍କ କ୍ଷେତ୍ରରେ ଗାଁ ଲୋକମାନେ ଅନେକ ଅବହେଳା କରୁଥିବାର ଆମେ ଜାଣିପାରୁଛନ୍ତି । ତା' ନହୋଇଥିଲେ ପିଲାମାନେ ନିରକ୍ଷର ରହନ୍ତେ ନାହିଁ । ଗାଁର ସାମୂହିକ ସୁରକ୍ଷା ହିଁ ଆମ କାର୍ଯ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ବୋଲି ଭାବିବା ଆବଶ୍ୟକ ।

ଯୁଧିଷ୍ଠୀର ଝୋଡିଆ
ନବସୃଜନ ଶିକ୍ଷାକେନ୍ଦ୍ର, ପରଜାଶିଳା
କାଶୀପୁର, ରାୟଗଡା



# ମୁଁ ଓ ମୋର ଶିକ୍ଷାକେନ୍ଦ୍ର କଥା

ମୁଁ ଶ୍ରୀ ଧନୁର୍ଜୟ ନାଏକ । ମୋର ଘର ହେଉଛି କେନ୍ଦୁମୁଣ୍ଡି । ବର୍ତ୍ତମାନ କଳାହାଣ୍ଡି ଜିଲ୍ଲାର ଅଗ୍ରଗାମୀ ଅଡ୍ରୀ ପ୍ରକଳ୍ପ ଅଧିନରେ ଥିବା କନରପାସ୍ ଗାଁ ନବସୃଜନ ଶିକ୍ଷାକେନ୍ଦ୍ରରେ ଗୁରୁଭାଇ ଭାବେ କାମ କରିଆସୁଛି । ମୁଁ ଏଠାରେ ଗୁରୁଭାଇ ଭାବେ କାର୍ଯ୍ୟ କରିବା ପୂର୍ବରୁ କିପରି ଥିଲି ଓ ବର୍ତ୍ତମାନ କିପରି ମୋତେ ଲାଗୁଛି ସେକଥାକୁ ସମସ୍ତଙ୍କୁ ଜଣାଇବାକୁ ଚାହୁଁଛି । ଭାବୁଛି ଏକଥା ମଧ ମୋ ମନରେ ଯେଭଳି ଭାବେ ଅନେକ କିଛି ପ୍ରଭାବ ପକାଇଛି, ସେଭଳି ମଧ ଆପଣମାନଙ୍କ ଜୀବନରେ ଆସିଥିବ । ଏହି ବିଷୟଟିକୁ ଜଣାଇବା ପାଇଁ ଅନେକ ଦିନ ତଳୁ ଲେଖିବି ବୋଲି ଭାବୁଥିଲେ ମଧ ଏ ପର୍ଯ୍ୟନ୍ତ ଦେଇପାରିନଥିଲି । ବର୍ତ୍ତମାନ ଏହାକୁ ଲେଖୁଛି ।

ମୁଁ ଯୁକ୍ତ ୨ ଫେଲ ହେବା ପରେ ଆଉ ପଢ଼ିଲି ନାହିଁ ଏବଂ ଘରେ ମୋତେ ବାହା କରାଇଦେଲେ । ମୋର ବାହାଘର ହୋଇଗଲା ସତ କିନ୍ତୁ ମୋତେ ଚିନ୍ତା ଛାଡିଲା ନାହିଁ । କାରଣ ଅନେକ ଲୋକ କୁହନ୍ତି ନିଜେ ଘର କରିବା ପାଇଁ ପ୍ରସ୍ତୁତ ନହେବା ଯାଏ ବିବାହ କରିବା ଉଚିତ ନୁହେଁ, କିନ୍ତୁ ଘରର ଚାପକୁ ଆଡେଇ ଦେଇ ନପାରି ବାହା ହେଲି । ଛୋଟ ବେଳୁ ପ୍ରାୟ ବିଲରେ କାମ କରିନାହିଁ । କାହିଁକି କେଜାଣି ବିଲ କାମ ପ୍ରତି ଏବଂ ବିଲର ପରିଶ୍ରମକୁ ଡରୁଥିଲି । ତଥାପି ବେଳେବେଳେ କିଛି କାମ କରିବାକୁ ପଡୁଥାଏ । କିଛି ଦିନ ତଳେ ଆମ ଗାଁକୁ ଅଶୋକ (ପ୍ରକଳ୍ପ ନିର୍ଦ୍ଦେଶକ) ଭାଇ ଆସି ଅଗ୍ରଗାମୀ ତରଫରୁ ସ୍କୁଲ ଖୋଲିବା କଥା କହିଲେ । ମୁଁ ମଧ ପାଠପଢ଼ାଇବା ପାଇଁ ଭାବିଲି ଏବଂ ଅଗ୍ରଗାମୀ ଖୋଲୁଥିବା ସ୍କୁଲରେ ଶିକ୍ଷକ ହେବା ପାଇଁ ଦରଖାସ୍ତ ଦେଲି । ଏହାପରେ ମୋତେ ସାକ୍ଷାତକାର ପାଇଁ ଡାକିଲେ । ଆମ୍ଭେମାନେ ଏକ ପ୍ରକାର ପରୀକ୍ଷା ମଧ ଦେଲୁ । ମୁଁ ସେଥିରୁ ପାସ୍ କରିବା ପରେ ଏହି ଗାଁରେ ଶିକ୍ଷକ ରୂପେ ନିଯୁକ୍ତି ପାଇଲି । ବର୍ତ୍ତମାନ ମୋତେ ବହୁତ ଖୁସୀ ଲାଗୁଛି କାରଣ

ଯାହା ହେଲେବି ମୁଁ କିଛି ରୋଜଗାର କରି ମୋର ବାପା ମା'ଙ୍କୁ ଦେଇପାରୁଛି । ଏହା ବଦଳରେ ଗାଁର ପିଲାମାନଙ୍କୁ ମଧ୍ୟ ଦୁଇ ଅକ୍ଷର ପଢ଼ାଇ ସେମାନଙ୍କୁ ଶିକ୍ଷିତ କରାଇବା ପାଇଁ ଚେଷ୍ଟା କରୁଛି । ବେଳ ଥିଲା ଅନେକ ସମୟରେ ଆମେ ଅନ୍ୟ ପାଖରେ ଦୁଇପଇସା ପାଇଁ ଗୋଡ ଭାଙ୍ଗି ଠିଆ ହେଉଥିଲୁ କିନ୍ତୁ ବର୍ତ୍ତମାନ ଆମେ ଅନ୍ୟମାନଙ୍କୁ ଦରକାର ପଡିଲେ କିଛି ସାହାଯ୍ୟ କରିପାରୁଛୁ । ବେଳେବେଳେ ଭାବେ ମୋର ବାପାମା' ଆମକୁ କେତେ କଷ୍ଟ କରି ଯେତିକି ହେଉ ପାଠପଢ଼ାଇଛନ୍ତି; ଆମେ ସେମାନଙ୍କୁ ତାହାର ପ୍ରତିଦାନ କ'ଣ ଦେଇପାରିବା ? ଯାହା ହେଲେବି ମାସରେ ଯେତିକି ବାପାମା'ଙ୍କୁ ସାହାଯ୍ୟ କରୁଛି ସେଥିପାଇଁ ସେମାନେ ମଧ୍ୟ କିଛି ଖୁସୀ ହେଉଛନ୍ତି । ଅଗ୍ରଗାମୀ ଭାଇଭଉଣୀମାନେ ଆମକୁ ଯେତିକି ମଝିରେ ମଝିରେ ଜଣାଉଛନ୍ତି ସେଥିରୁ ଅନେକ କିଛି ମିଳିପାରୁଛି । ସ୍କୁଲ ଚଳାଇବା ଫଳରେ ଧୀରେ ଧୀରେ କିପରି ନିଜେ ଭଲ ଆଡକୁ ଗତି କରିବି ସେଥିପାଇଁ ଚେଷ୍ଟା କରୁଛି । ଆଗକୁ ଆଗକୁ ଚାଲିବା ପାଇଁ ମୋତେ ଅନେକ ବାଟ ମିଳିଯିବା ଭଳି ଲାଗୁଛି ଏବଂ ମୋର ସାହସ ମଧ୍ୟ ବଢ଼ିବାରେ ଲାଗୁଛି ।

ମୁଁ ଯେଉଁ ଗାଁର ଗୁରୁଭାଇ ଅଛି କହିବାକୁ ଗଲେ ସେହି ଗାଁରେ ସରକାରୀ କିମ୍ବା ବେସରକାରୀ ସୁବିଧା କିଛି ନଥିଲା । ଏମିତିକି ଏପର୍ଯ୍ୟନ୍ତ ଏଠାରେ ନଳକୂଅଟିଏ ମଧ୍ୟ ହୋଇନଥିଲା । ସ୍କୁଲ ଆଉ ଡାକ୍ତରଖାନା କଥା ନକହିବା ଭଲ । ଏଠାରେ ମୋଟ ୨୫ଘର ଆଦିବାସୀ ଅଛନ୍ତି । ସେମାନେ ବର୍ତ୍ତମାନ ମଧ୍ୟ ବାହାରର ବାବୁଙ୍କୁ ଦେଖିଲେ ଡରୁଛନ୍ତି । ପୂର୍ବରୁ ଯେଉଁଭଳି ଭାବେ ବଞ୍ଚିଆସିଛନ୍ତି ସେମାନେ ଏପର୍ଯ୍ୟନ୍ତ ମଧ୍ୟ ସେହିଭଳି ରହୁଛନ୍ତି । ସକାଳ ପାଇଲେ ଡଙ୍ଗରରେ ଆଉ ସେଠାରୁ ଫେରିଲେ କିଛି ଲନ୍ଦାମାରି ଶୋଇପଡନ୍ତି । ତଥାପି କେତେଜଣ ବୟସ୍କ ଲୋକ ନ ଡରିଲେବି କେହି ଜଣେ ବାବୁ ଆସିଲେ ତାଙ୍କୁ ରାଜା ଭଳି ସମ୍ମାନ ଦେଖାଉଛନ୍ତି । କୌଣସି କାମ କରିବାକୁ ପଡିଲେ ସେମାନଙ୍କୁ ଅନେକ ଥର ବୁଝାଇବାକୁ ପଡୁଛି । ଆପଣମାନେ ଆଶ୍ଚର୍ଯ୍ୟ ହେବେ ଯେ ବର୍ତ୍ତମାନ ଯଦି ଆର.ଆଇ. କିମ୍ବା ପୋଲିସ୍ ବାଲା ଆସୁଛନ୍ତି ତେବେ ସେମାନଙ୍କୁ ମଦ ଓ କୁକୁଡା ଦେଉଛନ୍ତି । ଏଥିପାଇଁ ପଇସା ନଥିଲେ ସାହୁକାର ଠାରୁ ଋଣ ଆଣି କିମ୍ବା କୁଲିଭୂତି କରି ଶୁଝୁଛନ୍ତି । ସେମାନେ ଯେତେ ଟଙ୍କା ମାଗିଲେ ମଧ୍ୟ ଏମାନେ ଦେବାକୁ ପଛାଉ ନାହାନ୍ତି । ଏହି ସମସ୍ୟାକୁ ଦୂରେଇବା ପାଇଁ ଚେଷ୍ଟା କଲେ ମଧ୍ୟ ବର୍ତ୍ତମାନ ସୁଦ୍ଧା ଏହା ରହିଛି । ଲୋକମାନଙ୍କୁ ଏକଥା ନକରିବା ପାଇଁ ବାରମ୍ବାର କହୁଛି । ଲୋକମାନେ

କୁଲିଭୂତି କରି ଚଳୁଛନ୍ତି ତଥାପି ସେଥିରୁ ପୋଲିସ୍ ଧମକେଇ ଦେଲେ ଦେଇଦେଉଛନ୍ତି । ଲୋକମାନେ ପାଠପଢ଼ି ନାହାନ୍ତି ବୋଲି ଏଭଳି ହେଉଛି । ଗୋଟିଏ କଥା କହିଲେ ହଠାତ୍ ବୁଝିପାରୁ ନାହାନ୍ତି । ଆମ ସ୍କୁଲ ହେବା ପରେ ଆମେ ପାଠପଢ଼ାଇବା ସଙ୍ଗେ ସଙ୍ଗେ ଗାଁର ଭଲ ମନ୍ଦ କଥା ମଧ୍ୟ ବୁଝୁଛୁ ।

ଗାଁର ପିଲାମାନେ ପାଠପଢ଼ି ଆସୁଛନ୍ତି । ଗାଁର ଲୋକମାନେ ୫୦ ମାଣ ମାଣ୍ଡିଆକୁ ପାଣ୍ଠି ହିସାବରେ ଉଠାଇ ରଖିଛନ୍ତି । ଏହାଛଡା ଗାଁର ମା'ମାନେ ମଧ୍ୟ ଅଲଗା ୮୫ଟଙ୍କା ପାଣ୍ଠି କରିଛନ୍ତି । ଆଗରୁ ଏହା କରାଯାଇଥିଲେ ଗାଁର ଲୋକମାନେ ଅନେକ ଆଗକୁ ଯାଇ ପାରିଥାଆନ୍ତେ । ଆମ ସ୍କୁଲର ପିଲାମାନେ କିଛି ପଇସା ରଖି ପାଣ୍ଠି କରିବେ ବୋଲି ଭାବୁଛନ୍ତି । ପିଲାମାନେ ମାସକୁ ଦୁଇଟଙ୍କା ଲେଖାଏଁ ଚାନ୍ଦା କରି ସେମାନେ ମଧ୍ୟ ପାଣ୍ଠି କରିବା ପାଇଁ ବାହାରିଛନ୍ତି । ତାହାର ଦାୟିତ୍ୱ ଜଣେ ପିଲାଙ୍କୁ ଦିଆଯାଇଛି । ଏମିତି କରି ଗାଁରେ ବିଭିନ୍ନ ପ୍ରକାରର ପାଣ୍ଠି କରୁଛନ୍ତି । ଯେତେବେଳେ କାହାର ଅସୁବିଧା ହେବ ସେତେବେଳେ ସେମାନେ ସେଥିରୁ ଋଣ ଭାବରେ ନେବେ ଏବଂ ପଇସା ହେଲେ ସୁଧ ସହ ଫେରାଇବେ । ପୂର୍ବରୁ ଏଭଳି ବ୍ୟବସ୍ଥା ଥିଲେ ମଧ୍ୟ ଏମାନେ କରୁନଥିଲେ । ବର୍ତ୍ତମାନ ଏକଥା ଜାଣିବା ଦ୍ୱାରା କେତେ ସୁବିଧା ହେବ ସେକଥା ବୁଝିପାରିଛନ୍ତି । ଏହାକୁ କାର୍ଯ୍ୟକାରୀ କରିବା ପରେ ନିଶ୍ଚୟ ଏ ବିଷୟରେ ଜାଣିପାରିବେ ।

କିଛିଦିନ ତଳେ ଗାଁର ଲୋକମାନେ ମିଶି ବି.ଡି.ଓ ପାଖକୁ ଚିଠି ଲେଖି ଜଣାଇବା ପରେ ଗାଁରେ ଗୋଟିଏ କୂଅ ଖୋଳି ସେଥିରେ ପାଇପ ଲଗାଇଛନ୍ତି । ଆମ ଗାଁକୁ ଭଲ ରାସ୍ତା ନଥିବାରୁ ୱାର୍ଡ ମେମ୍ବର ଜରିଆରେ ପଲ୍ଲୀ ସଭାରେ ପକାଇ ଏହି ରାସ୍ତା ପାଇଁ ପାସ୍ କରିଛୁ । ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଚେଷ୍ଟା କରୁଛୁ । ଗାଁକୁ ରାସ୍ତା ଆଉ ପାଣି ପିଇବା ଯୋଗାଇ ଦେବା ପାଇଁ ସରକାର କହିଥିବା ବେଳେ ଆମ୍ଭକୁ ଏହା ଦିଆଯିବା ନିତାନ୍ତ ଜରୁରୀ । ଆମ ସ୍କୁଲକୁ ପିଲାମାନେ ଆସୁଛନ୍ତି । ସ୍କୁଲ କମିଟିର ଲୋକମାନେ ସ୍କୁଲର ଦାୟିତ୍ୱ ନେଉଛନ୍ତି । ଗାଁର ବିଭିନ୍ନ ସମସ୍ୟା ଉପରେ ମାସକରେ ଥରେ ଆଲୋଚନା ହେଉଛି । ଗାଁର ପିଲାମାନେ ପାଠପଢ଼ିବା କେତେ ଦରକାର ସେ ବିଷୟରେ ଲୋକମାନେ ଧୀରେ ଧୀରେ ଜାଣିବାକୁ ବାହାରିଲେଣି । ଲୋକମାନେ କେଉଁ ଯୁଗ ଯୁଗରୁ ଠକେଇ ଶୋଷଣରେ ପଡି ଘାଣ୍ଟି ହୋଇ ଆସୁଛନ୍ତି । ବର୍ତ୍ତମାନ ମଧ୍ୟ ସବୁ କ୍ଷେତ୍ରରେ ଏହା ହେଉଛି । ଏ କଥାକୁ

ଆଖିରେ ରଖି ସମସ୍ତଙ୍କୁ ପାଠପଢ଼ାଇବା ଦରକାର ବୋଲି ଆମେ ଜଣାଉଛୁ । ଏଥିରେ ଅଗ୍ରଗାମୀର ଭାଇମାନେ ମଧ୍ୟ ସହଯୋଗ କରୁଛନ୍ତି ।

ଗୁରୁଭାଇ ହିସାବରେ ଆମେ ଖାଲି ସ୍କୁଲ କରିଦେଲେ କିମ୍ବା ପିଲାମାନଙ୍କୁ ପାଠପଢ଼ାଇ ଦେଲେ ସବୁ କିଛି ସମାଧାନ ହୋଇଯିବ ନାହିଁ । ଲୋକମାନେ ଭଲରେ ଖାଇବାକୁ ପାଇଯିବେ ନାହିଁ । ଏହାକୁ ଆଖିରେ ରଖି ଆମେ ଗାଁର ଅନ୍ୟାନ୍ୟ ବିଷୟରେ ମଧ୍ୟ ଧ୍ୟାନ ଦେବା ଦରକାର । ଲୋକମାନେ ଯେତେ ପରିଶ୍ରମ କଲେ ମଧ୍ୟ ଯଦି ଏହିଭଳି ସାହୁକାର ପାଖରେ ଗୋତି ରହିବେ ତେବେ ସେମାନେ ସେମାନଙ୍କ ପିଲାମାନଙ୍କୁ ପାଠପଢ଼ାଇବେ କିପରି ? ଭବିଷ୍ୟତରେ ପିଲାମାନେ ସେଭଳି ଗୋତି ହୋଇଯିବେ । ଏକଥାକୁ ମଧ୍ୟ ଆମକୁ ବୁଝିବାକୁ ପଡିବ । ଗାଁରେ ପାଣ୍ଠି, ସ୍କୁଲ, ପିଇବା ପାଣି, ଠକେଇ ଓ ଶୋଷଣରୁ ରକ୍ଷା, ସ୍ୱାସ୍ଥ୍ୟ ତଥା ସରକାରୀ ତଥା ବେସରକାରୀ ଯୋଜନା ଗୁଡିକ ବିଷୟରେ ଲୋକମାନେ ଜାଣିବା ସଙ୍ଗେ ସଙ୍ଗେ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ନିଜେ ଚେଷ୍ଟା କରିବେ ସେକଥା ପ୍ରତି ଆମକୁ ନଜର ଦେବାକୁ ପଡିବ । ବିଶେଷକରି ଲୋକମାନେ ସେମାନଙ୍କର ଅଧିକାର ପ୍ରତି ସଚେତନ ହେବା ଦରକାର । ଆମ ପାଇଁ ଅନେକ ଯୋଜନା ଆସୁଥିବାବେଳେ ଆମେ କିଛି ଜାଣିପାରୁ ନାହିଁ । ଏ ବିଷୟରେ ଆମକୁ କେହି ଜଣାଉନାହାଁନ୍ତି । ସବୁ କଥାକୁ ବିଚାରକୁ ନେଇ ଲୋକମାନଙ୍କ ସାଙ୍ଗରେ କାମ କରିବୁ ବୋଲି ଆମକୁ ଗୁରୁଭାଇ ଭାବରେ ରଖାଯାଇଛି ।

ଆମ ସ୍କୁଲଟି ହେଉଛି ନବସୃଜନ ଶିକ୍ଷାକେନ୍ଦ୍ର । ଆମେ ଜାଣିଛୁ ଯେ ଆମକୁ ତିରିଶ ହଜାର ଟଙ୍କା ଦିଆଯିବ । ଏହାକୁ ଛାଡି ଆମକୁ ଦରମା ଏବଂ ପିଲାମାନଙ୍କୁ ପାଠ୍ୟୋପକରଣ ଯୋଗଇ ଦିଆଯିବ । ତିନି ବର୍ଷ ପରେ ଏସବୁ ବନ୍ଦ ହୋଇଯିବ । ଆମକୁ ଦିଆଯାଇଥିବା ଟଙ୍କାକୁ ଖଟେଇ ସେଥିରୁ ଯେଉଁ ଲାଭ ପାଇବୁ ସେଥିରେ ସ୍କୁଲର ପାଠପଢ଼ା ଖର୍ଚ୍ଚ ଓ ଶିକ୍ଷକର ଦରମା ଦିଆଯିବ । ଏହାକୁ ଆଗରେ ରଖି ଆମକୁ ଆଜି ଠାରୁ କାମ କରିବାକୁ ପଡିବ । ମାସିକ୍ ବୈଠକରେ ମଧ୍ୟ ଏ ବିଷୟରେ ଆଲୋଚନା ହେଉଛି ।

ଏହି ଗୋଟିଏ ବର୍ଷ ଭିତରେ ଗାଁରେ ପିଲାମାନେ ପାଠପଢ଼ିବାକୁ ଆରମ୍ଭ କରିଛନ୍ତି । ଲୋକମାନେ ସ୍କୁଲକୁ ଆସୁଛନ୍ତି । ନିଜେ କିପରି ପାଠପଢ଼ିବେ ସେ ବିଷୟରେ ଆଗ୍ରହର ସହିତ ପଚାରୁଛନ୍ତି । ଗାଁରେ ୫ବର୍ଷରୁ ୨୫ବର୍ଷର ପର୍ଯ୍ୟନ୍ତ ଲୋକମାନେ ପଢିବାକୁ ଆସୁଛନ୍ତି । ବଡ ବଡ ଲୋକମାନେ ସ୍କୁଲରେ ପଢ଼ିବାକୁ ଆସିବା ଫଳରେ

ପିଲାମାନେ ଆହୁରି ଅଧିକ ଖୁସୀ ହେଉଛନ୍ତି । ଏହିପରି ଭାବେ ପାଠପଢ଼ା ହେଲେ ଗାଁର ଲୋକମାନେ ନିଶ୍ଚୟ ଧୀରେ ଧୀରେ ଅଧିକରୁ ଅଧିକ ଶିଖିପାରିବେ । ଏହାଛଡା ବୟସ୍କ ଲୋକମାନେ ସନ୍ତକ କରିପାରିବା ପାଇଁ ଆଲୋଚନା କରୁଛୁ । କେତେଜଣ ଲୋକ ରାତିରେ ଆସି ସନ୍ତକ ଶିଖିଲେଣି । ଏଠାରୁ ମୋର ଘର ଦୂର ହେଲେ ବି ମୁଁ ନିତି ଘରୁ ଯିବା ଆସିବା କରି ପିଲାମାନଙ୍କୁ ପଢ଼ାଉଛି । ଗାଁର ଲୋକମାନଙ୍କୁ ମୋତେ ରହିବା ପାଇଁ ଘରଟିଏ କରିଦେବା ପାଇଁ ଅନେକ ଥର କହିଲିଣି କିନ୍ତୁ ଏ ପର୍ଯ୍ୟନ୍ତ କରିନଥିବାରୁ ମୋତେ ଦୁଃଖ ଲାଗୁଛି । ଲୋକମାନେ ହଠାତ୍ କିଛି କରିବା ପାଇଁ ବାହାରୁ ନାହାନ୍ତି । ଅନେକ ବୁଝାଇବାକୁ ପଡୁଛି । ସେଥିପାଇଁ ମଧ୍ୟ ଅନେକ ସମୟରେ ଖରାପ ଲାଗୁଛି । ଯାହା ହେଲେବି ଆମକୁ ଗାଁ ତଥା ଏ ଅଞ୍ଚଳର ଉନ୍ନତି ପାଇଁ କାମ କରିବାକୁ ପଡିବ । ମୋର ଆଶା ଅଛି ଯେ ଲୋକମାନେ ବର୍ତ୍ତମାନ ନହେଲେବି ଦିନେ ନାଦିନେ ନିଶ୍ଚୟ ଆଗକୁ ବାହାରିବେ ଏବଂ ଗାଁର ସବୁ କାମ କରିବା ପାଇଁ ଆଗ୍ରହ ପ୍ରକାଶ କରିବେ । ଗୁରୁଭାଇ ହିସାବରେ ସେପର୍ଯ୍ୟନ୍ତ ଆମକୁ ଅପେକ୍ଷା କରିବାକୁ ପଡିବ ।

ଧନୁର୍ଜ୍ଜୟ ନାଏକ
ନବସୃଜନ ଶିକ୍ଷାକେନ୍ଦ୍ର,
କନରପାସ ଅଡ୍ରି, କଳାହାଣ୍ଡି

□□□

# ଛୋଟ ଛୋଟ ଆଦିବାସୀ ପୁଅ ଝିଅମାନଙ୍କ ପାଇଁ ଶିକ୍ଷା

ଶିକ୍ଷା କହିଲେ ସିଲଟ ବା ପଟାଖଡି ବୋଲି ଭାବିବା କିମ୍ବା କହିବା ଉଚିତ ନୁହେଁ । ଶିକ୍ଷା ଅନେକ ପ୍ରକାରର ରହିଛି ଏବଂ ଅନେକ ଜିନିଷକୁ ଆମେ ଶିକ୍ଷା ବୋଲି କହିପାରିବା । ଯେମିତିକି ଗୀତ ଗାଇବା, ନାଚ କରିବା ଓ ଚାଷ କରିବା ପ୍ରଭୃତି ହେଉଛି ଶିକ୍ଷାର ଗୋଟିଏ ଗୋଟିଏ ଅଙ୍ଗ । ତେବେ ଆମେ ପିଲାମାନଙ୍କୁ କିଭଳି ଭାବରେ ଶିକ୍ଷା ଦେବା ଉଚିତ ସେ ବିଷୟରେ ଆମକୁ ଆଲୋଚନା କରିବାକୁ ପଡିବ । ଏ କଥାଟି ମୋ ନିଜ ଅଭିଜ୍ଞତାରୁ କହୁଛି, ଆପଣମାନେ ମୋତେ ଖରାପ ଭାବିବେ ନାହିଁ ।

ମୁଁ ଅନେକ ସ୍କୁଲ ଦେଖିଛି ଅନୁଭବ କରିଛି । ନିଜେ ମଧ୍ୟ ସ୍କୁଲରେ ପାଠପଢ଼ାଇ ଆସୁଛି । ଅନେକ ସ୍କୁଲରେ ପିଲାମାନେ ଆସିଲେ ମାତ୍ରେ ପିଲାମାନଙ୍କୁ ସିଲଟପଟା ଧରାଇ ଦିଆଯାଉଛି ଏବଂ କଳାପଟା ଉପରେ ଅ,ଆ,ଇ,ଈ... ଇତ୍ୟାଦି ଲେଖି ଦିଆଯାଉଛି । ପିଲା ସେହି ଅକ୍ଷର ଉପରେ ଗାର ବୁଲାଇ ବୁଲାଇ ଲେଖିବାକୁ ଚେଷ୍ଟା କରୁଛି । ତାହାଦ୍ୱାରା ପିଲା ନିଜେ ଲେଖିପାରୁ ନାହିଁକି ପଢିପାରୁ ନାହିଁ । କିନ୍ତୁ ଆମ୍ଭେମାନେ ତାହାକୁ ପିଲାଟି ଲେଖୁ ବୋଲି ଭାବୁଛନ୍ତି ଓ ନଲେଖିପାରିଲେ ଆମକୁ ଭଲ ଲାଗୁନାହିଁ । ଏହାଦ୍ୱାରା ପିଲାଟିର ଆଗ୍ରହ କମି କମି ଯାଉଛି । ଯାହା ଜଣାପଡୁଛି ପିଲାମାନଙ୍କର ଏଭଳି ପାଠପଢ଼ାକୁ ପସନ୍ଦ ଲାଗୁନାହିଁ ତେଣୁ ପିଲାମାନେ ସ୍କୁଲକୁ ଆସୁନାହାଁନ୍ତି । ଏଣୁ ମୋ ଦୃଷ୍ଟିରେ ପିଲାମାନଙ୍କୁ ପଟାଖଡିରେ ଲେଖିବାକୁ ନଦେଇ କଥାବାର୍ତ୍ତା ମାଧ୍ୟମରେ ପ୍ରଥମେ ପିଲାମାନଙ୍କର କହିବା ଶକ୍ତିକୁ ବଢ଼ାଇବା ପାଇଁ ଚେଷ୍ଟା କରିବା ଦରକାର । ଆଜିକାଲି ଦେଖାଯାଉଛି ଯେଉଁମାନେ କିଛି କଥା କହିପାରୁ ନାହାନ୍ତି ସେମାନଙ୍କର କୌଣସି ମତେ ଉନ୍ନତି ହୋଇପାରୁ ନାହିଁ । ଜଣେ କଥା କହିଲେ କିଛି ପ୍ରଶ୍ନ ପଚାରିପାରିବ ଏବଂ ଅଧିକ ଜାଣିବା ପାଇଁ ଚାହିଁବ ।

ପିଲାମାନଙ୍କ ସଙ୍ଗରେ ମିଶିବା, ଗୀତ ଗାଇବା, ଖେଳିବା ଓ ନାଚିବାକୁ ଛାଡ଼ି ବିଭିନ୍ନ ଜିନିଷ ଦେଖାଇ ସେମାନଙ୍କ ସହିତ ଆଲୋଚନା କରିବା । ନଦୀ, ଝରଣା, ପାହାଡ ବୁଲିବା ଯେଉଁଠି ଯାହା ଦେଖିବା ସେଠାରେ ସେ ବିଷୟରେ ଆଲୋଚନା କରିବା । ଏହିପରି କରିବାର କାରଣ ହେଲା ପିଲାମାନଙ୍କର ମନ ମୁକ୍ତ ହେବ । ସେମାନଙ୍କର ଭାବନା ଶକ୍ତି ବଢିବ । କଥା କହିବା ପାଇଁ ସାହସ ବଢ଼ିବ । ତେବେ ବାହାରରୁ ଲୋକ ଆସିଲେ ସେ ଆଗ୍ରହରେ ଓ ନିର୍ଭୟରେ କଥାବାର୍ତ୍ତା କରିପାରିବ । ଏସବୁ କୌଶଳ କେବଳ ଶିକ୍ଷକମାନେ ହିଁ ବାହାର କରିପାରିବେ ଏବଂ ପିଲାମାନଙ୍କ ପାଖରେ ପ୍ରୟୋଗ କରିପାରିବେ । ଆପଣମାନେ ଜାଣନ୍ତି ଗାଡି ଡ୍ରାଇଭର ଯେଉଁଆଡେ ଗାଡିନେଲେ ଗାଡି ସେହିଆଡେ ଗତିକରେ । ସେହିପରି ଗୁରୁଭାଇ ପିଲାମାନଙ୍କୁ ଯେଉଁ ଉପାୟରେ ଶିକ୍ଷାଦେବ ପିଲାମାନେ ସେହି ଦିଗରେ ଯିବେ । ଆପଣମାନେ ଭାବୁଛନ୍ତି ଶବ୍ଦ ଶିକ୍ଷା ଦେଲାବେଳେ ପିଲାମାନଙ୍କୁ କଷ୍ଟ ହେଉଛି । କିନ୍ତୁ ଗମ୍ଭୀର ଭାବରେ ଆଲୋଚନା କଲେ ଆମେ ଏହାର ଠିକ୍ ବିପରୀତ କଥାହିଁ ଦେଖିପାରିବା । ଶବ୍ଦ ସହିତ ଯେତେବେଳେ ଅକ୍ଷର ଶିକ୍ଷା ଦିଆଯାଉଛି ସେତେବେଳେ ଗୁରୁଭାଇ ଭଉଣୀମାନଙ୍କୁ କଠିନ ଲାଗୁଛି । ଏହାର କାରଣ ହେଲା ପିଲାମାନଙ୍କ ସହିତ ଯେକୌଣସି ସମୟରେ ଆମ୍ଭକୁ ମିଶିକରି ରହିବାକୁ ପଡିବ । ଧାଡି ମାଧ୍ୟମରେ ଶିକ୍ଷା ଦିଆଗଲେ ପ୍ରଥମେ ପିଲାମାନଙ୍କୁ ଲେଖିଦିଆଯିବ ଏବଂ ସେମାନେ ନିଜକୁ ନିଜେ ଲେଖିବେ । ଏଥିରେ ଗୁରୁଭାଇମାନଙ୍କୁ କିଛି କଷ୍ଟ କରିବାକୁ ପଡିବ ନାହିଁ ଏଣୁ ଏହାକୁ ଏକ ସହଜ ଉପାୟ ଭାବେ ଧରି ପିଲାମାନଙ୍କୁ ପଢ଼ାଯାଉଛି । ଏହିଭଳି ନୂତନ ପଦ୍ଧତିରେ ପଢ଼ାଗଲେ ସବୁବେଳେ ପିଲାମାନଙ୍କ ପାଖେ ପାଖେ ଆମକୁ ରହି ବୁଝାଇବାକୁ ହେବ । ସେହି କଷ୍ଟ ଆମେ ନିଜେ ସହିନପାରି ପିଲାମାନଙ୍କ ଉପରେ ଲଦି ଦେଉଛୁ । ଏହି ପ୍ରଣାଳିଟି ମୋ ମତରେ ଭୁଲ । ଆପଣମାନେ ଜାଣନ୍ତି ଯେ ଘରର ନିଅଁ ପକାଇବା ବହୁତ କଷ୍ଟକର କଥା । ଏହା ତୁଳନାରେ ଇଟା ଜୋଡେଇ ବା କାନ୍ଥ ଉଠାଇବା ସେତେ କଷ୍ଟ ନୁହେଁ । ଏହି ଉଦାହରଣକୁ ନେଇ ବିଚାର କଲେ ଜାଣିପାରିବା ଯେ ପ୍ରଥମ ଶ୍ରେଣୀ ପିଲାମାନଙ୍କୁ ପଢ଼ାଇବା ଯେତିକି କଷ୍ଟ ତାହା ତୁଳନାରେ ଦ୍ୱିତୀୟ କିମ୍ବା ତୃତୀୟ ଶ୍ରେଣୀ ପିଲାମାନଙ୍କୁ ପଢ଼ାଇବା ତା'ଠାରୁ କମ୍ କଷ୍ଟକର । ବଡ ବଡ ପିଲାମାନେ କଥା ବୁଝିପାରିବେ ଏବଂ କିଛି କହିପାରିବେ କିନ୍ତୁ ଆଦିବାସୀ ପିଲାମାନେ କଥା କହିବାକୁ ଡରନ୍ତି । ସେମାନଙ୍କୁ ଏଭଳି କିଛି ଜିନିଷ ଦେଖାଇ ଏବଂ କଥାବର୍ତ୍ତା ମାଧ୍ୟମରେ ପ୍ରଥମେ ଶିଖାଇବା ପରେ ସେମାନଙ୍କ ଆଗ୍ରହକୁ ଦେଖି ସିଲଟ ଖଡି ଧରାଇ ପାଠ ପଢ଼ାଇବା ।



# ଆମ ପିଲାଙ୍କୁ ଆଗେଇନେବା

ମୋ ଜୀବନ ଗୋଟିଏ ଚଳନ୍ତା ନଦୀପରି ବହିଚାଲିଛି । ଏହା ଭିତରେ ଅନେକ ରାସ୍ତା ଦେଇ ଆସିଛି । ଯାହାକୁକି ଆପଣମାନେ ଶୁଣିଲେ ନିଶ୍ଚୟ ଆଶ୍ଚର୍ଯ୍ୟ ହେବେ । ନିଜ କଥା କହିବା ବେଳେ ମୋତେ ଅନେକ ସମୟରେ ଖରାପ ଲାଗେ । ଆଦିବାସୀ ପରିବାର ନହୋଇ ଏହିଭଳି କମ୍ ଲୋକ ଜୀବନ ଯାପନ କରୁଥିବେ । ମଣିଷ କେମିତି ବଞ୍ଚିବ ସେକଥା ନିଜ ଉପରେ ନିର୍ଭର କରେ ବୋଲି ମୁଁ ଅନୁଭବ କରିପାରୁନଥିଲି । ବର୍ତ୍ତମାନ ଆମ ଘରେ ଅଲଗା ପ୍ରକାରର ଚଳୁଛୁ । ବେଳେବେଳେ ଏକଥା ମନେ ପକାଇଲେ ମୋତେ ବହୁତ ଦୁଃଖ ଲାଗେ । ତଥାପି ଆଗକୁ ଆମେ ହିଁ କିଛି ନୂଆ ଭଳି ଚଳିବୁ ବୋଲି ମୋର ଆଶା ।

ବର୍ତ୍ତମାନ ଆମ ଘରର ପରିସ୍ଥିତି ଏହିପରି । ମୋ ବାବା ବର୍ତ୍ତମାନ ବଡଭାଇର ଗାଈ ଚରାଉଛନ୍ତି । ମୋ ମା' ଗତବର୍ଷ ଏପ୍ରିଲ ମାସରେ ଦେହତ୍ୟାଗ କଲେ । ଆମର ଜମିବାଡି କିଛି ନାହିଁ । ବିଶେଷ କରି ଆମେ ଅନ୍ୟ ଜଣଙ୍କର ଭାଗଚାଷ କରି ଓ ପୋଡୁଚାଷ କରି ଚଳୁଛୁ । ମୋ ମା' ଯେତେବେଳ ଥିଲା ସେତେବେଳେ ମୋତେ ଗାଁ ସ୍କୁଲରେ ପଢ଼ିବା ପାଇଁ ପଠାଉଥିଲା । ସେ ମୋଟେ ପାଠପଢ଼ିନଥିଲେ ବି ଗାଁର ପିଲାମାନେ ସ୍କୁଲକୁ ଗଲାବେଳେ ତାଙ୍କ ସଙ୍ଗରେ ସ୍କୁଲକୁ ମୋତେ ପଠାଏ । ଆମ ଗାଁରେ ପ୍ରାଇମେରୀ ସ୍କୁଲ ପର୍ଯ୍ୟନ୍ତ ପାଠପଢ଼ିବାରେ ସୁଯୋଗ ପାଇଲି । ସେହି ପ୍ରାଇମେରୀ ବିଦ୍ୟାଳୟରେ ଦୁଇ ଜଣ ଶିକ୍ଷକ ମୋତେ ପଢ଼ାଉଥିଲେ । ସେମାନଙ୍କ ମଧ୍ୟରୁ ଜଣେ ହେଲେ କଟକିଆ ଶିକ୍ଷକ ଶ୍ରୀ ଅନାମ ଚରଣ ସେଠୀ ଓ ଅନ୍ୟଜଣେ ହେଲେ କୋରାପୁଟର ଶିକ୍ଷୟିତ୍ରୀ ଶ୍ରୀମତୀ ସୁଲୋଚନା ରାଜୁ । ମୁଁ ପାଠ ନପଢ଼ିବା ପୂର୍ବରୁ ସେଠୀ ଆଜ୍ଞାକୁ ବେଶୀ ଭୟ କରେ । ଦିନେ ଭୟରେ ସ୍କୁଲକୁ ଯାଇନଥାଏ; ଆମ ଗାଁର ବଡ ପିଲାମାନେ ଆମକୁ ବିଦ୍ୟାଳୟକୁ ଧରି ନେଲେ । ମୋତେ ନେଲେ ସିନା କିନ୍ତୁ ବିଦ୍ୟାଳୟରେ

ପଢ଼ିବା ପାଇଁ ମୋର ମୋଟେ ଇଛା ନଥିଲା । କିନ୍ତୁ ଆଜ୍ଞାଙ୍କ ଭୟରେ ସେଦିନ ସ୍କୁଲରେ ଯେମିତି ସେମିତି ହେଉ ରହିଥିଲି । ସେଦିନ ସ୍କୁଲରେ ରହିଲି ସତ କିନ୍ତୁ ତା ପରଦିନ ଆଉ ସ୍କୁଲକୁ ଗଲି ନାହିଁ । ଘରେ ଥିଲେ କିଏ ଦେଖିବେ ବୋଲି ଗୋଟିଏ ଆମ୍ବ ତୋଟାରେ ଯାଇ ଲୁଚିଲି । ସେଠାରେ ମୋର ଦୁଇ ଜଣ ସାଙ୍ଗ ଥିଲେ । ସ୍କୁଲ ପିଲାମାନେ ଧରିବା ପାଇଁ ଖୋଜିଲେ, ତା'ପରେ ସେମାନଙ୍କୁ ଆମେ ଦୂରରୁ ଦେଖି ଜଙ୍ଗଲ ଭିତରକୁ ପଳାଇଗଲୁ । ଆମ ପଛେ ପଛେ ପିଲାମାନେ ଆସି ୩ଜଣଙ୍କୁ ଧରିକରି ଆଜ୍ଞାଙ୍କ ପାଖକୁ ନେଲେ । ସେ ଯେମିତି ଆମକୁ ଦେଖିଛନ୍ତି ପ୍ରଥମେ କିଛି କଥାବାର୍ତ୍ତା ନକରି ଆମକୁ ବହୁତ ବାଡେଇଲେ । ତା'ପରେ ସାନ୍ତ୍ୱନା ଦେଇ ବିଦ୍ୟାଳୟକୁ ସବୁଦିନ ଆସିଲେ ଆମ ଭଳି ପାଠ ପଢ଼ି ଚାକିରି କରିବ, ଏମିତି କେତେ ଭଲ କଥା କହିଲେ । ସେହିଦିନଠାରୁ ବିଦ୍ୟାଳୟକୁ ଯିବା ପାଇଁ ମନ ଲାଗିଲା । ମୋ ମା'ବାପା ଅଶିକ୍ଷିତ । କିନ୍ତୁ ଅଶିକ୍ଷିତ ହେଲେ ମଧ୍ୟ ମା' କୁହନ୍ତି ଯେ, ତୁ ସ୍କୁଲକୁ ସବୁଦିନ ଯା । ପାଠ ପଢ଼ିଲେ ଭବିଷ୍ୟତରେ ଚାକିରି କରିବୁ ବୋଲି କହନ୍ତି । ଘରର ଆର୍ଥିକ ଅସୁବିଧା ହେତୁ ମଧ୍ୟ ଗାଁରେ ୫ମ ପାସ୍ କରି ହାଇସ୍କୁଲରେ ଷଷ୍ଠ ଶ୍ରେଣୀରେ ଭର୍ତ୍ତି ହେଲି । ମୁଁ ଗଲି ସିନା ବହୁତ ଅଡୁଆ ଲାଗୁଥିଲା । ଗାଁର କେହି ସାଙ୍ଗ ପିଲା ସେଠାରେ ନଥିଲେ ସେଥିପାଇଁ ବହୁତ ଅଡୁଆ ଲାଗୁଥିଲା । ଗାଁରେ କେହି ସାଙ୍ଗ ପିଲା ନଥିଲେ ସେଥିପାଇଁ ମାସକୁ ସ୍କୁଲରେ ୧୦-୧୫ଦିନ ରହୁଥିଲି କି ନାହିଁ । ବଡ କଷ୍ଟରେ ଘରକୁ ସ୍କୁଲକୁ ହୋଇ ଦଶହରା ଛୁଟି ପର୍ଯ୍ୟନ୍ତ ଥିଲି । ଯେତେବେଳେ ଦଶହରା ଛୁଟିରେ ଘରକୁ ଆସିଲି, ମୋତେ ସାପ ମାରି ଦେଲା । ଆଉ ସ୍କୁଲକୁ ଯାଇପାରିଲି ନାହିଁ । ତା'ଆର ବର୍ଷ ବଦଳକରି ଡୁମା ନିମ୍ନସେବା ଶ୍ରମ ବିଦ୍ୟାଳୟରେ ପଢ଼ିଲି । ସେଠାରୁ ମାଛପୁଟି ଏଚ.ଟି.ଡବ୍ଲ୍ୟୁ ହାଇସ୍କୁଲରେ ମାଟ୍ରିକ ପାସ୍ କଲା ପର୍ଯ୍ୟନ୍ତ ପଢିଲି ।

ଘରର ଅସୁବିଧା ହେତୁ ଆଉ ଅଧିକ ପାଠ ପଢ଼ିପାରିଲି ନାହିଁ । ମୋର ଅଧିକ ପଢିବା ପାଇଁ ପ୍ରବଳ ଇଛାଥିଲା । କିନ୍ତୁ ବର୍ତ୍ତମାନ କଲେଜରେ ପଢ଼ିବାକୁ ହେଲେ ପ୍ରବେଶ କରିବା ପାଇଁ ଯେତିକି ପଇସା ଦରକାର ତାହା ହେଉଛି ଆମ ଘରର ଗୋଟିଏ ବର୍ଷର ଖାଦ୍ୟ ସଙ୍ଗେ ସମାନ । ଏମିତିତ ମାସରେ କିଛିଦିନ ଆମକୁ ଉପାସ ରହିବାକୁ ହେଉଛି ତେଣୁ କଲେଜରେ ପାଠପଢ଼ି ଘରର ଲୋକଙ୍କୁ ଆଉ ଅଧିକ ଉପାସ ରଖିବାକୁ ଇଛାକଲି ନାହିଁ । ପାଠପଢ଼ା ଛାଡି ଘରେ ଚାଷବାସ କଲି ।

ବର୍ଷେ ହେବ ଅଗ୍ରଗାମୀ କରିଥିବା ନବସୃଜନ ଶିକ୍ଷାକେନ୍ଦ୍ରରେ ଗୁରୁଭାଇ ଭାବେ କାମ କରୁଛି । ସତରେ କହିବାକୁ ଗଲେ ମୁଁ ଯେମିତି ପାଠପଢ଼ିପାରିଲି ନାହିଁ ମୋ ଭଳି ଅନେକ ଆଦିବାସୀ ପିଲା ପାଠପଢିପାରୁ ନାହାନ୍ତି । ତେଣୁ ଆମେ ଯେଉଁମାନେ ସ୍କୁଲରେ ଶିକ୍ଷକ ହୋଇଛୁ ଯଦି ଗାଁର ପିଲାମାନଙ୍କୁ ପାଠପଢ଼ାଇବାକୁ ନାହିଁ ତେବେ ସେମାନେ ମଧ୍ୟ ଆମଭଳି ପଢ଼ିପାରିବେ ନାହିଁ । ଆମେ ଖାଦ୍ୟ ଅଭାବରୁ ପଢ଼ିପାରିଲୁ ନାହିଁ । କିନ୍ତୁ ବର୍ତ୍ତମାନ ଅଗ୍ରଗାମୀ ଗାଁରେ ପାଣି ଦେଇଛି ଏବଂ ଅନେକ ଗାଁକୁ ଏ ବିଷୟରେ ମଧ୍ୟ ଶିଖାଇଛି । ଆମେ ଯଦି ପାଣିକୁ ଠିକ୍‌ଭାବେ ରଖିବା ତେବେ ଆମର ଅଧିକ ପାଣି ହେବ ଆମେ ଅସୁବିଧା ସମୟରେ ସେଥିରୁ ଖାଇଲେ ଆଉ ଓପାସ ରହିବା ନାହିଁ । ତେବେ ଯାଇ ପାଠପଢ଼ି ପାରିବା । ଏହାକୁ ଲକ୍ଷ୍ୟକରି ଲୋକମାନଙ୍କୁ ଏ ବିଷୟରେ ବୁଝାଇଛି । ମୁଁ ନିଜେ ପାଠପଢ଼ିବା ବେଳେ ଅନେକ ହଇରାଣରେ ପଡ଼ିଛି । ବର୍ତ୍ତମାନ ଅନ୍ୟମାନେ କିପରି ଭଲରେ ପଢ଼ିବେ ସେଥିପ୍ରତି ସରକାରୀ ଏବଂ ବେସରକାରୀ ସଂସ୍ଥାମାନେ ଧ୍ୟାନ ଦେବା ସଙ୍ଗେ ସେଙ୍ଗ ଆମ ଭଳି ଶିକ୍ଷକମାନେ ମଧ୍ୟ ପିଲାମାନଙ୍କୁ ଭଲ ଭାବରେ ପଢ଼ାଇବା ପାଇଁ ଯତ୍ନବାନ ହେବା ଦରକାର ।

ଅଭିମନ୍ୟୁ ମଣ୍ଡୁଲି

ଚୌଡ଼ରାମକି ନବସୃଜନ ଶିକ୍ଷାକେନ୍ଦ୍ର



# ଅପାଠୁଆ ହେଲେ ଏମିତି ଦଶା

କାଶୀପୁରରୁ ମାଣ୍ଡିବିଶି ରାସ୍ତା ଦେଇ ଧୋବାସିଲ ଆଡକୁ ଆସିବା ବାଟରେ ମୁଖ୍ୟ ରାସ୍ତାରୁ ଭିତରକୁ ଗୋଟିଏ ବଡ ଘାଟି ଡେଇଁ ଆସିବା ପରେ ପୁସ୍‌ଘାଟି ପଡେ । ଏହି ଗାଁର ଲୋକମାନେ ସାଧାରଣତଃ ପାଖ ଜଙ୍ଗଲ ଓ ଡଙ୍ଗରରୁ ମିଳୁଥିବା କିଛି ମାଣ୍ଡିଆ ଖାଇ ଜୀବନ ବିତାନ୍ତି । ଏମିତି କି ଖୁସିରେ ବି କୌଣସି ସରକାରୀ ଲୋକ ଏ ଗାଁକୁ ଆସନ୍ତି ନାହିଁ । ପୂର୍ବରୁ ଯେଉଁମାନେ ଗାଁକୁ ଆସୁଥିଲେ ସେମାନେ ଲୋକମାନଙ୍କୁ ଧମକାଇ କୁକୁଡା ଓ ମଦ ଖାଇବାକୁ ହିଁ ଆସୁଥିଲେ । ଗାଁର ଅଧିକ ଲୋକ ହେଉଛନ୍ତି ଆଦିବାସୀ ସଂପ୍ରଦାୟର । ପାଖରେ ସରକାରୀ ସ୍କୁଲ ନାହିଁ । ଦୂରରେ ଥିବାରୁ ପିଲାମାନେ ମୋଟେ ପାଠ ପଢ଼ିବାକୁ ଯାଆନ୍ତି ନାହିଁ । ଗାଁରେ ପାଠୁଆପିଲା ବହୁତ କମ୍ ଅଛନ୍ତି । ଯେଉଁମାନେ ଅଛନ୍ତି ସେମାନେ ବହିପଢ଼ି ପାରନ୍ତି ନାହିଁ । ତେଣୁକରି ସେମାନେ ଅନେକ ସମୟରେ ବିଭିନ୍ନ ଠକାମୀରେ ପଡନ୍ତି । ପାଠ ନପଢ଼ିବାରୁ ଲୋକାମାନେ କିପରି ହଇରାଣ ହେଉଛନ୍ତି ତାହାର ଅନେକ ପ୍ରକାରର ଉଦାହରଣ ରହିଛି । କିନ୍ତୁ କିଛିଦିନ ତଳେ ଏହି ଗାଁରେ ଗୋଟିଏ ଘଟଣା ଘଟିଗଲା, ତାହା ସମସ୍ତଙ୍କୁ ଜଣାଇବାକୁ ଚାହୁଁଛି ।

ଏହି ଗାଁରେ ମୁଁ ୧ବର୍ଷ ୫ମାସ ହେବ ଅଗ୍ରଗାମୀ ଦ୍ୱାରା କରାଯାଇଥିବା ନବସୃଜନ ସ୍କୁଲରେ ଗୁରୁଭାଇ ଭାବେ କାମ କରୁଛି । ପିଲାମାନଙ୍କୁ ପଢ଼ାଇବା ସଙ୍ଗେ ସଙ୍ଗେ ଗାଁରେ ଦେଖାଦେଉଥିବା ବିଭିନ୍ନ ସମସ୍ୟା ବିଷୟରେ ବୁଝୁଛି । ଗାଁରେ ଜଣେ ସଦସ୍ୟ ଭଳି ଚଳୁଛି । ମୋ ଜାଣିବାରେ ସ୍କୁଲରେ ପାଠପଢ଼ାଇ ଦେଲେ ଲୋକମାନଙ୍କର ଭୋକ ମରିବ ନାହିଁ କିମ୍ବା ହଠାତ୍ ଏଠାରୁ ଶୋଷଣ ଦୁର୍ନୀତି ଦୂରେଇ ଯିବ ନାହିଁ । ତେଣୁ ଆମେ ପାଠପଢ଼ାଇବା ସହିତ ଗାଁର ବିଭିନ୍ନ ସମସ୍ୟା ଉପରେ ଲୋକମାନଙ୍କୁ ଅବଗତ କରାଉଛୁ । ଏବଂ ଲୋକମାନେ ଯେତେବେଳେ ଠକେଇ ଓ ଶୋଷଣରେ

ପଡୁଛନ୍ତି ସେତେବେଳେ ଲୋକମାନଙ୍କ ସାଙ୍ଗରେ ରହି ସେମାନଙ୍କୁ ସେ ବିଷୟରେ ବୁଝାଉଛୁ ଓ ତାହାର ସମାଧାନ ମଧ୍ୟ କରୁଛୁ । ଏହା ହେଉନଥିଲେ ସେମାନେ ବହୁତ ହଇରାଣରେ ପଡନ୍ତେ । ଆମେ ଥାଉ ଥାଉ ଯଦି ଏପରି କଥା ଘଟିଯାଉଛି, ତେବେ ନଥିଲା ବେଳେ କ'ଣ ଘଟୁଥିବ ତାହାହିଁ ଏକ ବିରାଟ ପ୍ରଶ୍ନ ।

ଗୋଟିଏ ଦିନର କଥା । ଏହି ଗାଁର ଜୟସିଂ ଜାନି ତା'ର ଘରେ ଏକ ଜାଳି କବାଟ ଓ ଝରକା କରିବା ପାଇଁ ଦୁଇଟି ପାଟି ବାଗିସିରେ ଚାଛି ଆଣିଥିଲା । ପଣସଗୁଡାର ଜଣେ ହରିଜନ ବଢ଼େଇ ଓ ସୁଣ୍ଡି ଲୋକ ମିଶି ଗଛ କାଟି ରଖିଥିଲେ । ଏବଂ ତାଙ୍କ ପାଖରେ ୨୫ଖଣ୍ଡ ପଟା ଓ ୫ଖଣ୍ଡ ଚୌକାଠ ଥିଲା । ଏହାକୁ କାଶୀପୁରର ଫରେଷ୍ଟର ଓ ଶିରିପାଇର ରେଞ୍ଜର ସିଜ୍ କଲେ । କାଠ ସିଜ୍ ହେବାରୁ ସେମାନେ କହିଲେ ଆଜ୍ଞା ଆମକୁ ଖାଲି ସିଜ୍ କରି ହଇରାଣ କରୁଛନ୍ତି । ପରନ୍ତୁ ଆମକୁ ଛାଡି ଏଠାରେ ଅନେକ ଲୋକ କାଠ କାଟୁଛନ୍ତି କିନ୍ତୁ ଆପଣ ତାଙ୍କୁ କିଛି କହୁ ନାହାନ୍ତି କାହିଁକି ? ଏହା କହିବାରୁ ଫରେଷ୍ଟର ଆଉ କିଏ ଗଛ କାଟୁଛି ବୋଲି କହିଲେ । ସେମାନେ ଜୟସିଂର ନାମ କହିବାରୁ ସେମାନେ ପୁସ୍‌ଘାଟିର ଜୟସିଂ ଜାନି ତା ଘର ପାଇଁ କଳସା, ପାଟି ଓ ରାପର କାଟୁଛି ବୋଲି କହିଲେ । ଏହା ଶୁଣିବା ପରେ ଫରେଷ୍ଟର ସେମାନଙ୍କ କଥା ଆମେ ବୁଝିବୁ କହି ସେଠାରୁ ଚାଲିଆସିଲେ ।

ଏହାର ଗୋଟିଏ ଦିନ ପରେ ଫରେଷ୍ଟର ଏବଂ ଗାର୍ଡ ପୁସ୍‌ଘାଟି ଗାଁକୁ ଆସି ଜୟ ସିଂକୁ ଡାକିଲେ । ସେ ଘରୁ ଆସିବାରୁ ତା'କୁ ପଚାରିଲେ ତୁମ ନାମ ଜୟ ସିଂ ସେ କହିଲା ହଇ ଆଜ୍ଞା ! ଫରେଷ୍ଟର କହିଲେ, "ତୁ କାହାକୁ ନକହି ପଣସଗୁଡା ଜଙ୍ଗଲରୁ ପଟା, ପାଟି ଓ କଲସା କାଠ କାଟିଛୁ ।" ସେ କହିଲା ନାହିଁ ଆଜ୍ଞା ମୁଁ କାଟି ନାହିଁ । ସେମାନେ କହିଲେ କ'ଣ କିଛି ଖର୍ଚ୍ଚବାର୍ଚ୍ଚ ଦେବୁନା କାଶୀପୁର ଆସିବୁ । ଏହା ଶୁଣିବା ପରେ ସେ ଭୟଭୀତ ହୋଇ କହିଲା ନାହିଁ ଆଜ୍ଞା ମୁଁ ମୋଟେ ପଟା କାଟି ନାହିଁ ମୋର ଘରେ ପଶିକରି ଦେଖନ୍ତୁ ମୁଁ ମୋଟେ କିଛି ରଖିନାହିଁ । ଏହା କହିବା ପରେ ସେ କହିଲେ ତୁ ଟାଉଟରୀ ଦେଖାଉଛୁ ତୋ ଘର ଆଗରେ ପଡିଥିବା କଣ୍ଡା ଗଦା ପାଇଁ ବି ଲେଖିଦେଲେ ଥାନାକୁ ଯିବୁ ବୋଲି ଜାଣୁଛୁକି ନାହିଁ । ହଉ ଯଦି ନନେଇଛୁ ତେବେ ଏ କାଗଜରେ ତୋର ଦସ୍ତଖତ ଦେ' । ଏହା ଶୁଣିବା ପରେ ସେ ଭାବିଲା ଯେ ଏମାନେ ମୋତେ ଛାଡିଦେବେ ତେଣୁ ସେ ସେହି କାଗଜରେ ତା'ର ନାମ ଲେଖିବା ପାଇଁ ବାହାରିଲା ।

ସେ ଦସ୍ତଖତ କରିବାକୁ ବାହାରିବା ସମୟରେ ମୁଁ ସେଠାରେ ପହଞ୍ଚିଲି । ସେ ଦସ୍ତଖତ କରୁଥିବାରୁ ଦେଖି କହିଲି ରହ ଟିକିଏ ଦେଖିବା, ସେ କାଗଜରେ କ'ଣ ଲେଖା ହୋଇଛି । ସେ ନାମ ଲେଖିବା ପୂର୍ବରୁ ମୁଁ ସେ କାଗଜଟିକୁ ଆଣି ପଢ଼ିଲି । ସେଥିରେ ଲେଖା ହୋଇଛି କି ମୁଁ ଶ୍ରୀ ଜୟ ସିଂ ଜାନି ଗ୍ରାମ/ପୋଷ୍ଟ- ଗୋଡିବାଲି, ଥାନା- କାଶୀପୁର, ଜିଲ୍ଲା- ରାୟଗଡା, ଲେଖି ଦଉଛି କି ମୋର ଘରେ କିଛି ଗଛ ପତ୍ର ନାହିଁ; ଯଦି ମୋର ନାମରେ ଯେ କୌଣସି ଜାଗାରେ ଗଛ ବାହାରିଲେ କିମ୍ବା ଲୋକ ଜୟ ସିଂ କଟାଉଛି ବୋଲି କହିଲେ ତେବେ ମୁଁ ଦାୟୀ ରହିବି । ଉକ୍ତ ଲେଖା ଅନୁଯାୟୀ ମୋତେ ଦଣ୍ଡିତ କରାଯାଉ । ଏହି ଲେଖାଟିକୁ ମୁଁ ଜୋରରେ ପଢ଼ିବା ବେଳେ ଲୋକଟି କାନ୍ଦ କାନ୍ଦ ହୋଇଗଲା । ମୁଁ ଫରେଷ୍ଟରକୁ କହିଲି "ଆଜ୍ଞା, ଜୟ ସିଂ ଗଛ କାଟିବାର ଆମେ ଦେଖିନାହୁଁ କିମ୍ବା ଆପଣ ମଧ୍ୟ କାଠ ପାଇଲେ ନାହିଁ । ଏଣୁ ସେ କାଟିଛି ବୋଲି ଲୋକ କହିଦେଲେ ତାହା ହେବ କି ? ଆପଣ ଯଦି ଏକଥା କରିବେ କରନ୍ତୁ କିନ୍ତୁ ଏଇଟା କିନ୍ତୁ ଭଲ ହେବ ନାହିଁ । ଅନ୍ୟ ଲୋକ ଯଦି ଜୟ ସିଂ କାହାକୁ ମଡର କରିଛି ବୋଲି କହିବେ ଆପଣ ତାହାକୁ ଜେଲକୁ ପଠାଇବେ କି ? ସେହିପରି ଆପଣ ଜୟକୁ ବିନା ଅପରାଧରେ ଦଣ୍ଡ ଦେବା ଠିକ୍ ହେବ ନାହିଁ ।"

ଏସବୁ କହିବା ପରେ ସେ ଲୋକମାନଙ୍କୁ ମୁଁ କିଏ ବୋଲି ପଚାରିଲେ ସେମାନେ ଅଗ୍ରଗାମୀ ସ୍କୁଲର ଗୁରୁଭାଇ ବୋଲି କହିଲେ । ଏକଥା ଶୁଣିବା ପରେ ଫରେଷ୍ଟର ଏବଂ ଭେଣ୍ଡର ବାବୁ ସଙ୍ଗେ ସଙ୍ଗେ ଗାଁରୁ ଉଠି ଚାଲି ଆସିଲେ । ଏହାପରେ ଆଉ ଗାଁକୁ ଆସି ନାହାନ୍ତି । ଏହିପରି ଅନେକ ଘଟଣା ଆମ ଅଞ୍ଚଳରେ ନିଶ୍ଚୟ ଘଟୁଥିବ । ଏହା ଆଗରୁ ଥିଲା ବୋଲି ଆମର ପୂର୍ବପୁରୁଷମାନେ କହୁଥିଲେ କାରଣ ସେତେବେଳେ ଲୋକମାନେ ଥାନା ନାଁ ଶୁଣିଲେ ଡରୁଥିଲେ । ପାଠ ପଢ଼ିନଥିଲେ କିନ୍ତୁ ବର୍ତ୍ତମାନ ଗାଁରେ ଅନେକ ଶିକ୍ଷିତ ଲୋକ ବାହାରିଲେଣି ପରନ୍ତୁ ବର୍ତ୍ତମାନ ଯଦି ଏସବୁ ହୁଏ ତେବେ ଗାଁର ଅବସ୍ଥା ଆହୁରି ଖରାପ ହୋଇଯିବ । ସେଦିନ ମୁଁ ନଥିଲେ ଜୟ ସିଂ ନାମରେ କେଶ୍ ହୋଇଥାଆନ୍ତା । ସେ କିଛି ପଢ଼ି ଜାଣିନଥିବାରୁ କାଗଜରେ ଯେକୌଣସି କଥା ଲେଖିଦେଲା । ଲୋକମାନଙ୍କ ଠାରୁ ପୂର୍ବେ ସାହୁକାରମାନେ ଯେଉଁପରି ସୁଧ ବଢ଼ାଉଥିଲେ ବର୍ତ୍ତମାନ ମଧ୍ୟ ସେହିପରି ଲେଖି ଲୋକମାନଙ୍କୁ ବିଭିନ୍ନ ପ୍ରକାର କେଶ୍‌ରେ ପକାଇ ପଇସା ନେବା ପାଇଁ ସରକାରୀ କର୍ମଚାରୀମାନେ ଲାଭ ଉଠାଇବେ । ଏହାକୁ ମୁକାବିଲା କରିବା ପାଇଁ ହେଲେ ଆମକୁ ପାଠପଢ଼ିବାକୁ ହେବ ବୋଲି ଗାଁ ଲୋକଙ୍କୁ

ବୁଝାଇବା ପାଇଁ ଏହା ଏକ ଭଲ ଉଦାହରଣ ହୋଇପାରିଛି । ସେଦିନ ଜୟ ସିଂ ଏକଥା ଭଲ ଭାବରେ ବୁଝିଲା । ଏହା ପରଠାରୁ ସେ ମଧ୍ୟ ତା'ର ପୁଅକୁ ସ୍କୁଲକୁ ସବୁଦିନ ପଢ଼ାଇବାକୁ ପଠାଉଛି । ସ୍କୁଲରେ ଆସି ବସୁଛି । ସ୍କୁଲ କମିଟି ମିଟିଂରେ ସ୍କୁଲ ବିଷୟରେ ସବୁ କଥା ବୁଝୁଛି । ଲୋକମାନେ ଯଦି ପାଠର ମହତ୍ତ୍ୱ ନବୁଝିବେ ତେବେ ଏହିପରି ଅନେକ ପ୍ରକାରର ହଇରାଣ ହେବେ । ଏହାକୁ ଲକ୍ଷ୍ୟ ରଖି ଆମ ଗାଁ ଗୁଡିକରେ ସବୁପ୍ରକାର ସମସ୍ୟାକୁ ସମାଧାନ କରିବା ପାଇଁ ଗୁରୁଭାଇମାନେ ଆଗେଇ ଆସିଲେ ଗାଁର ଲୋକମାନେ ନିଶ୍ଚୟ ଆମକୁ ଗ୍ରହଣ କରିବେ । ଆମେ ପଢାଉଥିବା ଗାଁ ଗୁଡିକରେ ସମସ୍ତେ ପଢିବେ ଏବଂ ସେମାନେ ସେମାନଙ୍କ କଥା ଭଲ ଭାବରେ ବୁଝି କାମରେ ଲଗାଇବେ ସେକଥା ପ୍ରତି ଆମେ ମଧ୍ୟ ଧ୍ୟାନ ଦେବା ଦରକାର । ସେଥିପାଇଁ କୁହାଯାଇଛି ପାଠ ବତାଏ ବାଟ ।

ଖଟ ନାୟକ<br>
ଗୁରୁଭାଇ, ପୁସ୍‌ଘାଟି<br>
କାଶୀପୁର, ରାୟଗଡା



# ପଢ଼ିଲେ ପାଠ ଦିଶିବ ବାଟ

ମୁଁ ଏଠାରେ ମୋ କେନ୍ଦ୍ରର ପିଲା ତଥା ଗାଁ ଲୋକମାନଙ୍କ ସହିତ କୁଶଳରେ ଅଛି । ଆଶା ଅଗ୍ରଗାମୀର ସମସ୍ତ କର୍ମୀ ଭାଇଭଉଣୀ ଭଲରେ ଥିବେ । ଗତ ବର୍ଷଠାରୁ ଆମ ଗାଁରେ ନବସୃଜନ ସ୍କୁଲ ହୋଇଛି । ନୂଆ ଭାବେ କରାଯାଇଥିବା ଏହି ସ୍କୁଲଟି ପାଇଁ ଘର କରାଯାଇପାରି ନାହିଁ । ଆମେମାନେ ବର୍ତ୍ତମାନ ଗାଁର କୁଟୁମ୍ବଘରେ ପାଠ ପଢୁଛୁ । ଗାଁର ପିଲାମାନେ ଘର କାମରେ ବ୍ୟସ୍ତ ରହୁଥିଲେ ମଧ୍ୟ ଅନେକ ସମୟ ସ୍କୁଲକୁ ଆସୁଛନ୍ତି । ପ୍ରତ୍ୟେକ ପିଲାଙ୍କୁ ସ୍କୁଲ ଆଣିବା ପାଇଁ ମୁଁ ସମ୍ପୂର୍ଣ୍ଣ ଭାବରେ ଚେଷ୍ଟା କରୁଛି । ବର୍ତ୍ତମାନ ପିଲାମାନେ ଯେଉଁଭଳି ଭାବରେ ସ୍କୁଲକୁ ଆସୁଛନ୍ତି ଏବଂ ପାଠ ପଢ଼ାପଢ଼ି କରୁଛନ୍ତି ଏହି ଭଳି ପଢ଼ା ଲାଗିରହିଲେ ପିଲାମାନେ ଅଧିକ ପଢିପାରିବେ ବୋଲି ମୋର ଆଶା । ଅନେକ ସମୟରେ ପିଲାମାନଙ୍କ ସଂଖ୍ୟା କମିଯାଉଛି, ବିଶେଷକରି ଯେତେବେଳେ ଚାଷବାସ କାମ ଅଧିକା ରହୁଛି । ସେଥିପାଇଁ ମୁଁ ବ୍ୟସ୍ତ ନୁହେଁ । କାରଣ ପିଲାମାନେ କାମକରି ପାଠ ପଢ଼ିବେ ବୋଲି ଅଗ୍ରଗାମୀ ସବୁବେଳେ କହିଆସିଛି । ତା'ର ମାନେ ନୁହେଁ ଯେ ପିଲାମାନେ ନଆସିଲେ ଆମେ କିଛି କହିବୁ ନାହିଁ । ଗାଁରେ ବୁଲି ପିଲାମାନଙ୍କ ଭଲମନ୍ଦ ବିଷୟ ବୁଝିଲାବେଳେ କିଏ କେଉଁ ଅସୁବିଧାରେ ସ୍କୁଲକୁ ଆସି ପାରୁନାହିଁ, ସେକଥା ଜଣାପଡିଯାଏ । ତଥାପି ଅନେକ ସମୟରେ ଅର୍ଥାତ ବର୍ଷକ ଆଠମାସରୁ ଅଧିକ ଦିନ ଧରି ସତୁରୀ ଭାଗରୁ ଅଧିକ ପିଲା ଆସୁଛନ୍ତି । ଗୀତ, ଗପ, ଖେଳ ଏବଂ ପିଲାମାନଙ୍କ ଖୁସି ଅନୁଯାୟୀ ପିଲାମାନଙ୍କୁ ପାଠ ପଢ଼ାଇବା ପାଇଁ ଆମେ ଚେଷ୍ଟା କରିଆସୁଛୁ । ଆମ ପିଲାମାନଙ୍କ ଏକ ଶିଶୁ ପାଣ୍ଠି ରହିଛି । ସେଥିରେ ପିଲାମାନେ କିଛିକିଛି ପଇସା ଠୁଳକରି ୧୫୨ ଟଙ୍କା କରିସାରିଲେଣି । ସେହି ପଇସାରେ ପିଲାମାନେ କୁକୁଡା କିଣିବା ପାଇଁ ନିଷ୍ପତ୍ତି ନେଇଛନ୍ତି । ଏହା ହେଉଛି ପିଲାମାନଙ୍କର ନିଜର ପାଣ୍ଠି । ସ୍କୁଲ ପାଇଁ ଅଗ୍ରଗାମୀ ଦେଇଥିବା ଅର୍ଥକୁ ଗାଁର କମିଟି ସଭ୍ୟ/ସଭ୍ୟାମାନେ ବସି ଛେଳି କିଣିବା ପାଇଁ ନିଷ୍ପତ୍ତି ନେଇଛନ୍ତି । ଯେଉଁ ଛେଳି କିଣିବୁ ତାହାକୁ ପ୍ରତ୍ୟେକ ଘର ପିଛା ଦୁଇଟି ଲେଖାଏଁ ଦିଆଯିବ । ସେମାନେ ତିନିବର୍ଷ ପର୍ଯ୍ୟନ୍ତ ପାଳିଲା ପରେ

ସମସ୍ତେ ବସି ତାହାକୁ କ'ଣ କରାଯିବ ସେ ବିଷୟରେ ନିଷ୍ପତ୍ତି ନେଇ ଆୟ ବଢ଼ାଇବେ । ଯାହାଦ୍ୱାରା ସେହି ଆୟ ମାଧ୍ୟମରେ ଆମେ ଆମ ସ୍କୁଲକୁ ଚଳାଇବୁ ।

ଗାଁ ଲୋକମାନେ ସ୍କୁଲ ଘର ପାଇଁ ଜାଗା ଠିକ୍ କରିସାରିଛନ୍ତି । ଆସନ୍ତା ମାସକୁ ସ୍କୁଲଘର କରିବେ ବୋଲି କହୁଛନ୍ତି । ଗାଁରେ କୁଟୁମ୍ବ ପାଣ୍ଠି ମାଧ୍ୟମରେ ୮୬ମାଣ ଧାନ ଏବଂ ୫୨ମାଣ ସୁଆଁ ରଖିଛନ୍ତି । ଲୋକମାନଙ୍କର ଅସୁବିଧା ସମୟରେ ସେଥିରୁ ନେଇ ଖାଉଛନ୍ତି ଏବଂ ଫସଲ ଅମଳ ବେଳେ ସୁଧ ସହିତ ଫେରାଉଛନ୍ତି । ଲୋକମାନେ ଗାଁ ଏବଂ ସ୍କୁଲ ପାଣ୍ଠି ଉପରେ ପ୍ରତ୍ୟେକ ମାସରେ ଆଲୋଚନା କରୁଛନ୍ତି । ସମସ୍ତେ ମିଳିମିଶି ଚଳୁଛନ୍ତି ।

ଆମ ସ୍କୁଲ ଦୁଇବେଳା କରୁଛୁ । ସକାଳ ବେଳା ଛୋଟଛୋଟ ପୁଅଝିଅ ଆସୁଛନ୍ତି । ଟିକିଏ ବଡପିଲା ଚାଷବାସରେ ଚାଲିଯାଉଛନ୍ତି । ଖରାବେଳେ ପିଲାମାନେ (ଧାଙ୍ଗଡା ଧାଙ୍ଗଡୀ) ସେମାନଙ୍କ କାମ ସାରି ସ୍କୁଲକୁ ଆସୁଛନ୍ତି । ଆମକୁ ଦିଆଯାଇଥିବା ବହିଗୁଡିକ ସମସ୍ତେ ବସି ପଢୁଛୁ । ପ୍ରକୃତରେ ସଂଧ୍ୟାବେଳଟି ବହୁତ ଜମୁଛି । ପ୍ରାୟତଃ ଗାଁର ସମସ୍ତ ପିଲା ଓ ବଡମାନେ ଆସୁଛନ୍ତି । କେତେଜଣ ଭାଇ ଗପ କହୁଛନ୍ତି, ଗୀତ ନାଚ ବି କରୁଛନ୍ତି । ତେଣୁକରି ଏ ସମୟଟି ଭାରି ଖୁସୀଲାଗେ । ମାତ୍ର ପାଞ୍ଚଜଣ ପିଲାଙ୍କୁ ଛାଡିଦେଲେ ସବୁପିଲା ୧୦୦ ଯାଏଁ ଲେଖିସାରି ବହି ପଢ଼ିପାରୁଛନ୍ତି । ଧୀରେ ଧୀରେ ପିଲାମାନଙ୍କ ମନରୁ ଭୟ ଦୂର ହେଉଛି । ପ୍ରଥମେ ଯେତେବେଳେ ମୁଁ ଏ ଗାଁ'କୁ ଆସିଥିଲି ସେତେବେଳେ ସବୁପିଲା ଭୟ କରୁଥିଲେ । ଏମିତିକି ସ୍କୁଲ ଏବଂ ପାଠପଢ଼ା ପାଇଁ ବେଶୀ ଭୟ ଥିଲା । ଏହାକୁ ଦୂର କରିବା ପାଇଁ ଆମେ ଅନେକ ଥର ଆଲୋଚନା କରିଛୁ । ପରିଶେଷରେ ଏତିକି ଜାଣିଲୁ ଯେ ଗାଁର ଅଧିକାଂଶ ଲୋକ ପାଠ ପଢ଼ିନାହାନ୍ତି କିମ୍ବା ଶିକ୍ଷା କ'ଣ ଜାଣିନାହାନ୍ତି । ସେଥିପାଇଁ ଲୋକମାନଙ୍କର ପ୍ରଭାବ ପିଲାମାନଙ୍କ ଉପରେ ପଡିଛି । ଏହାକୁ ଦୂର କରିବାକୁ ହେଲେ ଆମେ ଅନେକ ଥର ଆନନ୍ଦର ସହିତ ସମସ୍ତଙ୍କ ସାଙ୍ଗରେ ମିଶିଛୁ ଏବଂ ଭୟଶୂନ୍ୟ ଭାବରେ ଗୁରୁଭାଇ ତଥା ପଢ଼ାକୁ ଗ୍ରହଣ କରିବେ ସେଥିପାଇଁ ଆମେ ସେମାନଙ୍କ ଖୁସି ଅନୁସାରେ ସମସ୍ତ କାର୍ଯ୍ୟ କରୁଛୁ । ମୁଁ ଏହାକୁ ସମସ୍ତଙ୍କୁ ଜଣାଇବାକୁ ଚାହୁଁଛି ।

ଜଗତ ଖରା
ନୂଆଗଡା ନବସୃଜନ ଶିକ୍ଷାକେନ୍ଦ୍ର,
ମୋଡ, ଚିତ୍ରକୋଣ୍ଡା

□□□

# ପିଲାମାନଙ୍କ ବିଷୟରେ କିଛି ପ୍ରଶ୍ନ

ଝିଅଟିର ନାମ ଉନି- ଏ ଝିଅଟି ଆଜିକୁ ୧ବର୍ଷ ହେଲା ଆମ ନବସୃଜନ ଶିକ୍ଷାକେନ୍ଦ୍ରରେ ଆସି ପଢୁଛି । ସେ କେନ୍ଦ୍ରକୁ ଆସିବା ପୂର୍ବରୁ କିଛି ଲେଖି ଶିଖିନଥିଲା । ତା'କୁ ପ୍ରଶ୍ନ ପଚାରିଲେ ବହୁତ ଲାଜ କରୁଥିଲା । ପିଲାମାନଙ୍କ ଭିତରେ ସେ ଯେମିତି ଅଲଗା ଅଲଗା ହେଲା ଭଳି ଆମକୁ ଲାଗେ । ଧୀରେ ଧୀରେ ତା'ର ନିଜ କଥା କହିବା ପରେ କିଛି କଥା କହିଲା । ପ୍ରଥମେ ତା'କୁ ଯେତେବେଳେ ଅକ୍ଷର ଲେଖିବାକୁ ଦିଆଗଲା ସେତେବେଳେ ଆଗ୍ରହର ସହିତ ଲେଖିଲା ଏବଂ ଅକ୍ଷରରୁ ଶବ୍ଦ ତିଆରି କଲାବେଳକୁ ସେ ମଧ୍ୟ ଅଧିକ କହୁଛି । ବର୍ତ୍ତମାନ ସବୁ ପିଲାଙ୍କଠାରୁ ବଢ଼ିଆ ଶବ୍ଦ ଲେଖିପାରୁଛି । ମୁଁ ଅନୁଭବ କରୁଛି ଯେ ଏ ପିଲାଟି ଭବିଷ୍ୟତରେ ଭାଷାରେ ନିଶ୍ଚୟ ଭଲ କରିବ । ସରକାରୀ ସ୍କୁଲକୁ ଗଲେ ଯଦି ଅବହେଳା ହୁଏ ତେବେ କିଛି କହିହେବ ନାହିଁ । ତଥାପି ମୋର ଆଶା ସେ ଆଗକୁ ଭଲ ପଢ଼ିବ ।

*ମଞ୍ଜୁଳ ହଁ-* ଏହି ଝିଅଟି ବେଶି ଲେଖିନପାରିଲେ ବି ନିର୍ଭୟରେ ସବୁ କଥା କହିପାରୁଛି । ଭୁଲ ହେଉ କିମ୍ବା ଠିକ୍ ହେଉ ସାହସର ସହିତ କଥାବାର୍ତ୍ତା କରିପାରୁଛି । ଲାଜ ନକରି ସମସ୍ତଙ୍କ ପାଖରେ ଗୀତ ଓ ନାଚ କରିପାରୁଛି । ସେଥିପାଇଁ ଶିଶୁମେଳାରେ କରାଯାଇଥିବା ବାଲ ପଞ୍ଚାୟତରେ ସେ ସରପଞ୍ଚ ହୋଇଥିଲା । ସେ ସମସ୍ତଙ୍କୁ ଅନେକ କଥା କହିଥିଲା । ତେଣୁ ପିଲାମାନେ ତାହାକୁ ସରପଞ୍ଚ ଭାବେ ନିର୍ବାଚିତ କରିଥିଲେ । କହିବା ସଙ୍ଗେ ସଙ୍ଗେ ଅନେକ କଥା ମନେ ରଖି ପାରୁନଥିବାରୁ ମଞ୍ଜୁଳାକୁ ପିଲାମାନେ ବହୁତ ଭଲ ପାଆନ୍ତି । ଏହା ସତ୍ତ୍ୱେ ସେ ଅନେକ ସମୟରେ ସ୍କୁଲରେ ଅନୁପସ୍ଥିତ ରହୁଛି । ଏହାର କାରଣ ପଚାରିଲେ ସେ କୁହେ, ତାକୁ ଘରେ ବହୁତ କାମ କରିବାକୁ ପଡୁଛି । ସ୍କୁଲରେ ଯାହା ପାଠ ଦିଆଯାଉଛି ସେ ତାହାକୁ ପଢ଼ିପାରୁ ନାହିଁ । ସମସ୍ତେ କିଛି କିଛି ପଢ଼ିଥିବା ବେଳେ ସେ ପଢ଼ିପାରୁ ନଥିବାରୁ ସ୍କୁଲକୁ ଆସୁନାହିଁ । ଏକଥା

ତା'କୁ ଭଲରେ ପଚାରିଲି ଏହା ସତ କି ମିଛ ଜାଣିବା ପାଇଁ କିନ୍ତୁ ସେ ତାହାହିଁ କହିଲା । ତା'ର ବାପାକୁ ପଚାରିଲି ସେ କିନ୍ତୁ ତାହାର ଓଲଟା କଥା କହିଲା । ପିଲାମାନେ ମିଛ ପ୍ରାୟ କୁହନ୍ତି ନାହିଁ ତଥା ପିଲାଟିର ବାପା ମଧ୍ୟ ଭଲ ଲୋକ ଏଣୁ ତାଙ୍କୁ କିଛି ନକହି ମୁଁ ନିରବ ରହିବାକୁ ବାଧ୍ୟ ହେଲି । ମୁଁ ଭାବିପାରୁ ନାହିଁ ଯେ ଏଥିରେ ଭୁଲ କାହାର ।

*ଋଷି କହଁଚ-* ପିଲାଟି ସ୍କୁଲକୁ ଆସୁଛି କିନ୍ତୁ ପାଠପଢ଼ାପ୍ରତି ତାହାର ଆଗ୍ରହ ନାହିଁ । କାହିଁକି ନାହିଁ ସେକଥା ମୁଁ ବୁଝିପାରୁ ନାହିଁ । ନାଚ, ଗୀତ, ଚିତ୍ର କିମ୍ବା ବହିପଢ଼ା ଉପରେ ତାହାର ଆଗ୍ରହ ନାହିଁ । ଋଷିକୁ ମୁଁ ଠେଲାପେଲା କରି 'ଈ' କାର ପର୍ଯ୍ୟନ୍ତ ନେଇଛି । ସ୍କୁଲରେ ସେ ଯେତେବେଳେ ପାଠପଢ଼ିବାକୁ ଆଗ୍ରହ ଦେଖାଉ ନାହିଁ ସେତେବେଳେ ଅନ୍ୟ ପିଲାମାନଙ୍କୁ ପଢ଼ାଇବାକୁ ମୋତେ ସେତେ ଭଲ ଲାଗୁ ନାହିଁ । ଏହିଭଳି ପିଲା ଅନ୍ୟ ସ୍କୁଲମାନଙ୍କରେ ମଧ୍ୟ ଥିବେ ସେମାନଙ୍କୁ ଅନ୍ୟ ଗୁରୁଭାଇମାନେ କିପରି ପାଠପଢ଼ାଉଛନ୍ତି ସେକଥା ଜାଣିବା ପାଇଁ ମୋର ବହୁତ ଆଗ୍ରହ ।

*ପ୍ରତିମା କହଁଚ-* ପ୍ରତିମାକୁ ସ୍କୁଲ ଆଣିବା ପାଇଁ ମୋତେ ଅନେକ ଦିନ ଲାଗିଥିଲା । ସେ ପାଠପଢ଼ିବାକୁ ମୋଟେ ମଙ୍ଗେ ନାହିଁ । ତେଣୁ ତା'କୁ ସ୍କୁଲରେ ନାଚ ଓ ଗୀତ କରିବା ବୋଲି ଡାକି ଆଣି ପଢ଼ାଇବା ପାଇଁ ଭାବି ଆଣିଥିଲି । ପ୍ରଥମେ ପ୍ରଥମେ ନାଚ ଗୀତ କରି ତା ମନ ଖୁସି ହେଉଥିଲା ଏବଂ ସେ ସ୍କୁଲକୁ ଆସୁଥିଲା । କିନ୍ତୁ ବର୍ତ୍ତମାନ ଯେତେ ନାଚ କିମ୍ବା ଗୀତ ଗାଇ ସ୍କୁଲକୁ ଡାକିଲେ ସେ ଆସୁନାହିଁ । ବେଳେବେଳେ ତା'କଥା ଭାବିଲେ ମନକୁ ପ୍ରଶ୍ନ ଆସେ ଯେ ଏଭଳି ପିଲାମାନଙ୍କୁ କିପରି ଭାବରେ ପାଠପଢ଼ାଇଲେ ଭଲ ହେବ ? ଏହିଭଳି ପିଲାମାନେ ନପଢ଼ିଲେ ତାଙ୍କ ଘରେ ଯେଉଁ ପିଲାଥିବେ ସେମାନେ ମଧ୍ୟ ପଢ଼ିବାକୁ ଆସିବେ ନାହିଁ । ଏହାର ବାଟ କ'ଣ ? ଏହା ମଧ୍ୟ ମୋ ପାଇଁ ଏକ ପ୍ରଶ୍ନ ହୋଇ ରହିଛି ।

*ସିମନ କହଁଚ-* ଏ ପିଲାଟି ବର୍ଷେ ହେଲା ସ୍କୁଲରେ ଆସି ପଢୁଛି । ଏ ପ୍ରାୟ ସବୁଦିନେ ସ୍କୁଲକୁ ଆସେ କିନ୍ତୁ ଏ ପର୍ଯ୍ୟନ୍ତ ଅକ୍ଷର ଶିଖିପାରି ନାହିଁ । ତା ସାଙ୍ଗରେ ଆସିଥିବା ଅନ୍ୟ ପିଲାମାନେ ଶବ୍ଦ ଗଠନ କରିବାକୁ ଆରମ୍ଭ କଲେଣି । ଏଥିପାଇଁ କିଛି ଉପକରଣ ଦରକାର କି କ'ଣ ବୁଝିପାରୁ ନାହିଁ । ସିମନ କିନ୍ତୁ ଭଲ ଚିତ୍ର କରିପାରୁଛି । ସବୁ ପିଲାଙ୍କ ଭିତରେ ତାହାର ଚିତ୍ର ଭଲ ହେଉଛି କିନ୍ତୁ ଚିତ୍ର ପାଇଁ ଯାହା ସରଞ୍ଜାମ ଦରକାର ତାହାକୁ ମୁଁ ଯୋଗାଇପାରୁ ନାହିଁ । କ'ଣ କଲେ ପିଲାଟି ପାଠପଢ଼ିବା ସଙ୍ଗେ ସଙ୍ଗେ ଭଲ ଚିତ୍ର କରିପାରିବ ତାହାହିଁ ମୋ ପାଖରେ ଏକ ପ୍ରଶ୍ନ ହୋଇରହିଛି ।

*ଲତା-* ଝିଅଟି ପ୍ରଥମେ ପ୍ରଥମେ ଭଲ ଭାବରେ ସ୍କୁଲକୁ ଆସୁଥିଲା । ଘରେ କାମଦିନ ଟିକିଏ ଡେରିରେ ଆସେ । କିଛିଦିନ ପରେ ସେ କିଛିଦିନ ଛାଡି ଛାଡି ସ୍କୁଲକୁ ଆସେ । ବର୍ତ୍ତମାନ ଅନେକ ଦିନ ଧରି ଘରେ ରହିଯାଉଛି । ଘରକୁ ଯାଇଁ ବୁଝିବାରୁ ପ୍ରକୃତରେ ପିଲାଟି ଘରେ ଅନେକ କାମ କରିବାକୁ ବାଧ ହେଉଛି । ବର୍ତ୍ତମାନ ସ୍କୁଲକୁ ଆସିଲେ କିଛି ପଢୁନାହିଁ । ସେ କିଛିଦିନ ଛାଡିଦେବା ପରେ ତାହାର ଆଗ୍ରହ କମିଯିବା ସ୍ୱାଭାବିକ । ସ୍କୁଲକୁ ଆସି କିଛି ନପଢ଼ିବାରୁ ଅନ୍ୟପିଲାମାନେ ମଧ୍ୟ ତା'କୁ ସେତେ ଭଲ ପାଆନ୍ତି ନାହିଁ ।

*ନୁନୁରାଣୀ-* ଶିକ୍ଷା କେନ୍ଦ୍ରକୁ ୬ମାସ ହେବ ଆସୁଛି । ବର୍ତ୍ତମାନ ସେ ଅବନା ଶବ୍ଦ ଲେଖିପାରିଲାଣି । ଏତିକି ମାସ ଭିତରେ ସେ ଭଲ ଆଗେଇ ପାରିଛି ତେଣୁ ମୋତେ ମଧ୍ୟ ଖୁସୀ ଲାଗେ । ଏ ଘରେ କାମ କଲେ ସୁଦ୍ଧା ସ୍କୁଲକୁ ଆସୁଛି । ଭଲ ନାଚ କରୁଛି ପାଠ ସାଙ୍ଗରେ ନାଚ କରିପାରୁଛି । ଘର କାମ ଟିକିଏ କମ୍ କରି ପଢ଼ା ପ୍ରତି ଟିକିଏ ଅଧିକ ସମୟ ଦେଇପାରିଲେ ଏ ନିଶ୍ଚୟ ଭଲ କରିପାରିବ । ତାଙ୍କ ଘରେ ମଧ୍ୟ ଏ ବିଷୟରେ କହିଛି ଯେ ସେ ଭଲ ପଢୁଛି ତାକୁ ପଢିବାକୁ ଆଉ ଟିକିଏ ସମୟ ଦିଅ ।

*ସବିତା ଜହାଁର-* ସବିତାକୁ ପାଠପଢିବାରେ ମନ ଲାଗୁ ନାହିଁ ବୋଲି କହୁଛି । ଏହାର କାରଣ କହିପାରୁ ନାହିଁ । ପାଠପଢ଼ା ଛାଡି ଗୀତ ଓ ନାଚ କଲେ ତାହାକୁ ଭଲ ଲାଗୁଛି । ଶିକ୍ଷକ ହିସାବରେ ପିଲାଟିକୁ ପଢ଼ାଇବା ସଙ୍ଗେ ସଙ୍ଗେ ଏସବୁ କରିବା ଦରକାର । କିନ୍ତୁ ସବିତାକୁ ପଢ଼ିବାକୁ ଭଲ ଲାଗୁନାହିଁ କାହିଁକି ତାହା ମୁଁ ଜାଣିପାରୁ ନାହିଁ ।

*ମଞ୍ଜୁଳା-* ଝିଅଟିକୁ ପାଠପଢିବାର ଆଗ୍ରହ ଅଛି । ସ୍କୁଲକୁ ଆସୁଛି କିନ୍ତୁ ଲେଖିପାରୁ ନାହିଁ । କାରଣ ସେ ଖାଲି ସ୍କୁଲରେ ଦୁଇତିନି ଘଣ୍ଟା ଲେଖିଦେଲେ ମନେ ରଖିପାରିବ ନାହିଁ । ଘରେ ସେ ରୋଷେଇ କରୁଛି । ଏଥିପାଇଁ ପାଣି ଆଣିବା, ବାସନ ମାଜିବା ଓ ଘର ଓଳେଇବାରେ ମଧ୍ୟ ବ୍ୟସ୍ତ ରହୁଛି । ଏହିଭଳି ଅସୁବିଧାରୁ ମଧ୍ୟ ଅନେକ ପିଲା ପଢ଼ିବାରୁ ବଞ୍ଚିତ ହେଉଛନ୍ତି ।

*ସନାମନ୍ତ-* ଏହି ପିଲାଟି ସ୍କୁଲରେ ଆସି ପାଟିତୁଣ୍ଡ କରେ ଏବଂ ଚଗଲା ହୁଏ । ପଢ଼ାପଢ଼ିରେ ମନ ଦେଉନାହିଁ । ତାହାକୁ ଧମକେଇକରି ପଢ଼ାଇଲେ କିଛି ସମୟ ପାଇଁ ଧିର ହୋଇଯାଏ ପୁଣି କିଛି ସମୟ ପରେ ଯେଉଁ କଥାକୁ ସେହି କଥା । ଏହାକୁ ପଢ଼ାଇବା ପାଇଁ ମୋତେ ବହୁତ କଷ୍ଟ ଲାଗେ ।

ଏହିପରି ବିଭିନ୍ନ ପ୍ରକାରର ପିଲାମାନଙ୍କୁ ନେଇ ଆମ ସ୍କୁଲଟି ଚାଲିଛି । ଏହିପରି ଅନେକ ପ୍ରକାରର ପିଲା ମଧ୍ୟ ଅନ୍ୟ ସ୍କୁଲମାନଙ୍କରେ ଥିବେ । କେଉଁ ଗୁରୁଭାଇ ଭଉଣୀ କିପରି ଭାବରେ ପାଠପଢ଼ାଉଛନ୍ତି ମୁଁ ଜାଣି ନାହିଁ । କିନ୍ତୁ ଅନେକ ପ୍ରକାରର ପିଲାମାନଙ୍କୁ ପଢ଼ାଇଲା ବେଳେ ମୋ ପରେ ସେମାନେ ମଧ୍ୟ ଅସୁବିଧାର ସମ୍ମୁଖୀନ ହେଉଥିବେ । ଅନେକ ସମୟରେ ଏକଥା ଭାବେ ଯେ ଏହିଭଳି ପିଲାମାନଙ୍କ ପାଇଁ କିଏ କେଉଁ ଉପାୟ କରି ପାଠପଢ଼ାଉଛି । ଶେଷରେ ଏହାକୁ ସମସ୍ତଙ୍କୁ ଜଣାଇବି ବୋଲି ଭାବି ଲେଖିଲି । ଆଶା ଏହା ଉପରେ ଅନ୍ୟ ଭାଇ ଭଉଣୀମାନେ ମଧ୍ୟ ମତାମତ ଦେବେ । ଏହା ଖାଲି ମୋ ପାଇଁ ପ୍ରଶ୍ନ ନୁହେଁ । ଏହା ସମସ୍ତଙ୍କ ପାଇଁ ପ୍ରଶ୍ନ ।

ବିଶ୍ୱମ୍ଭର ପ୍ରଧାନ
ରାଙ୍ଗାମାଲ ନବସୃଜନ ଶିକ୍ଷାକେନ୍ଦ୍ର



# ମୁଁ ଓ ମୋ ଶିକ୍ଷାକେନ୍ଦ୍ର କଥା

ମୁଁ ଶ୍ରୀ ଈଶ୍ୱର ଜାନୀ । ମୋର ଘର ହେଉଛି କନ୍ଧବେଡ଼ାପଦର । ବର୍ତ୍ତମାନ କୋରାପୁଟ ଜିଲ୍ଲାର ଅଗ୍ରଗାମୀ ଦଶମନ୍ତପୁର ପ୍ରକଳ୍ପ ଅଧୀନରେ ଥିବା ବଳନ୍ଦିଆଗୁଡ଼ା ଶିକ୍ଷାକେନ୍ଦ୍ରରେ ଗୁରୁଭାଇ ଭାବେ କାମ କରୁଛି । ମୁଁ ଏଠାରେ ଗୁରୁଭାଇ ରୂପେ କାର୍ଯ୍ୟ କରିବା ପୂର୍ବରୁ କିପରି ଥିଲି ଓ ବର୍ତ୍ତମାନ ମୋତେ କ'ଣ କରିବାକୁ ପଡୁଛି ସେ କଥାକୁ ସମସ୍ତ ଗୁରୁଭାଇ ଭଉଣୀଙ୍କୁ ଜଣାଇବାକୁ ଚାହୁଁଛି । ଭାବୁଛି ମୋ ମନରେ ଯେଭଳି କୁପ୍ରଭାବକୁ ଏଡାଇ ଦେଇ ସୁପ୍ରଭାବ ପକାଇଛି, ସେହିଭଳି ଆପଣମାନଙ୍କ ଜୀବନରେ ମଧ୍ୟ ଆସିଥିବ ।

ମୁଁ ଯୁକ୍ତ ଦୁଇ ଶ୍ରେଣୀରେ ନାମ ଲେଖାଇ ପ୍ରଥମ ବର୍ଷ ପଢ଼ିଲା ପରେ ଆମ ଘରର ଆର୍ଥିକ ସଂକଟ ଯୋଗୁଁ ଅଧିକ ପାଠ ଆଉ ପଢ଼ିପାରିଲି ନାହିଁ ସତ; କିନ୍ତୁ ମୋତେ ପାଠପଢ଼ା ଚିନ୍ତା ଛାଡିଲା ନାହିଁ । ମୋ ବାପା ମା' ଯେତେବେଳେ ଚାଷୀ ମୁଁ ମଧ୍ୟ ଛୋଟବେଳୁ ଚାଷକାମ କରି ଆସିଅଛି । ଘରର ଚାପକୁ ଆଡେଇ ଦେବା ପାଇଁ ବାପାମା'ଙ୍କ ସାଥୀରେ ମୋତେ ମଧ୍ୟ ଅନେକ କଷ୍ଟ ସହିବାକୁ ପଡିଛି । କିଛି ଦିନ ତଳେ ଆମ ଗାଁକୁ ନିମନ ଚନ୍ଦ୍ର ଖରା (ଉପକେନ୍ଦ୍ର ନିର୍ଦ୍ଦେଶକ) ଭାଇ ଆସି ଅଗ୍ରଗାମୀ ତରଫରୁ ସ୍କୁଲ ଖୋଲିବା କଥା କହିଲେ । ଏହି ସମୟରେ ମୁଁ ଗାଁ ସାକ୍ଷରତା ପାଠ ପଢ଼ାଉଥାଏ । ଅଗ୍ରଗାମୀ ସ୍କୁଲ ଖୋଲିବା କଥା ଶୁଣି ମୁଁ ବହୁତ ଖୁସି ହେଲି ଏବଂ ଖୋଲୁଥିବା ସ୍କୁଲର ଶିକ୍ଷକ ହେବା ପାଇଁ ଦରଖାସ୍ତ ଦେଲି । ଏହାପରେ ମୋତେ ସାକ୍ଷାତକାର ପାଇଁ ଡାକିଲେ । ଆମ୍ଭେମାନେ ଏକ ପ୍ରକାରର ପରୀକ୍ଷା ମଧ୍ୟ ଦେଲୁ । ମୁଁ ସେଥିରେ ପାସ୍ କରିବା ପରେ ମୋତେ ମାର୍ଚ୍ଚ ତା ୪.୩.୯୮ରିଖଠାରୁ ତା: ୮.୩.୯୮ରିଖ ପର୍ଯ୍ୟନ୍ତ 'ଆଞ୍ଚଳିକ ପାଠ୍ୟପ୍ରସ୍ତୁତି ସମ୍ବନ୍ଧୀୟ କର୍ମଶାଳା'ରେ ଯୋଗ ଦେବା ପାଇଁ ଫୁଲବାଣୀ ଜିଲ୍ଲାର ଅଗ୍ରଗାମୀ, ଡେରାକୁମ୍ବାକୁ ଯିବାକୁ ପଡିଥିଲା । ସେଠାରୁ ଫେରିଲା ପରେ ତା: ୩୦.୩.୯୮ରିଖ ଦିନ ଶିକ୍ଷାକେନ୍ଦ୍ରରେ ପହଞ୍ଚିଲି ଏବଂ ମୋର

ପରିଚୟ ଏବଂ ଗାଁଲୋକଙ୍କ ସହ ପରିଚୟ ଆଦାନପ୍ରଦାନ ହୋଇଥିଲା ।

ବେଳଥିଲା ଅନେକ ସମୟରେ ଆମେ ଅନ୍ୟ ପାଖରେ ଦୁଇ ପଇସା ପାଇଁ ଗୋଡ ଭାଙ୍ଗି ଠିଆ ହେଉଥିଲୁ କିନ୍ତୁ ବର୍ତ୍ତମାନ ଆମେ ନିଜ ଗୋଡରେ ନିଜେ ଠିଆ ହୋଇ ଅନ୍ୟମାନଙ୍କୁ ସାହାଯ୍ୟ କରିପାରିଛୁ । ଅଗ୍ରଗାମୀର ଭାଇ ଭଉଣୀମାନେ ମଝିରେ ମଝିରେ ଆସି ଯେତିକି ଜଣାଉଛନ୍ତି ଓ ଅଗ୍ରଦୂତ, ଆରୋହଣ, ନୂଆପାଠ ନୂଆବାଟ ପତ୍ରିକା ମାଧ୍ୟମରେ ଯେତିକି ପ୍ରକାଶ ପାଉଛି ସେଥିରୁ ଅନେକ କିଛି ମିଳିପାରୁଛି । ସ୍କୁଲ ଚଳାଇବା ଫଳରେ ଧୀରେ ଧୀରେ ନିଜେ ଭଲ ଆଡକୁ ଗତି କରିବା ପାଇଁ ଚେଷ୍ଟା ଜାରି ରହିଛି । ଚାଲିବା ପାଇଁ ମୋତେ ଅନେକ ବାଟ ମିଳିଯିବା ପରି ଲାଗୁଛି । ମୋର ସାହସ ଧୀରେ ଧୀରେ ବଢ଼ିବାରେ ଲାଗିଛି । ମୁଁ ଯେଉଁ ଗାଁରେ ଗୁରୁଭାଇ ଅଛି ସତ କହିବାକୁ ଗଲେ ସେହି ଗାଁରେ ସରକାରୀ କିମ୍ବା ବେସରକାରୀ ସୁବିଧା କିଛି ନଥିଲା; ବର୍ତ୍ତମାନ ମଧ୍ୟ ନାହିଁ କିହଲେ ଚଳେ । ଯେଉଁ ଦୁଇଟି ସରକାରୀ ସାହାଯ୍ୟ ପାଇଥିଲେ ତାହା ଅଚଳ । ଆଜିକୁ ତିନିବର୍ଷ ତଳେ ଗୋଟିଏ ନଳକୂଅ ହୋଇଥିଲା । ସେଥିରୁ ଗୋଟିଏ ବର୍ଷ ପାଇଁ ମାତ୍ର ପାଣି ବାହାରିଥିଲା । ତା'ପରେ ଏବେ ଆଉ ସେଥିରୁ ମୋଟେ ପାଣି ବାହାରୁ ନାହିଁ । ଏହାକୁ ମୁଁ ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କୁ ଜଣାଇଲା ପରେ ପି.ଏଚ୍.ଡି. କାର୍ଯ୍ୟାଳୟରେ ୩ଥର ଜଣାଇଲି । ଏହାପରେ ସେମାନେ ଆସି ନଳକୂଅର ପାଇପ୍‌କୁ ନଖୋଲୁଣୁ କହିଲେ, ନଳକୂଅ ଆଉ ତିଆରି ହୋଇପାରିବ ନାହିଁ । ଭିତର ପାଇପ୍ ସବୁ ଫାଟି ଯାଇଛି, ଯାଅ ! ବି.ଡି.ଓଙ୍କୁ ଲେଖିକରି ଦିଅ । ଏହାପରେ ମୁଁ ଆମ ଗ୍ରାମ ପଞ୍ଚାୟତ ନଡାଲ୍ ଅଫିସର(ପି.ଏ.)ଙ୍କ ସହିତ ମିଶି ସବୁକଥା ଜଣାଇଲି । ପି.ଏ.ବାବୁ କହିଲେ ନଳକୂଅ ଆଉ ତିଆରି ହୋଇପାରିବ ନାହିଁ । ମୁଁ ସବୁ ରିପୋର୍ଟ ପାଇସାରିଛି । ସେଠାରେ କୂଅ ଖୋଳି ନଳକୂଅ ବସାହେବ । ଏହାକୁ ଆମର ଆକ୍‌ସନ୍ ପ୍ଲାନ୍‌ରେ ରଖିଛୁ । କିନ୍ତୁ ବର୍ତ୍ତମାନ ସୁଦ୍ଧା ସେ କାମଟି ହୋଇପାରିଲା ନାହିଁ । ମୁଁ ଭାବୁଛି ଏକତା ଓ ଶିକ୍ଷାର ଅଭାବ ଯୋଗୁଁ ସରାକରୀ ଅଫିସରମାନେ ଏପରି ଲୋକଙ୍କୁ ଭୁଆଁ ବୁଲାଇବାରେ ଲାଗିଛନ୍ତି । ଗାଁଲୋକ ଯଦି ଶିକ୍ଷିତ ହୋଇଥାନ୍ତେ ତେବେ ଏପରି ହନ୍ତସନ୍ତ ହେବାକୁ ପଡନ୍ତା ନାହିଁ । ଏହିପରି ଅନେକ ସରକାରୀ ବିଦ୍ୟାଳୟ ମଧ୍ୟ ଅଚଳ ହୋଇ ପଡିଛି । ଆଜିକୁ ୫ ବର୍ଷ ପୂର୍ବେ ସରକାରୀ ଶିକ୍ଷକ ଥିଲେ ମଧ୍ୟ ଶିକ୍ଷକମାନଙ୍କୁ ଗାଁଲୋକ କେହି ଜାଣି ନାହାନ୍ତି କି ଚିହ୍ନି ନାହାନ୍ତି ! ମୁଁ ଥରେ ସେହି ଶିକ୍ଷକଙ୍କୁ ବ୍ଲକ୍ ଅଫିସରେ ଭେଟିଥିଲି ଓ ପଚାରିଲି, "ଆଜ୍ଞା, ଆପଣ ବଲଦିଆଗୁଡା ଗାଁରେ ଶିକ୍ଷକ ଅଛନ୍ତି କି ?" ସେ ପଚାରିଲେ, "କାହିଁକି ?" ମୁଁ କହିଲି, "ଅନ୍ୟ ସବୁ

ସ୍କୁଲରେ ପିଲାଙ୍କୁ ମଧ୍ୟାହ୍ନ ଭୋଜନ ରାନ୍ଧି ଦିଆଯାଉଛି । କାଇଁ ବଳଦିଆଗୁଡା ସ୍କୁଲରେ ତ' କିଛି ଦିଆଯାଉନାହିଁ । ସେପରି ହେଲେ ପିଲାମାନେ ପଢ଼ିବାକୁ ମନ କରନ୍ତେ ।" ସେ କହିଲେ, "ତୁ କିଏ ?" ମୋ ନାମରେ ଯଦି ଅଭିଯୋଗ କରିବୁ, ତାହାହେଲେ ତୋତେ... । ତୋର କି ଗଲା ? ତୁ ପଢ଼ାଉନୁ । ଏସବୁ ଭାଷା ଶୁଣିବା ପରେ ମୁଁ ଗାଁକୁ ଯାଇ ଜଣାଇଲି । ଗାଁଲୋକଙ୍କୁ ମଧ୍ୟ ସିଏ ସେମିତି କହେ ବୋଲି ସମସ୍ତେ କହିଲେ । ଏହାପରେ ମୁଁ କହିଲି 'ମୁଁ ଅପେକ୍ଷାରେ ଅଛି । ଦିନେ ନା ଦିନେ ସେମାନେ ଆସି ଏ ଗାଁରେ ରହିବେ, କୁଆଡେ ଯିବେ !' ପିଲାମାନେ ମଧ୍ୟ ଶିଶୁ ଖାଦ୍ୟ ପାଇପାରୁନଥିଲେ । ମୁଁ ନିଜେ ଅଙ୍ଗନୱାଡି କେନ୍ଦ୍ରକୁ ଯାଇ କହିଲି, ତୁ ଶିଶୁଖାଦ୍ୟ ଓ ବୁଢ଼ାବୁଢ଼ୀ ଖାଦ୍ୟ ଯଦି ନପଠାଇବୁ, ତେବେ ସମସ୍ତେ ମିଶି ଆମେ ଏଥିପାଇଁ ବ୍ଲକରେ ଯାଇ କହିବୁ । ଏହାପରେ ସେ ଆଜିପର୍ଯ୍ୟନ୍ତ କିଛି ଖାଦ୍ୟ ଯୋଗାଉଛି ।

ଆମ ଗାଁରେ ଆଜି ପର୍ଯ୍ୟନ୍ତ ପଞ୍ଚାୟତ ରାସ୍ତା ମଧ୍ୟ ହୋଇନାହିଁ । ଗତ ୨ ମାସ ଭିତରେ ସରପଞ୍ଚଙ୍କୁ ଲେଖି ଜଣାଇବାରୁ ସେ ଅଧାରାସ୍ତା ତିଆରି କରାଇଛନ୍ତି । ପଇସା ନାହିଁ ବୋଲି ଗାଁରେ ପହଞ୍ଚାଇ ପାରିନାହାନ୍ତି । ଏହି ରାସ୍ତାକାମ ନିଶ୍ଚୟ ସମ୍ପୂର୍ଣ୍ଣ ହେବ ବୋଲି ମୋର ବିଶ୍ୱାସ ।

ଗୁରୁଭାଇ ହିସାବରେ ଆମେ ଖାଲି ସ୍କୁଲ କରିଦେଲେ ହେବ ନାହିଁ କିମ୍ବା ପିଲାଙ୍କୁ ପାଠପଢ଼ାଇ ଦେଲେ ସବୁ କିଛିର ସମାଧାନ ହୋଇଯିବ ନାହିଁ; ଲୋକମାନେ ଭଲ ଖାଇବାକୁ ପାଇବେ ନାହିଁ । ଗାଁକୁ ଆଖି ଆଗରେ ରଖି ଆମେ ଗାଁର ଅନ୍ୟାନ୍ୟ ବିଷୟ ପ୍ରତି ମଧ୍ୟ ଧ୍ୟାନ ଦେବାକୁ ପଡିବ । ଲୋକମାନେ ଯେତେ ପରିଶ୍ରମ କଲେ ମଧ୍ୟ ଯଦି ଏହିଭଳି ଠକେଇ, ଶୋଷଣ, ଦୁର୍ନୀତି, ଅତ୍ୟାଚାରରୁ ରକ୍ଷା ନ ପାଇପାରିବେ ତେବେ ସେମାନେ ସେମାନଙ୍କ ପିଲାମାନଙ୍କୁ ପାଠ ପଢ଼ାଇବେ କିପରି ? ଭବିଷ୍ୟତରେ ପିଲାମାନେ ମଧ୍ୟ ସେହି ଅନ୍ୟାୟ ଅତ୍ୟାଚାର କବଳରେ ପଡି ଛଟପଟ ହେବା ହିଁ ସାର ହେବ । ଏକଥା ମଧ୍ୟ ଆମକୁ ବୁଝିବାକୁ ପଡିବ । ଗାଁର ସ୍କୁଲ ପାଣ୍ଠି, କୁଟୁମ୍ବପାଣ୍ଠି, ପିଇବା ପାଣି, ସ୍ୱାସ୍ଥ୍ୟ ତଥା ସରକାରୀ, ବେସରକାରୀ ଯୋଜନା ବିଷୟରେ ଲୋକମାନେ ଜାଣିବା ସଂଗେ ସଂଗେ ଏହାକୁ କିପରି କାର୍ଯ୍ୟକାରୀ କରିପାରିବେ ସେଥିପାଇଁ ଆମକୁ ସବୁବେଳେ ସେମାନଙ୍କ ଉପରେ ନଜର ରଖିବାକୁ ପଡିବ ଓ ସଚେତନ କରାଇବାକୁ ପଡିବ । ବିଶେଷକରି ଲୋକମାନେ ସେମାନଙ୍କର ଅଧିକାର ପ୍ରତି ସଚେତନ ହେବା ଦରକାର ।

ଏବେ ମୁଁ ଆମ ଗାଁ ଓ ସ୍କୁଲର ଅବସ୍ଥା ବିଷୟରେ କିଛି କହୁଛି । ଏହି ଗାଁର ବର୍ତ୍ତମାନ ୩୦ ଘର ଆଦିବାସୀ ଅଛନ୍ତି । ବର୍ତ୍ତମାନ ମୋଟ ଲୋକସଂଖ୍ୟା- ୧୬୫ଜଣ ।

ପରିଚୟ ଏବଂ ଗାଁଲୋକଙ୍କ ସହ ପରିଚୟ ଆଦାନପ୍ରଦାନ ହୋଇଥିଲା ।

ବେଳଥିଲା ଅନେକ ସମୟରେ ଆମେ ଅନ୍ୟ ପାଖରେ ଦୁଇ ପଇସା ପାଇଁ ଗୋଡ ଭାଙ୍ଗି ଠିଆ ହେଉଥିଲୁ କିନ୍ତୁ ବର୍ତ୍ତମାନ ଆମେ ନିଜ ଗୋଡରେ ନିଜେ ଠିଆ ହୋଇ ଅନ୍ୟମାନଙ୍କୁ ସାହାଯ୍ୟ କରିପାରିଛୁ । ଅଗ୍ରଗାମୀର ଭାଇ ଭଉଣୀମାନେ ମଝିରେ ମଝିରେ ଆସି ଯେତିକି ଜଣାଉଛନ୍ତି ଓ ଅଗ୍ରଦୂତ, ଆରୋହଣ, ନୂଆପାଠ ନୂଆବାଟ ପତ୍ରିକା ମାଧ୍ୟମରେ ଯେତିକି ପ୍ରକାଶ ପାଉଛି ସେଥିରୁ ଅନେକ କିଛି ମିଳିପାରୁଛି । ସ୍କୁଲ ଚଳାଇବା ଫଳରେ ଧୀରେ ଧୀରେ ନିଜେ ଭଲ ଆଡକୁ ଗତି କରିବା ପାଇଁ ଚେଷ୍ଟା ଜାରି ରହିଛି । ଚାଲିବା ପାଇଁ ମୋତେ ଅନେକ ବାଟ ମିଳିଯିବା ପରି ଲାଗୁଛି । ମୋର ସାହସ ଧୀରେ ଧୀରେ ବଢ଼ିବାରେ ଲାଗିଛି । ମୁଁ ଯେଉଁ ଗାଁରେ ଗୁରୁଭାଇ ଅଛି ସତ କହିବାକୁ ଗଲେ ସେହି ଗାଁରେ ସରକାରୀ କିମ୍ବା ବେସରକାରୀ ସୁବିଧା କିଛି ନଥିଲା; ବର୍ତ୍ତମାନ ମଧ୍ୟ ନାହିଁ କହିଲେ ଚଳେ । ଯେଉଁ ଦୁଇଟି ସରକାରୀ ସାହାଯ୍ୟ ପାଇଥିଲେ ତାହା ଅଚଳ । ଆଜିକୁ ତିନିବର୍ଷ ତଳେ ଗୋଟିଏ ନଳକୂଅ ହୋଇଥିଲା । ସେଥିରୁ ଗୋଟିଏ ବର୍ଷ ପାଇଁ ମାତ୍ର ପାଣି ବାହାରିଥିଲା । ତା'ପରେ ଏବେ ଆଉ ସେଥିରୁ ମୋଟେ ପାଣି ବାହାରୁ ନାହିଁ । ଏହାକୁ ମୁଁ ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କୁ ଜଣାଇଲା ପରେ ପି.ଏଚ୍.ଡି. କାର୍ଯ୍ୟାଳୟରେ ୩ଥର ଜଣାଇଲି । ଏହାପରେ ସେମାନେ ଆସି ନଳକୂଅର ପାଇପ୍‌କୁ ନଖୋଲୁଣୁ କହିଲେ, ନଳକୂଅ ଆଉ ତିଆରି ହୋଇପାରିବ ନାହିଁ । ଭିତର ପାଇପ୍ ସବୁ ଫାଟି ଯାଇଛି, ଯାଅ ! ବି.ଡି.ଓଙ୍କୁ ଲେଖିକରି ଦିଅ । ଏହାପରେ ମୁଁ ଆମ ଗ୍ରାମ ପଞ୍ଚାୟତ ନଡାଲ୍ ଅଫିସର(ପି.ଏ.)ଙ୍କ ସହିତ ମିଶି ସବୁକଥା ଜଣାଇଲି । ପି.ଏ.ବାବୁ କହିଲେ ନଳକୂଅ ଆଉ ତିଆରି ହୋଇପାରିବ ନାହିଁ । ମୁଁ ସବୁ ରିପୋର୍ଟ ପାଇସାରିଛି । ସେଠାରେ କୂଅ ଖୋଳି ନଳକୂଅ ବସାହେବ । ଏହାକୁ ଆମର ଆକ୍‌ସନ୍ ପ୍ଲାନ୍‌ରେ ରଖିଛୁ । କିନ୍ତୁ ବର୍ତ୍ତମାନ ସୁଦ୍ଧା ସେ କାମଟି ହୋଇପାରିଲା ନାହିଁ । ମୁଁ ଭାବୁଛି ଏକତା ଓ ଶିକ୍ଷାର ଅଭାବ ଯୋଗୁଁ ସରାକରୀ ଅଫିସରମାନେ ଏପରି ଲୋକଙ୍କୁ ଭୁଆଁ ବୁଲାଇବାରେ ଲାଗିଛନ୍ତି । ଗାଁଲୋକ ଯଦି ଶିକ୍ଷିତ ହୋଇଥାନ୍ତେ ତେବେ ଏପରି ହନ୍ତସନ୍ତ ହେବାକୁ ପଡନ୍ତା ନାହିଁ । ଏହିପରି ଅନେକ ସରକାରୀ ବିଦ୍ୟାଳୟ ମଧ୍ୟ ଅଚଳ ହୋଇ ପଡିଛି । ଆଜିକୁ ୫ ବର୍ଷ ପୂର୍ବେ ସରକାରୀ ଶିକ୍ଷକ ଥିଲେ ମଧ୍ୟ ଶିକ୍ଷକମାନଙ୍କୁ ଗାଁଲୋକ କେହି ଜାଣି ନାହାନ୍ତି କି ଚିହ୍ନି ନାହାନ୍ତି ! ମୁଁ ଥରେ ସେହି ଶିକ୍ଷକଙ୍କୁ ବ୍ଲକ୍ ଅଫିସରେ ଭେଟିଥିଲି ଓ ପଚାରିଲି, "ଆଜ୍ଞା, ଆପଣ ବଲଦିଆଗୁଡା ଗାଁରେ ଶିକ୍ଷକ ଅଛନ୍ତି କି ?" ସେ ପଚାରିଲେ, "କାହିଁକି ?" ମୁଁ କହିଲି, "ଅନ୍ୟ ସବୁ

ସ୍କୁଲରେ ପିଲାଙ୍କୁ ମଧ୍ୟାହ୍ନ ଭୋଜନ ରାନ୍ଧି ଦିଆଯାଉଛି । କାଇଁ ବଳଦିଆଗୁଡା ସ୍କୁଲରେ ତ' କିଛି ଦିଆଯାଉନାହିଁ । ସେପରି ହେଲେ ପିଲାମାନେ ପଢ଼ିବାକୁ ମନ କରନ୍ତେ ।" ସେ କହିଲେ, "ତୁ କିଏ ?" ମୋ ନାମରେ ଯଦି ଅଭିଯୋଗ କରିବୁ, ତାହାହେଲେ ତୋତେ... । ତୋର କି ଗଲା ? ତୁ ପଢ଼ାଉନୁ । ଏସବୁ ଭାଷା ଶୁଣିବା ପରେ ମୁଁ ଗାଁକୁ ଯାଇ ଜଣାଇଲି । ଗାଁଲୋକଙ୍କୁ ମଧ୍ୟ ସିଏ ସେମିତି କହେ ବୋଲି ସମସ୍ତେ କହିଲେ । ଏହାପରେ ମୁଁ କହିଲି 'ମୁଁ ଅପେକ୍ଷାରେ ଅଛି । ଦିନେ ନା ଦିନେ ସେମାନେ ଆସି ଏ ଗାଁରେ ରହିବେ, କୁଆଡେ ଯିବେ !' ପିଲାମାନେ ମଧ୍ୟ ଶିଶୁ ଖାଦ୍ୟ ପାଇପାରୁନଥିଲେ । ମୁଁ ନିଜେ ଅଙ୍ଗନଓ୍ୱାଡି କେନ୍ଦ୍ରକୁ ଯାଇ କହିଲି, ତୁ ଶିଶୁଖାଦ୍ୟ ଓ ବୁଢ଼ାବୁଢ଼ୀ ଖାଦ୍ୟ ଯଦି ନପଠାଇବୁ, ତେବେ ସମସ୍ତେ ମିଶି ଆମେ ଏଥିପାଇଁ ବ୍ଲକରେ ଯାଇ କହିବୁ । ଏହାପରେ ସେ ଆଜିପର୍ଯ୍ୟନ୍ତ କିଛି ଖାଦ୍ୟ ଯୋଗାଉଛି ।

ଆମ ଗାଁରେ ଆଜି ପର୍ଯ୍ୟନ୍ତ ପଞ୍ଚାୟତ ରାସ୍ତା ମଧ୍ୟ ହୋଇନାହିଁ । ଗତ ୨ ମାସ ଭିତରେ ସରପଞ୍ଚକୁ ଲେଖି ଜଣାଇବାରୁ ସେ ଅଧାରାସ୍ତା ତିଆରି କରାଇଛନ୍ତି । ପଇସା ନାହିଁ ବୋଲି ଗାଁରେ ପହଞ୍ଚାଇ ପାରିନାହାନ୍ତି । ଏହି ରାସ୍ତାକାମ ନିଶ୍ଚୟ ସମ୍ପୂର୍ଣ୍ଣ ହେବ ବୋଲି ମୋର ବିଶ୍ୱାସ ।

ଗୁରୁଭାଇ ହିସାବରେ ଆମେ ଖାଲି ସ୍କୁଲ କରିଦେଲେ ହେବ ନାହିଁ କିମ୍ବା ପିଲାଙ୍କୁ ପାଠପଢ଼ାଇ ଦେଲେ ସବୁ କିଛିର ସମାଧାନ ହୋଇଯିବ ନାହିଁ; ଲୋକମାନେ ଭଲ ଖାଇବାକୁ ପାଇବେ ନାହିଁ । ଗାଁକୁ ଆଖି ଆଗରେ ରଖି ଆମେ ଗାଁର ଅନ୍ୟାନ୍ୟ ବିଷୟ ପ୍ରତି ମଧ୍ୟ ଧ୍ୟାନ ଦେବାକୁ ପଡିବ । ଲୋକମାନେ ଯେତେ ପରିଶ୍ରମ କଲେ ମଧ୍ୟ ଯଦି ଏହିଭଳି ଠକେଇ, ଶୋଷଣ, ଦୁର୍ନୀତି, ଅତ୍ୟାଚାରରୁ ରକ୍ଷା ନ ପାଇପାରିବେ ତେବେ ସେମାନେ ସେମାନଙ୍କ ପିଲାମାନଙ୍କୁ ପାଠ ପଢ଼ାଇବେ କିପରି ? ଭବିଷ୍ୟତରେ ପିଲାମାନେ ମଧ୍ୟ ସେହି ଅନ୍ୟାୟ ଅତ୍ୟାଚାର କବଳରେ ପଡି ଛଟପଟ ହେବା ହିଁ ସାର ହେବ । ଏକଥା ମଧ୍ୟ ଆମକୁ ବୁଝିବାକୁ ପଡିବ । ଗାଁର ସ୍କୁଲ ପାଣ୍ଠି, କୁଟୁମ୍ବପାଣ୍ଠି, ପିଇବା ପାଣି, ସ୍ୱାସ୍ଥ୍ୟ ତଥା ସରକାରୀ, ବେସରକାରୀ ଯୋଜନା ବିଷୟରେ ଲୋକମାନେ ଜାଣିବା ସଂଗେ ସଂଗେ ଏହାକୁ କିପରି କାର୍ଯ୍ୟକାରୀ କରିପାରିବେ ସେଥିପାଇଁ ଆମକୁ ସବୁବେଳେ ସେମାନଙ୍କ ଉପରେ ନଜର ରଖିବାକୁ ପଡିବ ଓ ସଚେତନ କରାଇବାକୁ ପଡିବ । ବିଶେଷକରି ଲୋକମାନେ ସେମାନଙ୍କର ଅଧିକାର ପ୍ରତି ସଚେତନ ହେବା ଦରକାର ।

ଏବେ ମୁଁ ଆମ ଗାଁ ଓ ସ୍କୁଲର ଅବସ୍ଥା ବିଷୟରେ କିଛି କହୁଛି । ଏହି ଗାଁର ବର୍ତ୍ତମାନ ୩୦ ଘର ଆଦିବାସୀ ଅଛନ୍ତି । ବର୍ତ୍ତମାନ ମୋଟ ଲୋକସଂଖ୍ୟା- ୧୬୫ଜଣ ।

ସ୍ଲେଟ୍‌ରେ ଅ, ଆ ଲେଖିଦେଲେ ତାକୁ ଗାରେଇ ଗାରେଇ ବସିବା ପାଇଁ ତାକୁ ବହୁତ କଷ୍ଟ ଲାଗିବ । ତେଣୁ ତାକୁ ସ୍ଲେଟ୍‌ରେ ଅ, ଆ ଲେଖି ନଦେଇ ପ୍ରଥମେ ସିଧା ଗାର ଟାଣିବା ପାଇଁ କହିବା । ଶୂନ କରିବା ପାଇଁ କହିବା ଓ ଆମେ ନିଜେ କରି ଦେଖାଇଦେବା । ଏହିପରି ବିଭିନ୍ନ ପ୍ରକାର ଗାରେଇବାର ଦେଖାଇଦେଲେ ପିଲାଟି ସହଜରେ ଗାରେଇ ଚାଲିବ । ଗାରେଇ ଗାରେଇ ହାତଟି ଅଭ୍ୟାସ ହେଲାପରେ ଓ ଭଲଭାବରେ ଖଡି ଧରିପାରିଲା ପରେ ଗାରେଇବା ମାଧ୍ୟମରେ ଅକ୍ଷର ଲେଖିପାରିବ । ଏହାପରେ ସେ ସବୁଦିନ ଦେଖୁଥିବା ବସ୍ତୁକୁ ଦେଖାଇ ତାହାର ନାମ ପଚାରି ସ୍ଲେଟ୍‌ରେ ଲେଖିଦେଲେ ପିଲାଟି ଶୀଘ୍ର ଅକ୍ଷର ଶିଖି ପାରିବ । ମନେକର ପିଲାଟି ଗଛ ସବୁଦିନ ଦେଖୁଛି । ଗଛ ଲେଖି ଶିଖିଲା, ଘର ଦେଖୁଛି ଘର ଲେଖି ଶିଖିଲା । ଏହିପରି ଯେଉଁ ବସ୍ତୁ ଦେଖିଲା ତାହାର ନାମ କହିଲା ଓ ଲେଖି ଶିଖିଲା । ତା'ପରେ ତାକୁ ଧାଡିରେ ଅକ୍ଷର ଲେଖିବା ପାଇଁ ଶିଖାଇବା । ଏହାଦ୍ୱାରା ପିଲାମାନେ ଶୀଘ୍ର ଅକ୍ଷର ଶିଖି ପାରିବେ ।

**ଗପ ମାଧ୍ୟମରେ ଶିକ୍ଷା:**

ଶିକ୍ଷାଦାନ ସମୟରେ ଗପ ଆମକୁ ବହୁତ ସାହାଯ୍ୟ କରେ । ଯେଉଁ ବିଷୟରେ ଆମେ ପଢ଼ାଉଥିବା ସମୟରେ ପିଲାମାନେ ଶୁଣି ଶୁଣି ବିରକ୍ତ ହୋଇଯାନ୍ତି, ପଢଉଥିବା ବିଷୟକୁ ମଧ୍ୟ ଭଲଭାବରେ ଶୁଣନ୍ତି ନାହିଁ କିମ୍ବା ମନେ ରଖିପାରନ୍ତି ନାହିଁ । ତେଣୁ ସେହି ସମୟରେ ଗପ କହିବା ଆରମ୍ଭ କରିଦେଲେ ପିଲାମାନେ ଗପ ଶୁଣିବା ପାଇଁ ଆଗ୍ରହୀ ହୁଅନ୍ତି । ଗପ କହିବା ସମୟରେ ମଧ୍ୟ ମଝିରେ ମଝିରେ ପ୍ରଶ୍ନ ପଚାରୁଥିବା ଦରକାର କାରଣ ପିଲାମାନେ ଠିକ୍ ଭାବରେ ଗପ ଶୁଣୁଛନ୍ତି କି ନାହିଁ, ତାହା ଜଣାପଡିବ । ଗପ ମଧ୍ୟ ପିଲାମାନଙ୍କୁ କିଛି ଶିକ୍ଷା ଦେଇଥାଏ । ଆମେ ଯେଉଁ ଗପ କହିବା ତାହା ଶିକ୍ଷା ଉପରେ ଆଧାରିତ ହୋଇଥିବା ଦରକାର । ଠକେଇ, ଶୋଷଣ, ପରଉପକାର, ଏହିପରି ଅନେକ ବିଷୟରେ ଗପ କହି ପିଲାମାନଙ୍କୁ ଶିଖାଇଲେ ପିଲାମାନେ ସେଥିରୁ କିଛି ଭଲ କଥା ଶିଖି ପାରିବେ । ପିଲାମାନେ ଗପଶିଖି ଗପ କହିପାରିଲେ ସେମାନଙ୍କର କଥା କହିବାର ସାହସ ବଢ଼ିଥାଏ । ତେଣୁ ଆମେ ପାଠ ପଢାଇବା ସମୟରେ ଗପ ମଧ୍ୟ ଆମକୁ ପଢାଇବା ପାଇଁ ସାହାଯ୍ୟ କରୁଛି । ଏଥିପାଇଁ ଆମେ ପାଠ ପଢାଇବା ସମୟରେ ଗପର ସାହାଯ୍ୟ ନେବାକୁ ପଡୁଛି ।

## ଗୀତ ମାଧ୍ୟମରେ ଶିକ୍ଷା:

ପିଲାମାନଙ୍କ ମନରେ ଚଞ୍ଚଳତା ଓ ଆଗ୍ରହ ସୃଷ୍ଟି କରିବା ପାଇଁ ଆମେ ସ୍କୁଲରେ ଗୀତ ଗାଇଥାଉ । ଗୀତ ଶୁଣିଲେ ପିଲାମାନେ ଆଗ୍ରହୀ ହୁଅନ୍ତି ଓ ସେମାନଙ୍କ ମନ ପ୍ରଫୁଲ୍ଲ ହୋଇଯାଏ । ଯେଉଁ ପିଲାମାନେ ସ୍କୁଲରେ ପାଠପଢ଼ା ସମୟରେ ଢୁଳୋଉଥାନ୍ତି, ସେମାନେ ମଧ୍ୟ ଗୀତ ଶୁଣିଲେ ଉଠି ପଡନ୍ତି । ଗୀତ ମାଧ୍ୟମରେ ଆମେ ପିଲାମାନଙ୍କୁ ପରିବେଶ, ବିଜ୍ଞାନ, ଠକେଇ, ଶୋଷଣ ଓ ଅନେକ ବିଷୟରେ ଶିକ୍ଷା ଦେଇପାରିବା । ଯେଉଁ ବିଷୟରେ ଆମେ ଗୀତ ଗାଇଲୁ ସେହି ବିଷୟରେ ପିଲାମାନଙ୍କୁ ବୁଝାଇଦେଲେ ସେମାନେ କଥାଟିକୁ ବା ବିଷୟଟିକୁ ଭଲଭାବରେ ବୁଝିପାରିବେ । ଗୀତ ଶିଖାଇବା ଦ୍ୱାରା ପିଲାମାନଙ୍କର ମନରୁ ଲାଜ, ଡର, ଭୟ ଦୁର ହୋଇଥାଏ । ପିଲାଟି ନିର୍ଭୟରେ କଥା କହିପାରିବ ଓ ଗୀତ ଗାଇପାରିବ । ଏଥିପାଇଁ ପାଠ ପଢାଇବା ସମୟରେ ଗୀତର ସାହାଯ୍ୟ ନେବାକୁ ପଡିଥାଏ ।

ସୁଖିରାମ ସଗରିଆ
ନବସୃଜନ ଶିକ୍ଷାକେନ୍ଦ୍ର
ଖଜୁରୀ ଗୁମ୍ମା, ମାଲକାନଗିରି



# ମୋ ଶିକ୍ଷାକେନ୍ଦ୍ର ସମସ୍ୟା

ଆଜିକୁ ଦୁଇ ବର୍ଷ ସାତ ମାସ ହେଲା ଅଗ୍ରଗାମୀ କାଶୀପୁର ପ୍ରକଳ୍ପର ଶିରିପାଇ ଉପକେନ୍ଦ୍ର ଶିକପାଇ ଗାଁରେ ନବସୃଜନ ଶିକ୍ଷାକେନ୍ଦ୍ରରେ ମୁଁ ଗୁରୁଭାଇ ରୂପେ କାମ କରୁଛି । ଏହି ଗାଁରେ ମୁଁ ରହୁଛି । ସେହି ଦିନରୁ ଏହି ଗାଁରେ କି କି ସମସ୍ୟା ରହିଛି, ଲୋକମାନଙ୍କ ଭିତରେ କି କି ପରିବର୍ତ୍ତନ ଦେଖାଦେଉଛି, ତାହା ଜାଣି ହେଉଛି ।

ଏହି ଗାଁଟି ପଶ୍ଚିମ ଦିଗରେ ଥିବା ଗୋଟିଏ ପାହାଡକୁ ଲାଗି ରହିଛି । ଗାଁର ଚାରି ଦିଗରେ ଜଙ୍ଗଲ ଘେରି ହୋଇ ରହିଛି । ମୁଁ ପ୍ରଥମେ ଯେତେବେଳେ ଏହି ଗାଁକୁ ଆସିଲି ମୋତେ ବହୁତ ଅଡୁଆ ଲାଗୁଥିଲା । ଏମିତି ଜଙ୍ଗଲ ଗାଁରେ ମୁଁ କେବେ ଏତେ ଦିନ କଟାଇ ନଥିଲି କି ବୁଲାବୁଲି କରି ନଥିଲି । ପ୍ରକୃତରେ କହିବାକୁ ଗଲେ ମୁଁ ଯିବା ଆସିବା କରିବା ପାଇଁ ବି ଡରୁଥିଲି । ତେଣୁ ଗୋରଖପୁର ଆସିବାର ଥିଲେ ବଜାର ଦିନ ଲୋକଙ୍କ ସହିତ ଆସୁଥିଲି ନହେଲେ ଜଣକୁ ମାରିଭଟ୍ଟା ଗାଁ ପର୍ଯ୍ୟନ୍ତ ଖେଟାଇ ଦେବା ପାଇଁ କହୁଥିଲି । ସେମାନେ ଖେଟାଇ ଦେଇ ଆସୁଥିଲେ । କିନ୍ତୁ ପରେ ଲୋକଙ୍କ ସହିତ, ପିଲାଙ୍କ ସହିତ ମିଶିବା ପରେ ଏସବୁ ପୂରା ଠିକ୍ ହୋଇଗଲା । ମୋ ମନ ଭିତରୁ ଡରଭୟ ସବୁ କୁଆଡେ ଚାଲିଗଲା । ସ୍କୁଲ ଘର ନଥିବାରୁ ଜଣଙ୍କ ଘରେ ରହୁଥିଲି ଓ ତାଙ୍କ ଘରେ ହିଁ ଖାଉଥିଲି । ପିଲାମାନଙ୍କୁ ପାଠ ପଢ଼ାଇବା ପାଇଁ ମଧ୍ୟ ବଡ ଅସୁବିଧା ହେଉଥିଲା । ଗାଁ ମୁଣ୍ଡରେ ପଣସ ଗଛ ମୂଳରେ ବସାଇ ପିଲାଙ୍କୁ ପଢ଼ାଉଥିଲି । ଶିକ୍ଷା କମିଟି ସଭ୍ୟସଭ୍ୟାଙ୍କ ସହିତ ଏ ବିଷୟରେ ବାରମ୍ବାର ବୈଠକ କଲି । ମାସେ ପରେ ଗାଁ ଲୋକଙ୍କ ସହିତ ମିଶି ଆମେ ଦୁଇଟି ଘର ତିଆରି କରିଥିଲୁ । ତଥାପି ପିଲାମାନଙ୍କୁ ପାଠ ପଢାଇବା ପାଇଁ ଅସୁବିଧା ହେଲା । ଶିକ୍ଷାସାମଗ୍ରୀ ଦିଆଯାଇ ନଥିଲା । ପିଲାମାନେ ଓଡ଼ିଆ ଭାଷା ପ୍ରାୟ ବୁଝି ପାରୁ ନଥିଲେ । ଓଡ଼ିଆରେ କହି କୁଇ ଭାଷାରେ ଅନୁବାଦ କରିବାକୁ ପଡୁଥିଲା । ଛୋଟ ପିଲାମାନଙ୍କ ଠାରୁ ଆରମ୍ଭ କରି

ବଡଲୋକମାନଙ୍କ ପର୍ଯ୍ୟନ୍ତ ଗୁଡ଼ାଖୁ, ଧୂଆଁପତ୍ର, ଗଞ୍ଜେଇ ଇତ୍ୟାଦି ନିଶାଦ୍ରବ୍ୟ ବ୍ୟବହାର କରୁଥିବାର ମୁଁ ଦେଖୁଥିଲି । ଏସବୁ କିଣିବା ପାଇଁ ସେମାନେ ପଇସାପତ୍ର ବ୍ୟତୀତ ବହୁ କଷ୍ଟରେ ଅମଳ କରିଥିବା ଧାନ, ମାଣ୍ଡିଆ ଆଦି ଜିନିଷକୁ ମଧ୍ୟ ଦେଇ ଦେଉଥିଲେ । ମୁଁ ଏ ବିଷୟରେ ବାପାମା'ମାନଙ୍କୁ ବାରମ୍ବାର ବୁଝାଇଲି । ପିଲାମାନଙ୍କୁ ମଧ ପ୍ରତ୍ୟକ୍ଷ ଭାବେ ଓ ପରୋକ୍ଷ ଭାବେ ଏହାର କୁପରିଣାମ ସମ୍ପର୍କରେ ବୁଝାଉଥିଲି । ବର୍ତ୍ତମାନ ପୂରାପୁରି ନହେଲେ ବି ନିଶ୍ଚୟ କିଛି ପରିମାଣରେ ଏସବୁ ନିଶାସେବନ କମିଛି ।

ଏହି ଗାଁରେ ସାକ୍ଷର ଆଦୌ ନାହାନ୍ତି କହିଲେ କିଛି ଭୁଲ୍ ହେବ ନାହିଁ । କେବଳ ପାଞ୍ଚ ଛ'ଜଣ ଦସ୍ତଖତ କରି ଶିଖିଥିଲେ । ବର୍ତ୍ତମାନ ପ୍ରାୟ ୫୦ ଜଣ ବାପା ମା' ଦସ୍ତଖତ କରିପାରୁଛନ୍ତି ଓ ବହି ପଢ଼ିପାରୁଛନ୍ତି ।

ପ୍ରଥମ ବର୍ଷ ପିଲାମାନେ ପନିପରିବା ଚାଷ କରି ସେମାନଙ୍କ ଶିଶୁ ପାଣ୍ଠିରେ ୧୦୦ଟଙ୍କା ରଖିଛନ୍ତି । ଋଣ ଆକାରରେ ଜଣକୁ ଦେଇଛନ୍ତି । ଏହି ଟଙ୍କା ବଢ଼ିଲେ ପିଲାଙ୍କ ପାଇଁ କିଛି ନୂଆ ଜିନିଷ କିଣା ହୋଇପାରିବ ବୋଲି ମୁଁ ଆଶା ରଖିଛି ।

ମୁଁ ଏଥର ଗାଁ ବିଷୟରେ କିଛି ଲେଖୁଛି । ପ୍ରତ୍ୟେକ ଆଦିବାସୀ ଗାଁ ପରି ଏହି ଗାଁର ମଧ୍ୟ ବଡ ସମସ୍ୟା ହେଲା ଅନ୍ଧବିଶ୍ୱାସ । ଏବେ ଗୋଟିଏ ଘଟଣା କହୁଛି ଯେଉଁଥିରୁ ଏ କଥା ଭଲ ଭାବେ ବୁଝି ହେବ । ମୁଁ ଏହି ଶିକପାଇ ଗାଁକୁ ଆସି ପାଞ୍ଚମାସ ହେଉଥିଲା, ଅଗ୍ରଗାମୀ କାଶୀପୁରଠାରେ ନବସୃଜନ ଶିକ୍ଷାକେନ୍ଦ୍ରର ଗୁରୁଭାଇ ଭଉଣୀମାନଙ୍କପାଇଁ ଏକ ୫ ଦିନିଆ ତାଲିମ୍ ଶିବିରର ଆୟୋଜନ ହୋଇଥିଲା । ମୁଁ ଏଥିରେ ଯୋଗ ଦେବା ପାଇଁ କାଶୀପୁର ଚାଲିଗଲି । ତାଲିମ୍ ଶିବିର ସରିଲା ପରେ ଶିକ୍ଷାକେନ୍ଦ୍ରକୁ ଆସି ଶୁଣିଲି ଯେ ତିନି ଜଣ ପିଲା ଝା'ଭିତରେ ମୃତ୍ୟୁବରଣ କରିଛନ୍ତି । ମୁଁ ଏହାଶୁଣି ଅତିଶୟ ଆଶ୍ଚର୍ଯ୍ୟ ହେଲି ଓ ଦୁଃଖିତ ହେଲି । ମୁଁ ବାପାମା'ମାନଙ୍କୁ କହିଲି ଯେ ତୁମେମାନେ ସେମାନଙ୍କୁ ଡାକ୍ତରଖାନା କାହିଁକି ନେଲ ନାହିଁ । କେତେ ଜଣ କହିଲେ ପଇସାପତ୍ର ନଥିଲା । କିନ୍ତୁ ପରେ ବୁଝିବାରୁ ଜଣାପଡିଲା ଯେ ସେମାନେ ସେମାନଙ୍କର ଅନ୍ଧବିଶ୍ୱାସ ଯୋଗୁଁ ନେଇ ନଥିଲେ । ଅନ୍ଧବିଶ୍ୱାସଟି ହେଉଛି ପୂର୍ବପୁରୁଷରୁ ମାରି ନଥିବା ଡଙ୍ଗରକୁ ଦୃବା ଦିଶାରୀ ମାରି ଦେଇଛି, ଯୋଉଥିପାଇଁ ଡଙ୍ଗର ଦେବତା ରାଗିଯାଇ ପିଲାଛୁଆଙ୍କୁ ମାରି ଖାଉଛି । ଡଙ୍ଗର ଦେବତା ଓ ଠାକୁରାଣୀ ଦେବୀ ରାଗିଯାଇଛନ୍ତି । ତେଣୁ ପିଲାମାନଙ୍କ ଦେହରେ ଛୋଟ ଛୋଟ ଫୋଟକା ବାହାରି ବଡ ଘାଆ ହୋଇଯାଇଛି । ଗରମ ପାଣି ପିଲାମାନଙ୍କ ଉପରେ ପକାଉଥିବାରୁ ଘାଆ

ହୋଇ ଚମଡା ଖସି ଯାଉଛି । ସେହି ଡଙ୍ଗର ରକ୍ଷ କରୁଥିବା ଦୁବା ଦିଶାରୀକୁ ଗାଁର ଲୋକମାନେ ବହୁତ ଗଣ୍ଡଗୋଳ କରି ଗାଳି ଦେଲେ । ସେହି ବୁଢ଼ା ତା'ସ୍ତ୍ରୀର ଏକ ତୋଲା ସୁନା ଗୋରଖପୁରର ଜଗ ସାହୁ ପାଖରେ ବନ୍ଧା ପକାଇଲା ଓ ସେହି ଟଙ୍କାରେ ମେଣ୍ଢା ଗୋଟିଏ, ଘୁଷୁରି ଗୋଟିଏ, ପାରା ଗୋଟିଏ, କୁକୁଡା ଗୋଟିଏ, ନଡିଆ ଗୋଟିଏ, ବତକ ଅଣ୍ଡା ଗୋଟିଏ କିଣି ଆସିଲା । ମଦ ଏକଡବା କରି ପୂଜାସାମଗ୍ରୀ ସଜାଡିଲା । ତା'ପରେ ଡଙ୍ଗର ଦେବତାଙ୍କୁ ପୂଜା ଦେଇଥିଲେ । ତଥାପି ଦୁଇ ଦିନ ଭିତରେ ଗୋଟିଏ ଦିନ ଦୁଇ ଜଣ ପିଲା ମରିଗଲେ । ପୂଜା ଠିକ୍ ହୋଇପାରିଲା ନାହିଁ ବୋଲି ପିଲାମାନେ ମରିଗଲେ ବୋଲି କେତେ ଜଣ କହିଲେ । ଗାଁରେ ଜ୍ୱର ବେମାରରେ ଲୋକମାନେ ପଡି ରହିଥିଲେ ।

ଜୁଲାଇ ମାସର କଥା । ମୁଁ ବାରମ୍ବାର ଲୋକଙ୍କୁ ବୁଝାଇଲି । ମୋ କଥାକୁ ସେମାନେ ବିଶ୍ୱାସ କଲେ ନାହିଁ । ଡଙ୍ଗର ଦେବତାକୁ ଡାକ୍ତର ଆସି କ'ଣ କରିବ ବୋଲି କହିଲେ । ସେ କ'ଣ ଦିଶାରୀ ନା ଗୁରୁମାଈ ବୋଲି ମୋ କଥାକୁ କରିଲେ ନାହିଁ । ମୁଁ ବାରମ୍ବାର ଶିରିପାଇ ସ୍ୱାସ୍ଥ୍ୟକର୍ମୀଙ୍କୁ ଦୁଇଟି ଚିଠି ଲେଖି ଜଣାଇଲି । କିନ୍ତୁ ସେ ଅନ୍ୟ ଗାଁକୁ ଯିବେ ବୋଲି କହି ଆସିଲେ ନାହିଁ । ଏହି ସ୍ୱାସ୍ଥ୍ୟକର୍ମୀଜଣକ ଗୋଡିବାଲି ପଞ୍ଚାୟତରୁ ଡେପୁଟେସନ୍‌ରେ ଆସିଥିଲେ । ତେଣୁ ସେ ଆସିଲେ ନାହିଁ । ମୁଁ ଦରଖାସ୍ତଟିଏ ଲେଖି ଗାଁଲୋକଙ୍କୁ କାଶୀପୁର ଡାକ୍ତରଖାନାରେ ଦେବା ପାଇଁ କହିଲି । କିନ୍ତୁ କେହି ମୋ କଥାକୁ ଶୁଣିଲେ ନାହିଁ । ଶନିବାର ବଜାର ଦିନ ଲୋକମାନଙ୍କ ସାଙ୍ଗେ ଗୋରଖପୁର ବାହାରିଲି । ମୁଁ ଲେଖିଥିବା ଦରଖାସ୍ତଟିକୁ ସାଙ୍ଗରେ ଧରିଥାଏ । ଏହାପରେ ମୁଁ କାଶୀପୁର ଅଗ୍ରଗାମୀ ଅଫିସ୍‌କୁ ଯାଇ ଏ ବିଷୟରେ କଥା ହେଲି ଓ ସେଇଠୁ ମଧ୍ୟ ଖଣ୍ଡିଏ ଲେଖାଇ ଆଣିଲି । ମୋ ଦରଖାସ୍ତ ଓ ସେହି ଲେଖା ଦୁଇଟିକୁ ମିଶାଇ କାଶୀପୁର ଡାକ୍ତରଖାନାର ଡାକ୍ତରଙ୍କୁ ଦେଲି । ଭାଗ୍ୟକୁ ସେହିଦିନ ରାୟଗଡ଼ାରୁ ଆସିଥିବା ଏ.ଡି.ଏମ୍. ମଧ୍ୟ ଏହି ଦରଖାସ୍ତ ଦେଖିଲେ । ଏହାପରେ ଏ.ଡି.ଏମ୍. ସହିତ ଡାକ୍ତର ଓ ଆମେ ଔଷଧପତ୍ର ସିକପାଇ ଗାଁରେ ପହଞ୍ଚିଲୁ । ଦୁଇ ଜଣ ସ୍ୱାସ୍ଥ୍ୟକର୍ମୀ ଗାଁର ରୋଗୀମାନଙ୍କୁ ପରୀକ୍ଷା କରିସାରିବା ପରେ ଔଷଧ ଖାଇବା ପାଇଁ କହିଲେ । ଔଷଧ ଖାଇବା ପରେ କିଛି ଦିନ ପରେ ଝାଡାବାନ୍ତି, ଜ୍ୱର, କାଶ ଇତ୍ୟାଦି ରୋଗ କମିଗଲା । ଏହାପରେ ଗାଁର ଗଣ୍ଡିଆ ମୋତେ ଓ ଲୋକମାନଙ୍କୁ ଡାକି କହିଲା ଯେ ଗୁରୁଭାଇ ଯଦି ଡାକ୍ତରଖାନା ଯାଇ ଡାକ୍ତରଙ୍କୁ ଡାକି ଆଣି ନଥାନ୍ତା ଓ ଔଷଧପତ୍ର ଦେଇ ନଥାନ୍ତା, ତେବେ ରୋଗ ବେମାର

ଆଦୌ ଭଲ ହୋଇନଥାନ୍ତା । ଧୀରେ ଧୀରେ ଲୋକମାନେ ଔଷଧପତ୍ରର ମୂଲ୍ୟ ବୁଝିପାରୁଛନ୍ତି । ସେହି ଦିନରୁ ସେମାନେ ଔଷଧପତ୍ର ମଧ୍ୟ ବ୍ୟବହାର କରୁଛନ୍ତି । କିନ୍ତୁ ବର୍ତ୍ତମାନ ଯୁଗରେ ଔଷଧପତ୍ରର ମୂଲ୍ୟ ଯେପରି ଭାବରେ ବଢୁଛି ଗାଁ ଲୋକମାନେ ଔଷଧ କିଣି ବ୍ୟବହାର କରିପାରିବେ ନାହିଁ । ସେମାନେ ତ ଖାଇବାକୁ ଦାନା ଗଣ୍ଡେ ଓ ପିନ୍ଧିବାକୁ କନା ଖଣ୍ଡେ ପାଉ ନାହାନ୍ତି, ଏଥିପାଇଁ ଏତେ ପଇସା ପାଇବେ କେଉଁଠୁ ? ଭାରତ ଭଳି ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ଏହି ଲୋକମାନଙ୍କୁ ଦେଖିଲେ ପ୍ରକୃତରେ ଭାରି ଦୁଃଖ ଲାଗେ ଓ ଚିନ୍ତା ଆସେ ଯେ ଏ ସମସ୍ୟାର ସମାଧାନ ପ୍ରକୃତରେ କେବେ ହେବ !

କର୍ଣ୍ଣ ମାଝୀ<br>
ନବସୃଜନ ଶିକ୍ଷାକେନ୍ଦ୍ର, ସିକପାଇ<br>
ଶିରିପାଇ, କାଶୀପୁର



# ନଅମାସ ମଧ୍ୟରେ
# ଭ୍ରମରଯୋଡ଼ ଶିକ୍ଷାକେନ୍ଦ୍ର

କାଶୀପୁରର ଥୁଆମୁଳ ରାମପୁର ଯାଇଥିବା ପିଚୁ ରାସ୍ତାରେ ମଝିରୁ ଅଡ୍ରୀକୁ ଯିବା ପାଇଁ ଏକ ମେଟାଲ୍ ରାସ୍ତା ଅଛି । ଏହି ରାସ୍ତାରେ କିଛି ବାଟ ଗଲେ ବାମ ପଟେ ଗୋଟିଏ ଗାଁ ପଡେ । ତା'ର ନାଁ ଭ୍ରମରଯୋଡ଼ । ଏହି ଗାଁରେ ୩୦ଟି ପରିବାର ବସବାସ କରନ୍ତି । ଲୋକସଂଖ୍ୟା ୧୪୫ ଜଣ । ପୁରୁଷ ୬୬ଜଣ ଓ ମହିଳା ୭୯ଜଣ । ସମସ୍ତେ ଆଦିବାସୀ । ପୋଡୁଚାଷ, କୁଲିଭୁତି ଓ ବନ୍ୟଜାତ ଦ୍ରବ୍ୟ ସଂଗ୍ରହ କରି ପେଟ ପୋଷନ୍ତି । ଡଙ୍ଗରଗୁଡ଼ିକ ଛଡା ଜମିବାଡି ବେଶି ନଥିବାରୁ ବର୍ଷରେ ଅଧିକାଂଶ ସମୟ କାମଧନ୍ଦା ନପାଇ ମାଛ, କଙ୍କଡା ଧରିବା, ବଣକନ୍ଦା, କାଠ, ଫୁଲଝାଡୁ ଇତ୍ୟାଦି ସଂଗ୍ରହ କରିବା ଓ ଚଇତି ପରବରେ ହାକା କରି ଜୀବନ ଅତିବାହିତ କରନ୍ତି ।

ଲୋକଙ୍କର ଦେହ ଖରାପ ହେଲେ ପ୍ରଥମେ ଡାକ୍ତରଖାନା ନଯାଇ ଦେଶୀ ଔଷଧ କରନ୍ତି । ଏହି ଦେଶୀ ଔଷଧରେ ଭଲ ନହେଲେ ଶେଷ ମୁହୂର୍ତ୍ତରେ ଡାକ୍ତରଖାନା ନିଅନ୍ତି । ପ୍ରଥମେ ଏଠାକୁ ଆସିଲା ଦିନ ଦେଖିଲି ଗୋଟିଏ ପିଲାକୁ ଭାରି ଜ୍ୱର ହେଉଛି । ବହୁତ ଖରାପ ଅବସ୍ଥାରେ ସମସ୍ତେ ଜଗି ବସିଛନ୍ତି । ତାଙ୍କ ମା'ବାପାଙ୍କୁ ଡାକି ଡାକ୍ତରଖାନା ନେବା ପାଇଁ କହିଲି । ମୋ କଥା ମାନି ସେମାନେ ଓ ମୁଁ ମିଶି ତାକୁ ଡାକ୍ତରଖାନା ଆଣିଲୁ । ପିଲାଟି ଔଷଧ ଖାଇବାରୁ ଧୀରେ ଧୀରେ ଭଲ ହୋଇଗଲା । କିନ୍ତୁ ଏହାଦ୍ୱାରା ମୋର ଗୋଟିଏ ଲାଭ ହେଲା । ମୋତେ ଲୋକଙ୍କ ସାଙ୍ଗରେ ମିଶିବାକୁ ଆଉ କିଛି ଅସୁବିଧା ହେଲା ନାହିଁ । ଗାଁମାନଙ୍କରେ ଜଣକୁ ଡାକ୍ତରଖାନା ନେଲେ ପ୍ରାୟ ସବୁଘରୁ ଲୋକ ଯାଆନ୍ତି । ମୁଁ ସମସ୍ତଙ୍କ ସାଙ୍ଗରେ ଦୁଃଖସୁଖ ହୋଇ ମିଶିଗଲି । ଏହି ସମୟରେ ଆଉ ଏକ ସମସ୍ୟା ଦେଖାଦେଲା । 'ଖାଦ୍ୟ ପାଇଁ କାମ' ଯୋଜନାରେ କାମ ଚାଲିଥାଏ । ଭ୍ରମରଯୋଡ ଓ ଡାଙ୍ଗେସ୍‌ଖାଲ୍ ଗାଁ ମିଶି ଗୋଟିଏ ୱାର୍ଡ ହେଲେ ମଧ୍ୟ ପୂର୍ବ ମନୋମାଳିନ୍ୟ

ଅନୁଯାୟୀ ଅଲଗା ଅଲଗା କାମ କରିବା ପାଇଁ ନିଷ୍ପତ୍ତି ହେଲା । ରାସ୍ତା କାମ ସରିବା ପରେ ପଞ୍ଚାୟତ ଅଫିସ୍‌ରୁ ଚାଉଳ ଆଣିବା ପାଇଁ ଖବର ଆସିଲା । ସେଠାକୁ ଗଲାବେଳକୁ ଓ୍ୱାର୍ଡମେମ୍ବର୍ ଓ ପୂର୍ବତନ ସରପଞ୍ଚ ଅଫିସ୍‌ରେ ଆଗେ ପହଞ୍ଚି ତିନି କ୍ୱିଣ୍ଟାଲ୍ ଚାଉଳ ନିଅ ବୋଲି ଲୋକଙ୍କୁ ଦେଲେ । ମାତ୍ର ହାଜିରାଖାତା ଅନୁଯାୟୀ ୧୬କ୍ୱିଣ୍ଟାଲ୍ ୭୨କେ.ଜି. ୫୦୦ଗ୍ରାମ ଚାଉଳ ପାଇବା କଥା । ଏକଥା ଜାଣିବା ପରେ ଲୋକମାନେ ଆଦୌ ଚାଉଳ ନଆଣି ସେଦିନ ଫେରି ଆସିଲେ ଓ ବୈଠକ କଲେ । ବୈଠକରେ କାଶୀପୁର ଯାଇ ବି.ଡି.ଓଙ୍କ ସହିତ ଏ ବିଷୟରେ ଆଲୋଚନା କରିବା ପାଇଁ ନିଷ୍ପତ୍ତି ହେଲା । ସବୁ ଘଟଣା ଜାଣିବା ପରେ ବି.ଡି.ଓ. ସପ୍ଲାଇ ଇନ୍‌ସପେକ୍ଟରଙ୍କୁ ସାଂଗରେ ନେଇ ଗାଁକୁ ଆସିଲେ । ସବୁ ବୁଝିବା ପରେ ପୂରା ଚାଉଳ ଦେବା ପାଇଁ ଚନ୍ଦ୍ରଗିରି ପଞ୍ଚାୟତ ସେକ୍ରେଟାରୀଙ୍କ ପାଖକୁ ଲେଖିଦେଲେ । ମାତ୍ର ବି.ଡି.ଓ.ଙ୍କ ସୁପାରିଶ୍ ସତ୍ତ୍ୱେ ଓ ଲୋକମାନେ ତିନି ଚାରି ଦିନ ତା'ପାଖକୁ ଦୌଡିଲା ପରେ ମଧ୍ୟ ସେକ୍ରେଟାରୀ ଚାଉଳ ଦେଲା ନାହିଁ । ତା' ପରଦିନ ପୁଣିଥରେ ବି.ଡି.ଓ.ଙ୍କ ପାଖକୁ ଗଲୁ । ବି.ଡି.ଓ. ଜଣେ ଯନ୍ତ୍ରୀଙ୍କୁ ସାଙ୍ଗରେ ଧରି ଆସିଲେ ଓ ମାପଚୁପ୍ କଲାପରେ ୧୨ କୁଇଣ୍ଟାଲ୍ ୩୬କେ.ଜି. ଚାଉଳ ହାଜିରା ଅନୁସାରେ ହେଲା ଓ ଦୁଇଦିନ ପରେ ଏହି ଚାଉଳ ଲୋକେ ବାଣ୍ଟିନେଲେ ।

ଏହି ଗାଁରେ ପିଇବା ପାଣିର ଖୁବ୍ ଅସୁବିଧା ଥିଲା । ନଳକୂଅଟି ଖରାପ ହୋଇ ପଡିଥିଲା । ପଞ୍ଚାୟତକୁ ଅନେକ ଥର ଲେଖି ଦେଲା ପରେ ମଧ୍ୟ କିଛି ହୋଇ ନଥିଲା । ମୁଁ ଗୋଟିଏ ଦରଖାସ୍ତ ଲେଖି ପି.ଏଚ୍.ଡି. ଅଫିସ୍‌ରେ ଦେବା ପରଦିନ ସେଠାକାର ଲୋକେ ଆସି ନଳକୂଅ ତିଆରି କରିଦେଲେ ।

**ଶିକ୍ଷାକେନ୍ଦ୍ର:**

ମୁଁ ଏ ସ୍କୁଲକୁ ଆସିଲାବେଳକୁ ଉପସ୍ଥାନ ଖାତାରେ ୨୪ଜଣ ପିଲାଙ୍କ ନାମ ଥିଲେ ମଧ୍ୟ ପିଲାମାନେ ନିୟମିତ ଭାବରେ ଆସୁ ନଥିଲେ । ମୁଁ ଆସିଲାପରେ ୬ ଜଣ ପିଲା ନୂଆକରି ନାଁ ଲେଖାଇଲେ ଓ ତା'ପରେ ମାସରେ ୯ଜଣ ପିଲା ନାମ ଲେଖାଇଲେ । ଏହିପରି ବଢ଼ି ବଢ଼ି ୩୭ଜଣରେ ପହଞ୍ଚିଲେ । ବର୍ତ୍ତମାନ ୩୦ଜଣ ପିଲା ସବୁଦିନ ସ୍କୁଲକୁ ଆସୁଛନ୍ତି । ଏହି ଗାଁରେ ସ୍କୁଲ ଘର ଆଗରୁ ହିଁ ନାହିଁ । ତେଣୁ ମୁଁ ଗୁଡିଘରେ ହିଁ ଶିକ୍ଷାକେନ୍ଦ୍ର ଚଳାଉଛି ।

## ମୁଁ ପିଲାଙ୍କ ସହିତ ମିଶିଲି କିପରି ?

ପ୍ରଥମେ ଦୁଇଜଣ ବଡ ପିଲାଙ୍କ ସହିତ ମିଶିଲି । ସେମାନେ ଦୁଇଜଣ ବାହାରେ ରହି ପଢୁଥିଲେ । ଜଣେ ଅଷ୍ଟମ ଶ୍ରେଣୀ ପଢ଼ି ଛାଡିଛି ଓ ଜଣେ ସପ୍ତମ ଶ୍ରେଣୀ ପଢ଼ିଛି । ଏହି ଦୁଇଟି ପିଲାଙ୍କ ଦ୍ୱାରା ସବୁ ପିଲାଙ୍କୁ ଡକାଇଲି । ପ୍ରଥମେ ପାଠପଢ଼ା ଆରମ୍ଭ ନକରି ବହୁଦିନରୁ ବାକ୍ସରେ ପଡି ରହିଥିବା ରିଙ୍ଗ୍‌ବଲ୍ ଓ କ୍ରିକେଟ୍ ବଲ୍ ଆଣି ଗୋଟିଏ କାଠକୁ ବ୍ୟାଟ୍ ତିଆରି କରି ପିଲାଙ୍କ ସହିତ ଖେଳିଲି । ରାତିରେ ଗାଁ ଦାଣ୍ଡରେ ଜହ୍ନ ଆଲୁଅରେ ପାଉଁଶରେ ଘରକାଟି ବୋହୂଚୋରି, କବାଡି, ରୁମାଲ୍ ଚୋରି ଆଦି ଖେଳ ଖେଳିଲୁ । ଧୀରେ ଧୀରେ ଝିଅ ପିଲାମାନେ ମଧ୍ୟ ଆମର ଖେଳ ଦେଖିବାକୁ ଦାଣ୍ଡକୁ ଚାଲି ଆସିଲେ । ପରଦିନଗୁଡିକରେ ଆମେ ସମସ୍ତେ ଗୋଟିଏ ଜାଗାରେ ବସି ପ୍ରାୟ ଅଧଘଣ୍ଟା ତାଳି ମାରିଲୁ । 'ଗୀତରେ ଗୀତରେ' ବହିରୁ ଗୀତ ଗାଇ ନାଚିଲୁ, ଗପ ମଧ୍ୟ ଶୁଣିଲୁ । ଏଥର ବିନା ଡାକରାରେ ସବୁ ପିଲା ଗୁଡିଘରକୁ ଦୌଡିଲେ ଓ କିଛି ଦିନ ପରେ ଝିଅପିଲାମାନେ ମଧ୍ୟ ଆସିବା ଆରମ୍ଭ କଲେ ।

### ଶିକ୍ଷାଦାନ ପ୍ରଣାଳୀ:

ସ୍କୁଲ ସମୟ ହୋଇଗଲେ କେନ୍ଦ୍ରକୁ ପିଲାମାନେ ଆସନ୍ତି । ଯେତେଜଣ ପିଲା ପ୍ରଥମେ ଆସନ୍ତି ସେମାନେ ତାଳି ମାରନ୍ତି । କାରଣ ତାଳି ଶୁଣି ଅନ୍ୟ ପିଲାମାନେ କେନ୍ଦ୍ରକୁ ଆସିବାରେ ଲାଗନ୍ତି । ସବୁପିଲା ଆସିଗଲା ପରେ ପ୍ରାର୍ଥନା ହୁଏ । ପ୍ରାର୍ଥନା ସରିଲା ପରେ ଯେ ଯେଉଁ ଦଳରେ ବସିବା କଥା ସେ ସେହି ଦଳରେ ବସିଯାଆନ୍ତି ଏବଂ କ'ଣ ପଢ଼ିବେ, ସେମାନେ ମୋତେ କହନ୍ତି । ସେହି ଅନୁସାରେ ସେମାନେ ପଢ଼ନ୍ତି । ଅକ୍ଷର ଶିଖୁଥିବା ପିଲାଙ୍କୁ କଳାପଟାରେ ଅକ୍ଷର ସବୁ ଶିଖାଏ । ଅକ୍ଷର ଶିଖାଇବା ପାଇଁ ଗୋଟିଏ ପରେ ଗୋଟିଏ ସ୍ତର କରି ଯିବାକୁ ପଡେ । ଉଦାହରଣ ସ୍ୱରୂପ 'ଗ' ଲେଖିବାକୁ ହେଲେ ପ୍ରଥମେ ଗୋଠିଏ 'ଠ' ବା 'ପିଠା'ର ଚିତ୍ର ଅଙ୍କର କରିବାକୁ ପଡେ । ତା'ପରେ 'ଟପର' ଓ '।' ବା 'ବାଡି' ଅଙ୍କନ କରିବାକୁ ପଡେ । ଏଭଳି ଶିଖାଇଲେ ପିଲା ଖୁବ୍ ଶୀଘ୍ର ଅକ୍ଷର ଶିଖିପାରିଥାଏ । ମାତ୍ରା ଶିକ୍ଷା କରୁଥିବା ପିଲାମାନଙ୍କୁ କେଉଁ ମାତ୍ରା କେଉଁ ଅକ୍ଷରର, କେଉଁ ଅଂଶରୁ ଅଣାଯାଇ ତାକୁ କିପରି ବ୍ୟବହାର କରାଯାଉଛି ଏବଂ ମାତ୍ରାଟି ଦେଲାପରେ ଅକ୍ଷରଟି କିପରି ଉଚ୍ଚାରଣ ହେଉଛି, ତାହା ପିଲାଙ୍କୁ ବୁଝାଇ ଦିଆଯାଉଛି । ପିଲାଙ୍କୁ ପ୍ରକୃତ ବା ମୌଳିକ ତଥ୍ୟ ବିଷୟରେ ଧାରଣା ଦିଆ ନଗଲେ ସେମାନେ ତାହା କେମିତି ହେଲା ଜାଣି ପାରନ୍ତି ନାହିଁ । ସରକାରୀ

ସ୍କୁଲଗୁଡ଼ିକରେ ପ୍ରକୃତ ତଥ୍ୟ ପିଲାଙ୍କୁ ନ ଦିଆଯାଇ ଘୋଷିବାକୁ କୁହାଯାଉଥିବାରୁ ପିଲାମାନେ ମଜା ପାଇ ପାରନ୍ତି ନାହିଁ । ଆମ କେନ୍ଦ୍ରରେ ପିଲାଙ୍କ ମଧ୍ୟରେ ଶବ୍ଦ ପ୍ରତିଯୋଗିତା, କଳାପଟାରେ ଶବ୍ଦ ଲେଖା ଓ ଗୀତ ପ୍ରତିଯୋଗିତା ମଧ୍ୟ କରାଯାଇଥାଏ । ଏହାଛଡା ପ୍ରତିଦିନ ଗୋଟିଏ ଗୋଟିଏ ଗପ କୁହାଯାଏ । ପିଲାମାନେ ନିଜ ଭାଷାରେ ଜାଣିଥିବା ଗପ କହନ୍ତି । ଦଳର ମୁଖ୍ୟ ଅନ୍ୟ ପିଲାମାନଙ୍କୁ ବହି ମଧ୍ୟ ପଢ଼େଇ ଦିଅନ୍ତି ।

ସଂଖ୍ୟା ଓ ମିଶାଣ ଫେଡାଣ ଶିଖିବା ପାଇଁ ପିଲାମାନେ ମାଟିରେ ଗୁଳି ତିଆରି କରି ଆଣି ଶିକ୍ଷାକେନ୍ଦ୍ରରେ ରଖିଛନ୍ତି । ଯେଉଁମାନେ ସଂଖ୍ୟା ଶିଖୁଛନ୍ତି, ସେମାନଙ୍କୁ ନିମ୍ନରେ ଦିଆଯାଇଥିବା ଚିତ୍ର ଭଳି ଦୁଇଟି ଚକ କାଟି ତା' ଭିତରେ ଦଶଟି ଘର କାଟି ୧ରୁ ୧୦ପର୍ଯ୍ୟନ୍ତ ଲେଖାଯିବ, ଯେପରିକି ବିପରୀତ ଦିଗରେ ସଂଖ୍ୟାଗୁଡ଼ିକ ବୁଲିଥିବ । ଦଶଟି ମାଟିଗୁଳି ନେଇ ଗୋଟିଏ ଚକରୁ ଆଉ ଗୋଟିଏ ଚକରେ ପିଲା ରଖିବ । ଏହିପରି ପିଲାଟିର ଗୁଳା ରଖିବା ଚାଲୁ ରହିବ । ମାଟିଗୁଳାକୁ ନେଇ ମିଶାଣ ଫେଡାଣ ମଧ୍ୟ କରାଯାଇ ପାରିବ; ଯେପରିକି ଦୁଇଟି ମାଟିଗୁଳା ଦୁଇପଟେ ରଖି ମଝିରେ ମିଶାଣ ଚିହ୍ନ ଦେଇ ଏକାଠି କରିବା କିମ୍ବା ଦୁଇଟି ମାଟିଗୁଳା ଏକାଠି ଥିବା ଅବସ୍ଥାରେ ସେଥିରୁ ଗୋଟିଏ ବାହାର କରିନେଇ ପିଲାଙ୍କୁ ପଚାରିବା । ସ୍ଥାନୀୟ ମାନ ସୂଚାଇବା ପାଇଁ କାଠିବିଡା ବ୍ୟବହାର କରାଯାଉଛି ।

ପରିବେଶ ବିଷୟରେ ଶିକ୍ଷା ଦେବା ପାଇଁ ଆମେ ବେଳେବେଳେ ଜଙ୍ଗଲ ଭିତରକୁ ଯାଉ । ଗଛଲତା, ନଦୀ, ନାଳ, ବଣ ପାହାଡ, ପଥର ଇତ୍ୟାଦିକୁ ଦେଖି ସେ ବିଷୟରେ ଆଲୋଚନା କରୁ । ବିଜ୍ଞାନ ପଢ଼ାଇଲା ବେଳେ ପିଲାମାନେ ନିଜେ ଠିଆ ହୋଇ ନିଜ ଶରୀରର ଅଙ୍ଗପ୍ରତ୍ୟଙ୍ଗ ଗୁଡ଼ିକର ନାମ ନିଜ ଭାଷାରେ କହିଲା ପରେ ତାକୁ ଓଡ଼ିଆରେ କହି ଦିଆଯାଉଛି । ପିଲାଙ୍କୁ ପ୍ରକୃତରେ ପ୍ରତ୍ୟକ୍ଷ ଭାବରେ ଦେଖାଇ ବିଷୟବସ୍ତୁ କହିଲେ ସେମାନଙ୍କୁ ବୁଝିବାରେ କଷ୍ଟ ହୋଇନଥାଏ । ମୁଁ ତେଣୁ ଅନେକ ସମୟରେ ମାନଚିତ୍ର, ଚାର୍ଟ କିମ୍ବା କୌଣସି ପୋଷ୍ଟର ବ୍ୟବହାର କରିଥାଏ । ଏସବୁକୁ ପିଲାମାନେ ଯେମିତି ଠିକ୍ ଭାବରେ ଦେଖିପାରିବେ ଓ ଦେଖି ବୁଝିପାରିବେ, ତା'ର ବ୍ୟବସ୍ଥା କରେ । ଆମେ ସପ୍ତାହରେ ଗୋଟିଏ ଦିନ ମାଟିରେ କଣ୍ଢେଇ ତିଆରି କରୁ । କିଏ ହାତୀ, କିଏ ବଳଦ, କିଏ ଗାଈ କରନ୍ତି । ଏହାଛଡା ମୟୂର, ମାଛ, ଓଟ, ଚଢ଼େଇ, ସାପ, ହାଣ୍ଡି, ମାଟିଗୁଳା ଇତ୍ୟାଦି ତିଆରି କରନ୍ତି । ମାଟିରେ ଏଭଳି ଜିନିଷ ତିଆରି କରି ସେମାନେ ସେ କେତେ ଆନନ୍ଦ ଅନୁଭବ କରନ୍ତି, ନିଜେ ସେମାନଙ୍କ ସାଙ୍ଗରେ ମିଶିକି ନକଲେ ଜାଣି ହେବ ନାହିଁ ।

ଆମେ ଗତ ଜାନୁୟାରୀ ମାସରେ ବଣ ଭୋଜି କରି ଯାଇଥିଲୁ । ପ୍ରାୟ ସବୁ ପିଲା ଭୋଜିରେ ଯୋଗ ଦେଇଥିଲେ । ସମସ୍ତେ ଚାଉଳ ଆଣିଥିଲେ । ପାଣ୍ଠିରେ ଥିବା କଟିଙ୍ଗ୍ ଉଠାଇ ତାକୁ ଡାଲି କରିଥିଲୁ । ପ୍ରଥମେ ପୂର୍ବନିର୍ଦ୍ଧାରିତ ସ୍ଥାନରେ ପହଞ୍ଚିବା ପରେ କେଉଁ ସ୍ଥାନରେ ରନ୍ଧା ବସାଇବୁ ଠିକ୍ କଲୁ । ପିଲାମାନେ କାଠ, ପାଣି ଆଣିଗଲେ ଓ ସମସ୍ତଙ୍କ ପାଇଁ ଖଲି ତିଆରି କରିବାରେ ଲାଗିଗଲେ । ଆଉ କେତେଜଣ ପିଲା ଚୁଲି ତିଆରି କଲେ । ଛୋଟ ଛୋଟ ପିଲାମାନଙ୍କ ସହିତ ଖୁବ୍ ମଜା ଲାଗୁଥିଲା । କେତେ ଜଣ ପିଲା ପନିପରିବା ମଧ କାଟିଲେ । ଏହାପରେ ଦୁଇଜଣ ବଡପିଲାଙ୍କୁ ରୋଷେଇ କରିବାର ଦାୟିତ୍ୱ ଦିଆଗଲା ଓ ସବୁ ପିଲାଙ୍କୁ ଦୁଇଟି ଦଳରେ ଭାଗ କରି କୁହାଗଲା ଯେ ସେମାନେ ବିପରୀତ ଦିଗକୁ ଯିବେ ଏବଂ ଆସିଲା ବେଳେ ଅଜଣା ଜିନିଷ ଯାହା ପାଇଲେ ଧରି ଆସିବେ । ସମସ୍ତେ ସେହିପରି କଲେ । ସେମାନେ ଆସିବା ବେଳକୁ ରୋଷେଇ ଠିକ୍ ସରି ଯାଇଥାଏ । ସମସ୍ତେ ଗାଧୋଇଲେ । ତା'ପରେ ଖାଇବା ଆରମ୍ଭ ହେଲା । ଖାନାପିନା ପରେ ଗୀତ ଗାଇବା ଆରମ୍ଭ ହେଲା । ପିଲାମାନେ ସାଙ୍ଗରେ ନେଇଥିବା ଡେକ୍‌ଚି ବଜାଇ ଗୀତ ଗାଇଲେ ଓ ନାଚି ନାଚି ସମସ୍ତେ ଘରକୁ ଫେରିଲେ । ଦୁଇ ଦଳ ଆଣିଥିବା ବିଭିନ୍ନ ପ୍ରକାର ଜିନିଷର ନାମ ମୁଁ ଯେତିକି ଜାଣିଥିଲି କହିଲି । କିନ୍ତୁ କେତୋଟି ଗଛଲତାର ନାମ ମୁଁ ଜାଣି ନଥିଲି । ସେସବୁକୁ ଧରି ଆସି ଗାଁରେ ଥିବା ଦିଶାରୀକୁ ଡାକି ପଚାରିଲୁ । ସେ ଆମକୁ ସେସବୁର ନାମ ଓ ଔଷଧୀୟ ଗୁଣ ବିଷୟରେ ସବୁ ବତାଇ ଦେଲା । ପିଲାମାନେ ଗଛଲତାରର ଏତେସବୁ ଗୁଣ ଶୁଣି ସତରେ ଆଶ୍ଚର୍ଯ୍ୟ ହୋଇଗଲେ ।

### ଆମେ ନଳକୂଅ ଡ୍ରେନ୍ ସଫା କଲୁ:

ଦିନେ ଆମେ ସମସ୍ତେ ମିଶି ସ୍ଥିର କଲୁ ଯେ, ନଳକୂଅ ପାଖରେ ଥିବା ଡ୍ରେନ୍ ସଫା କରିବା । ବୋଧହୁଏ ଡ୍ରେନ୍‌ଟି ନଳକୂଅ ହେବା ଦିନଠାରୁ କେବେ ସଫା ହୋଇନଥିଲା । ଗାଁ ଦାଣ୍ଡର ସବୁ ଅଳିଆ ଡ୍ରେନ୍ ଭିତରେ ହିଁ ଲୋକେ ପକାଇଥାନ୍ତି । ତା'ଉପରେ ନଳକୂଅରୁ ଆସୁଥିବା ପାଣି ଜମିଯାଇ ଅଳିଆସବୁ ପଚିଯାଇ ଦୁର୍ଗନ୍ଧ ବାହାରୁଥାଏ । ସେଥିରେ ମଶା ଅଣ୍ଡା ଦେଇ ବଂଶବୃଦ୍ଧି କରିବା ପାଇଁ ସୁବିଧା ହୋଇଯାଇଛି । ଏହାଦ୍ୱାରା ଲୋକଙ୍କୁ ମ୍ୟାଲେରିଆ, ଝାଡ଼ାବାନ୍ତି ଆଦି ବିଭିନ୍ନ ରୋଗ ମଧ ହେଉଛି । ପିଲାମାନଙ୍କୁ ଓ ଗାଁଲୋକଙ୍କୁ ଏସବୁ ବିଷୟରେ ବୁଝାଇଦେଲି । ମୁଁ ପ୍ରଥମେ ଦୁଇ ଜଣ ପିଲାଙ୍କ ସହିତ ଏସବୁକୁ ସଫା କରିବା ପାଇଁ କୋଡି ଧରି ବାହାରିଲି ।

ଆମ ଦେଖାଦେଖି ସବୁ ପିଲା ବାହାରି ପଡିଲେ ଓ ଘଣ୍ଟାଟିଏ ଭିତରେ ଡ୍ରେନ୍‌ଟି ସମ୍ପୂର୍ଣ୍ଣ ରୂପେ ସଫା ହୋଇଗଲା । ଅଳିଆ କାଢ଼ି ସଫା କରିବା ପାଇଁ ପିଲାମାନଙ୍କ ମନରେ ଏକ ପ୍ରତିଯୋଗିତା ମନୋଭାବ ସେହି ସମୟରେ ଦେଖାଯାଉଥିଲା । କାରଣ କିଏ କେତେ ସଫା କରିପାରିବ ବୋଲି ସମସ୍ତେ ଲାଗି ପଡିଥିଲେ । ଡ୍ରେନ୍ ସଫା କରିବା ପରେ ପିଲାମାନେ ଗାଁ ମୁଣ୍ଡରେ ଜମା ହୋଇ ରହିଥିବା ଅଳିଆ ମଧ୍ୟ ସଫା କରିବା ବୋଲି ଜିଦ୍ ଧରିଲେ । ତେଣୁ ଗାଁ ମୁଣ୍ଡକୁ ମଧ୍ୟ ସଫା କରିଦେଲୁ ଓ ଗାଁ ଦାଣ୍ଡ ତଥା ଡ୍ରେନ୍‌ଗୁଡିକରେ ଅଳିଆ ନପକାଇବା ପାଇଁ ଗାଁର ମା'ମାନଙ୍କୁ ମନା କରି ବୁଲିଲୁ ।

ବିଶ୍ୱନାଥ ନାଏକ
ନବସୃଜନ ଶିକ୍ଷାକେନ୍ଦ୍ର, ଭ୍ରମରଯୋଡ଼
ଚନ୍ଦ୍ରଗିରି, କାଶୀପୁର

□□□

# ଲୁକୁମାରୀ ଗ୍ରାମରେ ଶିକ୍ଷା

ଲୁକୁମାରୀ ଗାଁଟି କୋରାପୁଟ ଜିଲ୍ଲାର ଦଶମନ୍ତପୁର ବ୍ଲକ୍ ଅନ୍ତର୍ଗତ ପୋଡାଗଡ଼ ପଞ୍ଚାୟତରେ ଅବସ୍ଥିତ । ଏହି ଗ୍ରାମରେ ୩୬ଜଣ ଆଦିବାସୀ ଓ ୩୨ଜଣ ହରିଜନ ଲୋକ ବାସ କରିବା । ଏମାନଙ୍କର ମୁଖ୍ୟ ଜୀବିକା ହେଉଛି ଚାଷ ଓ ଜଙ୍ଗଲରୁ କାଠ ହାଣି ବିକ୍ରି କରନ୍ତି । ଏହି ଗାଁରେ ସାକ୍ଷରତାର ହାର ଖୁବ୍ କମ୍ । ସରକାରଙ୍କ ତରଫରୁ ହରିଜନ ସାହିରେ ହୋଇଥିବା ଗୋଟିଏ ନଳକୂଅ ଛଡା ଆଉ କିଛି ଜନମଙ୍ଗଳ କାମ ହୋଇନାହିଁ । ଏହି ଗାଁରେ ପ୍ରାୟ ଦୁଇ କିଲୋମିଟର ଦୂରରେ ପୋଡାଗଡ ଗ୍ରାମରେ ଗୋଟିଏ ପ୍ରାଇମେରୀ ସ୍କୁଲ୍ ଓ ଗୋଟିଏ ସେବାଶ୍ରମ ଅଛି । କିନ୍ତୁ ଏହି ଗାଁର କୌଣସି ପିଲା ପାଠ ପଢ଼ି ନଥିଲେ । ତେଣୁ ଏହି ଗାଁରେ ୧୯୯୮ ମସିହାରେ 'ଅଗ୍ରଗାମୀ' ତରଫରୁ ଏକ ନବସୃଜନ ଶିକ୍ଷାକେନ୍ଦ୍ର ଖୋଲାଯାଇଛି । ଏହି ଶିକ୍ଷାକେନ୍ଦ୍ରରେ ୫୯ ଜଣ ଛାତ୍ରଛାତ୍ରୀ ପାଠ ପଢୁଛନ୍ତି । ଏହି ନବସୃଜନ ଶିକ୍ଷାକେନ୍ଦ୍ରରେ ପାଠ ପଢ଼ି ୨୩ଜଣ ପିଲା ପୋଡାଗଡ କଲୋନୀ ସ୍କୁଲ୍ ରେ ପଢୁଛନ୍ତି । ଏହାଛଡା ଗାଁରେ ବୟସ୍କ ଲୋକମାନେ ଓ ମା'ମାନେ ମଧ୍ୟ ଦସ୍ତଖତ ଶିଖିଲେଣି । କେତେଜଣ ବହି ମଧ୍ୟ ପଢ଼ି ପାରୁଛନ୍ତି । ଲୋକେ ତେଣୁ ଶିକ୍ଷା ବିଷୟରେ ବେଶ୍ ସଚେତନ ହେଲେଣି ବୋଲି ଜଣାପଡୁଛି ।

ଏହି ଗାଁରେ ବର୍ତ୍ତମାନ ଚମ୍ପା ସଞ୍ଚୟ ଦଳ ଓ ପାର୍ବତୀ ସଞ୍ଚୟ ଦଳ ନାମରେ ଦୁଇଟି ସ୍ୱୟଂ ସହାୟକ ଦଳ ଗଢ଼ିଉଠିଛି । ଚମ୍ପା ସଞ୍ଚୟ ଦଳରେ ୪୬୦ଟଙ୍କା ଓ ୧୨କେ.ଜି. ଚାଉଳ ଏବଂ ପାର୍ବତୀ ସଞ୍ଚୟ ଦଳରେ ୨୧୦ ଟଙ୍କା ଓ ୨୦ କେ.ଜି. ଚାଉଳ ଅଛି ।

ଏହି ଗାଁରେ ସରକାରଙ୍କ ତରଫରୁ ୪ ଜଣଙ୍କୁ ଇନ୍ଦିରା ଆବାସ ଘର ମିଳିଛି । ୧୨ଜଣ ବାର୍ଦ୍ଧକ୍ୟ ଭତ୍ତା ପାଉଛନ୍ତି । ଏହି ଗାଁକୁ ଆଗେ ଆଦୌ ରାସ୍ତା ନଥିଲା । ବର୍ତ୍ତମାନ ରାସ୍ତା କରାଯାଇଛି । ଆଦିବାସୀ ସାହିରେ ପିଇବା ପାଣିର ବହୁତ ଅସୁବିଧା

ରହିଥିବାରୁ ସେଠାରେ ଗୋଟିଏ ନଳକୂଅ ସ୍ଥାପନ କରିବା ପାଇଁ ଦଶମନ୍ତପୁର ବି.ଡି.ଓ.ଙ୍କୁ ଦରଖାସ୍ତ ଦିଆଯାଇଛି । ଅଙ୍ଗନୱାଡ଼ି କେନ୍ଦ୍ର ଆଗରୁ ରହିଥିଲେ ମଧ୍ୟ ତାହା ଠିକ୍ ଭାବରେ କାର୍ଯ୍ୟ କରୁନଥିଲା । ଦଶମନ୍ତପୁରରେ ଥିବା ସି.ଡି.ପି.ଓ.ଙ୍କୁ କହିବା ପରେ ବର୍ତ୍ତମାନ କିଛି ପରିମାଣରେ ଏହା କାର୍ଯ୍ୟ କରୁଛି । ତେବେ ତଥାପି ଏହି ଗାଁରେ ଆହୁରି ଅନେକ କିଛି କରିବା ପାଇଁ ବାକି ରହିଛି ।


ଲକ୍ଷ୍ମଣ କୁମାର ହିଆଲ୍

ନବସୃଜନ ଶିକ୍ଷାକେନ୍ଦ୍ର, ଲୁକୁମାରୀ

ଦଶମନ୍ତପୁର, କୋରାପୁଟ


□□□

# ପିଲାମାନଙ୍କୁ ମାଡ଼ ନ ମାରିବାପାଇଁ ଶିକ୍ଷା ପାଇଲି

ମୁଁ ଯେତେବେଳେ ଗୁରୁଭାଇ ଭାବେ ପିଲାଙ୍କୁ ପଢ଼ାଇଲି, ସେତେବେଳେ ଶିକ୍ଷାକେନ୍ଦ୍ରରେ ପିଲାମାନଙ୍କୁ ପାଠ ବୁଝାଇଲା ବେଳେ ପିଲାମାନେ ପାଠ ବୁଝୁ ନଥିଲେ । ସେମାନଙ୍କୁ ମାଡ଼ ମାରୁଥିଲି । ଯେଉଁ ପିଲାଙ୍କୁ ଥରେ ମାଡଦେଲି ସେମାନେ ଆଉ ଭୟରେ ଆସୁନଥିଲେ । ମୁଁ ଯେତେ ଡାକିଲେ ମଧ୍ୟ ସେମାନେ ମୋ ସହ କଥାବର୍ତ୍ତା ହେଉ ନଥିଲେ ଏବଂ ପାଖକୁ ଆସୁ ନଥିଲେ । ଅନ୍ୟ ପିଲାମାନଙ୍କୁ ପଚାରିଲି ସେ ପିଲା କାହିଁକି ପଢିବା ପାଇଁ ଆସୁ ନାହିଁ ? ପିଲାମାନେ ସେ ପିଲାଙ୍କୁ ଯାଇ ପଚାରି ବୁଝିଲେ ଏବଂ ମୋତେ ଆସି କହିଲେ 'ନାଇଁ ଗୁରୁ ତୁଇ ମାଇଲାକେ ସେ ତେକେ ଆରି କଥା ନ କରେ କି ପାଠ ପଢ଼ବାକେ ମିସା ନ ଆସେ ପୁନି' । ଏହା ଶୁଣି ମୋତେ ବହୁତ ଖରାପ ଲାଗିଲା । ଆଉ ଜଣେ ପିଲାକୁ ତା'ର ପାଖକୁ ପଠାଇଲି ଏବଂ କହିଲି ଖବର ଦେଲି ତାକୁ କହିବ ତୁମେ ପଢ଼ିବା ପାଇଁ ଆସ ଆରେ ଦିନା ଗୁରୁ ଆରି ତକେ ନ ମାରେନି । ଏହି ଉପାୟରେ ଚାରି ପାଞ୍ଚ ଜଣ ଡାକିବା ପରେ ସେ ପିଲା ବହୁତ କଷ୍ଟରେ ପଢିବା ପାଇଁ ଆସିଲା । ଏବଂ ସେ କାହିଁକି ପଢିବା ପାଇଁ ଆସୁ ନଥିଲା ତାକୁ ପଚାରିବାକୁ ମୋର ସାହସ ହେଉ ନଥିଲା । କାରଣ ମୁଁ ଭାବୁଥିଲି କିଛି ପଚାରିବି ତେବେ ପୁଣି ଆସିବା ବନ୍ଦ କରିଦେବ ଏବଂ କଥାବାର୍ତ୍ତା ମଧ୍ୟ ବନ୍ଦ କରି ଦେଇପାରେ । ଏହି ଘଟଣା ମୋତେ ବଦଳାଇ ଦେଲା ଏବଂ ମୋ ହାତ ଆପେ ବନ୍ଦ ହୋଇଗଲା । ସେହି ଭୟରେ ମୁଁ ପିଲାମାନଙ୍କୁ ଆଉ ମାଡ ମାରି ପାରିଲି ନାହିଁ । ଏହି ପରିସ୍ଥିତିରେ ପଡି ପିଲାମାନଙ୍କୁ କିପରି ଖୁସୀରେ ପଢାଇବି ମୁଁ ଚେଷ୍ଟା କଲି । ଯେ କୌଣସି ପିଲାର ଭୁଲ ହୋଇଗଲେ ତା'ଉପରେ ବିରକ୍ତ ନହୋଇ କହେ, ଏମିତି କଲେ ଆହୁରି ଭଲହେବ । ଆଉଥରେ ଚେଷ୍ଟା କର ଟିକେ ଭଲ କରିଲେଖ କହି ବତାଇ ଦିଏ ।

ପିଲାମାନେ କିଛି ଭୁଲ କଲେ ମୁଁ ମନ ଭିତରେ ରାଗଟାକୁ ଚାପି ଦିଏ କିନ୍ତୁ କିଛି କରେ ନାହିଁ । ମୁଁ ଯେତେ ତାଲିମ ପାଇଛି ତାହା ମୋତେ ଯେତିକି ଶିକ୍ଷା ଦେଇଛି ତାହା ଠାରୁ ଏହି ଘଟଣା ମୋତେ ଅଧିକ ଶିକ୍ଷା ଦେଇଛି । କୌଣସି ବହିରୁ କିମ୍ବା ତାଲିମରୁ ପିଲାଙ୍କୁ ମାଡ଼ ନ ମାରି ଶିକ୍ଷାଦେବା କଥା ଶିଖି ନାହିଁ ଏହା ମୋତେ ପିଲାମାନେ ହିଁ ଶିକ୍ଷା ଦେଇଛନ୍ତି । ଶିକ୍ଷକ ପିଲାମାନଙ୍କ ସହ ସାଙ୍ଗ ହୋଇ ପାରିଲେ ପିଲାଙ୍କ ଭିତରୁ ଭୟ ଦୂର ହୋଇପାରିବ । ସେତେବେଳେ ପିଲାମାନେ ଶିକ୍ଷକଙ୍କୁ ନିଜର ବୋଲି ଭାବିବେ ।

ଧନେଶ ବେନିଆ (ଗୁରୁଭାଇ)
ନବସୃଜନ ଶିକ୍ଷାକେନ୍ଦ୍ର, ଲୁକୁମାରୀ
ତେନ୍ତୁଳିଗୁଡା, ଦଶମନ୍ତପୁର



# ବୋରିଗୁମ୍ମା ଶିକ୍ଷାକେନ୍ଦ୍ର କଥା

ମୋର ନାମ ଗୁଞ୍ଜ କୁମାରୀ ସାହୁ । ମୁଁ ବୋରିଗୁମ୍ମା ନବସୃଜନ ଶିକ୍ଷାକେନ୍ଦ୍ରରେ ଦୁଇବର୍ଷ ହେଲା ପିଲାମାନଙ୍କୁ ପଢାଇ ଆସୁଅଛି । ଏହି ଗ୍ରାମରେ ୫୦ଘର ଆଦିବାସୀ ପରିବାର ବାସକରନ୍ତି । ଏହି ଗାଆଁଟି ଗୋଲାମୁଣ୍ଡ ବ୍ଲକରେ ଅବସ୍ଥିତ । ମୁଁ ଯେତେବେଳେ ଏହି ଗ୍ରାମକୁ ଆସିଲି ଏଠାରେ ମାତ୍ର ୫ଜଣ ଲୋକ ଶିକ୍ଷିତ ଥିଲେ । ଲୋକମାନେ ଭାବୁ ଥିଲେ ଯିଏ ପାଠ ପଢିବ ସିଏ କିଛି କାମ ନକରି ନିକିମା ହୋଇଯିବ । ଲୋକମାନେ କିପରି ଶିକ୍ଷା ବିଷୟରେ ଅଧିକ ସଚେତନ ହୋଇ ପାରିବେ ମୋଭିତରେ ଏକ ଚିନ୍ତା ଆସିଲା । ଲୋକମାନଙ୍କୁ ଏକାଠି କରି ଗାଆଁର ସମସ୍ୟା ବିଷୟରେ ଆଲୋଚନା କଲି ଏବଂ ଲୋକମାନେ କିପରି ଠକେଇ ଓ ଶୋଷଣ ହେଉଛନ୍ତି ସେ ବିଷୟରେ ବିଭିନ୍ନ କଥାବାର୍ତ୍ତା ହେଲୁ । ମୁଁ ପିଲାମାନଙ୍କ ସହ ଗାଆଁ ଦାଣ୍ଡ ବୁଲିବାବେଳେ, ପିଲାମାନଙ୍କୁ ଗାଆଁର ଅପରିଷ୍କାର ବିଷୟରେ କହିଲି । ଦେଖ ତୁମ ଗାଆଁ ଲୋକମାନେ କିପରି ଗାଆଁ ରାସ୍ତା ସବୁ ଅପରିଷ୍କାର କରିଛନ୍ତି ! ଏଥିପାଇଁ ଆମେ ସମସ୍ତେ ବିଭିନ୍ନ ରୋଗରେ ପଡୁଛେ । ଏହାପରେ ଦିନେ ଆମେ ପିଲାମାନେ ସମସ୍ତେ ଏକାଠି ହୋଇ ଗାଆଁ ସଫା କରିବା କଥା ଆଲୋଚନା କଲୁ । ଏବଂ ପିଲାମାନେ ନିଜେ ନିଜେ ଝାଡୁ କୋଡି ଓ କୋଦାଳ, ଧରି ଗାଆଁ ସଫେଇ କରିବା ପାଇଁ ବାହାରିଲୁ । ଗାଆଁ ଦାଣ୍ଡ ସଫା ହୋଇଗଲା । ବହୁତ ସୁନ୍ଦର ଲାଗିଲା । ଏବେ ସମସ୍ତେ ବାପା ଓ ମାଆ ନିଜର ଖାଇବା ଘର ସଫା ରଖୁଛନ୍ତି । ପିଲାମାନଙ୍କ ସହ ବସି ସପ୍ତାହ ସାରା କେଉଁ ଦିନ କ'ଣ କ'ଣ ସବୁ ପଢ଼ା ଯିବ, କି କି କାମ କରିବେ, କେଉଁଠିକୁ ବୁଲିଯିବା ସବୁ ନିଷ୍ପତ୍ତି ହୁଏ । ଭାଷା ଓ ପରିବେଶ ପାଠ ପଢ଼ାଇବା ସମୟରେ ଗାଆଁ ଇତିହାସ, ପରିବେଶ ଓ ଗାଁ ପଞ୍ଚାୟତ ବିଷୟରେ ଆଲୋଚନା କରି ପଢ଼ାଏ ।

ଏଠାରେ ଭାଷାଗତ ସମସ୍ୟା ଗୋଟିଏ ବଡ ସମସ୍ୟା । ତେଣୁ ଅକ୍ଷର ଶିକ୍ଷା ଦେବା ପାଇଁ ଆମକୁ ଅଧିକ ପରିଶ୍ରମ କରିବାକୁ ପଡିଥାଏ । ଆଞ୍ଚଳିକ ଭାଷାରେ

ମୋତେ ପଢାଇବାକୁ ହୁଏ । ପ୍ରଥମରେ ଯେତିକି ପରିଶ୍ରମ କରିବାକୁ ହେଲାଥିଲା ବର୍ତ୍ତମାନ ତାହା କରିବାକୁ ପଡୁ ନାହିଁ । ପିଲାମାନେ ଆସ୍ତେ ଆସ୍ତେ ବହି ପଢ଼ିବା ଶିଖିଗଲେଣି । ପିଲାମାନଙ୍କ ସହ ସର୍ବଦା ଏକାଠି ରହି ସେମାନଙ୍କ ଭିତରେ ସାହସ ଦେବା ଦ୍ୱାରା ପାଠଟା ସରଳ ଭାବେ ଗ୍ରହଣ କରି ପାରୁଛନ୍ତି । ଏବଂ, ମୋତେ ଆଉ ପାଠ ପଢ଼ାଇବା ପାଇଁ ଏତେ କଷ୍ଟ ଲାଗୁ ନାହିଁ । ସବୁ କାମରେ ଗାଆଁ ଲୋକମାନଙ୍କ ସହଯୋଗ ରହିଛି । ଯେଉଁଠାରେ ଗାଆଁ ଲୋକଙ୍କ ସହଯୋଗ ନାହିଁ ସେଠାରେ କିଛି କରିହେବ ନାହିଁ । ଜଣେ ଶିକ୍ଷକ ପିଲାମାନଙ୍କୁ ଭଲ ପାଇ ପାରିଲେ ଯାଇଁ ଶିକ୍ଷାରେ ପରିବର୍ତ୍ତନ ହୋଇ ପାରିବ ।

ଗୁଞ୍ଜ କୁମାରୀ ସାହୁ(ଗୁରୁଭଉଣୀ)
ନବସୃଜନ ଶିକ୍ଷାକେନ୍ଦ୍ର, ବୋରିଗୁମା
ମହାଲିଙ୍ଗ୍, ଗୋଲାମୁଣ୍ଡା

□□□

# ମୋ ଶିକ୍ଷାକେନ୍ଦ୍ର ସର୍ଗୀଗୁଡ଼ା

ମୁଁ ଯେତେବେଳେ ସର୍ଗୀଗୁଡ଼ା ଗାଆଁକୁ ଗୁରୁଭଉଣୀ ଭାବେ ପଢାଇବା ପାଇଁ ଗଲି ଦେଖିଲି ଗାଆଁ ବହୁତ ଅପରିଷ୍କାର ଅଛି । ନଳକୂପ ପାଖ ଡ୍ରେନ୍‌ଟି ଅଳିଆ ଆବର୍ଜନାରେ ଭରପୂର ହୋଇରହିଛି । ଗାଆଁରେ ସବୁ ଅଳିଆ ଆବର୍ଜନା ଗୁଡାକୁ ଲୋକମାନେ ସେହି ଡ୍ରେନ୍ ଭିତରେ ପକାଉଛନ୍ତି ଏବଂ ନଳକୂପରୁ ବାହାରୁଥିବା ପାଣି ସବୁ ଡ୍ରେନ୍‌ରେ ଜମି ରହୁଛି । ସେଥିରେ ଥିବା ଅଳିଆ ସବୁ ପଚିଯାଇ ଦୁର୍ଗନ୍ଧ ବାହାରୁଛି । ସେଥିରେ ମଶାମାନେ ଅଣ୍ଡା ଦେଇ ବଂଶ ବିସ୍ତାର କରିବାର ସୁବିଧା ପାଇ ଯାଇଛନ୍ତି । ଏହାଦ୍ୱାରା ବିଭିନ୍ନ ରୋଗ ବ୍ୟାପୁଛି, ମ୍ୟାଲେରିଆ ଏବଂ ଝାଡ଼ାବାନ୍ତି ହେଉଛି । ଏବିଷୟରେ ଲୋକମାନଙ୍କ ସହ ଏକ ବୈଠକ କଲି, ଏବଂ ବୁଝାଇଲି ଯେ ଏପରି ଗାଆଁକୁ ଅପରିଷ୍କାର କଲେ ଆହୁରି ଅସୁବିଧା ହେବ । ଗାଆଁ ମୁଣ୍ଡ ଦେଇ ଆସୁଥିବା ପାଣି କେନାଲଟି ଆଣି ଡ୍ରେନ୍‌ରେ ଛାଡ଼ିଦେଲେ ଜମି ରହିଥିବା ଅଳିଆ ସଫା ହୋଇଯିବ । ଏହା ସବୁ କଥା ବାପାମାଆମାନେ ବୁଝିଲେ । ତା'ପର ଦିନ କେନାଲ ପାଣି ଆଣି ଡ୍ରେନ୍ ଭିତରକୁ ଛାଡିଲେ । ମୁଁ ପିଲାମାନଙ୍କ ସହ କୋଡିକ୍ ଆରି ଝାଡୁ ଧରି ବାହାରି ଜମାହୋଇ ରହିଥିବା ଅଳିଆ ସବୁ ବାହାରକୁ କାଢିଲୁ । ଝାଡୁମାରି ଡ୍ରେନ୍‌ଟିକୁ ସଫା କରିଦେଲୁ । ଆମ ସହ ମାଆମାନେ ଆସି ଯୋଗଦେଲେ । ଗାଆଁର ତଳ ଓ ଉପର ମୁଣ୍ଡ ସବୁ ସଫା କଲୁ ।

ଗାଆଁ ପାଖରେ ଥିବା ନଦୀରେ ସବୁ କାରବାର ହୁଏ । ସେଠାରେ ଯିବା ଆସିବା ପାଇଁ ବହୁତ ଅସୁବିଧା ହେଉଥାଏ । କିନ୍ତୁ କେହି ଭାବନ୍ତି ନାହିଁ ଏହା କେମିତି ଠିକ୍ କରାଯିବ । ଦିନେ ମୁଁ ଏକଥା ମାଆମାନଙ୍କୁ କହିଲି କେମିତି କଲେ ନଦୀକୁ ଯିବା ଆସିବା ପାଇଁ ସୁବିଧା ହେବ । ମାଆମାନେ କହିଲେ ରାସ୍ତାକୁ ଟିକେ ଓସାର କରିବା

ତା'ପରେ ମାଆମାନେ ଏକାଠି ହୋଇ ଶାବଳ, କୋଡ଼ିକ୍ ଧରି ଗଲିଲୁ । ଆମ ସହ ପିଲାମାନେ ମଧ୍ୟଥିଲେ । ସେଠାରେ ରାସ୍ତାଟିକୁ ଓସାର କଲୁ ମାଟି ପକାଇଲୁ ଏବଂ ପଥର ଆଣି ସାଇଡ଼ରେ ସଜାଡ଼ି ପକାଇଲୁ । ଏହା କଲାରୁ ଯିବା ଆସିବାର ସୁବିଧା ହେଲା । ଗୋଟିଏ ଗାଆଁରେ ଲୋକମାନେ ଏକାଠି ହେଲେ ବଡ଼ ବଡ଼ କାମ ସହଜରେ ହୋଇଯିବ ।

ଚମ୍ପା ଝୋଡ଼ିଆ(ଗୁରୁଭଉଣୀ)
ନବସୃଜନ ଶିକ୍ଷାକେନ୍ଦ୍ର, ସର୍ଗୀଗୁଡ଼ା
କାଶୀପୁର, ରାୟଗଡ଼ା



# କେମିତି କାଟୁଛି ଦିନ

ମୁଁ ଆଜିକୁ ନଅମାସ ହେଲା କନ୍ଧମାଳ ଜିଲ୍ଲା ଫିରିଙ୍ଗିଆ ବ୍ଲକର ବାଲନ୍ଦାପଡ଼ା ପଞ୍ଚାୟତ ତଥା ଡେରାକୁମ୍ପା ପ୍ରକଳ୍ପର ତାଳପଙ୍ଗା ନବସୃଜନ ଶିକ୍ଷାକେନ୍ଦ୍ରରେ ଗୁରୁଭାଇ ରୂପେ କାମ କରୁଛି । ବାଲନ୍ଦାପଡା ଠାରୁ ତିନି କିଲୋମିଟର ରାସ୍ତା ଗଲେ ଆମ ଗାଁଟି ପଡେ । ଗାଁର ଚତୁଃପାର୍ଶ୍ୱକୁ ଡଙ୍ଗର ପାହାଡ ଘେରି ରହିଛି । ମୋତେ ପ୍ରଥମେ ସେହି ଗାଁକୁ ଯିବାକୁ ଅଡୁଆ ଲାଗିଲା, ତଥାପି ସେହି ଗାଁ ଲୋକଙ୍କ ସହିତ ମିଶି ରହିବାକୁ ପଡିଥିଲା । ପିଲାଙ୍କୁ ପ୍ରଥମେ କିପରି ମୁଁ ପାଠ ପଢ଼ାଇବି ବୋଲି ଭାବି ଡରି ଯାଇଥିଲି । ତାପରେ ସେଠାରେ ଜଣେ ପୁରୁଣା ଗୁରୁଭାଇ ଅକ୍ଷୟ କହଁର ଥିଲେ, ତାଙ୍କ ସହିତ ମିଶି ପଢ଼ାଇବାକୁ ଆରମ୍ଭ କଲି । ସେ ମୋତେ ପିଲାମାନଙ୍କୁ କେମିତି ପାଠ ପଢ଼ାଇବ ସେ ବିଷୟରେ ଧାରଣା ଦେଇଥିଲେ । ସେହି ଗାଁ ପାଖରେ ବାଘଡଙ୍ଗରୀ ଆଶ୍ରମ ସ୍କୁଲଟିଏ ଅଛି । ହେଲେ ପିଲାମାନେ ସେଠାକୁ ପଢ଼ିବାକୁ ଯାଆନ୍ତି ନାହିଁ । ଏକଥା ଦେଖିବା ପରେ ମୋତେ ବହୁତ ଆଶ୍ଚର୍ଯ୍ୟ ଲାଗିଲା । ପିଲାମାନେ ଯଦି ଅଧିକରୁ ଅଧିକ ପାଠ ନପଢ଼ିବେ ତେବେ କିଛି ଲାଭ ହେବ ନାହିଁ ବୋଲି ଭାବିଲି । ଏକଥା ଲୋକମାନଙ୍କୁ ମଧ କହିଥିଲି । ପ୍ରଥମେ ପ୍ରଥମେ ମୋ କଥା ଲୋକମାନେ ସେତେ ବୁଝି ନଥିଲେ । ଆମ ସ୍କୁଲ ଚଳାଇବା ପରେ ଏକଥା ଲୋକମାନେ ବୁଝିବେ ବୋଲି ଭାବି ସେ ପର୍ଯ୍ୟନ୍ତ ଅପେକ୍ଷା କରି ରହିଲି ।

ପ୍ରଥମେ ଲୋକମାନଙ୍କୁ ଆମ ସ୍କୁଲର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ବିଷୟରେ ବୁଝାଇଲି । ଆଗରୁ ଏଠାରେ ଅଗ୍ରଗାମୀ ତରଫରୁ ଏହି ଗାଁରେ ଅଣଆନୁଷ୍ଠାନିକ ସ୍କୁଲ ଚାଲୁଥିଲା । ଲୋକମାନେ ଅଗ୍ରଗାମୀ ବିଷୟରେ ଜାଣିଥିବାରୁ ମୋତେ ସେତେ ଅସୁବିଧା ହେଲା ନାହିଁ । ଆମ ଶିକ୍ଷାକେନ୍ଦ୍ରରେ ପ୍ରତି ମାସରେ ଶିକ୍ଷାକମିଟି ବୈଠକ କରୁଛୁ । କମିଟି ଶିକ୍ଷାକେନ୍ଦ୍ରକୁ କିପରି ଆଗେଇ ନେଇପାରିବା ଓ ସେଥିପାଇଁ ଅନୁଦାନକୁ ଠିକ୍ ଭାବରେ

ବିନିଯୋଗ କରିବା ସେ ବିଷୟରେ ସ୍ଥିର କରିଛନ୍ତି । ସେଥିପାଇଁ ଆମେ ଛେଳି ଚାଷ ଓ ଋତୁକାଳୀନ ବ୍ୟବସାୟ କରିବା ପାଇଁ ଠିକ୍ କରିଛୁ । ତା ସହିତ ପିଲାମାନଙ୍କୁ ନେଇ ଗୋଟିଏ କୁକୁଡ଼ା ଫାର୍ମ କରିବା ପାଇଁ ସ୍ଥିର କରିଛୁ । ସେହି କୁକୁଡ଼ାକୁ ପିଲାମାନେ ହିଁ ଦେବେ । ବର୍ତ୍ତମାନ ଏପ୍ରିଲ ମାସ ଶେଷ ସୁଦ୍ଧା କୁକୁଡ଼ା ରଖିବା ପାଇଁ ଘର ତିଆରି କରିବାକୁ ସ୍ଥିର କରିଛୁ ।

ଆମ ସ୍କୁଲର ପିଲାମାନେ ସ୍କୁଲର ଗୃହ ଚାରିପଟେ ବାଡ଼ି କରି ସେହି ଭିତରେ ବିଭିନ୍ନ ପ୍ରକାର ଗଛ ଲଗାଇଛନ୍ତି । ସ୍କୁଲ ଗୃହରେ ଛଅ ମାସ ହେଲାଣି ମୁଁ ରହୁଛି । ପୂର୍ବରୁ ମୁଁ ଶ୍ୟାମସୁନ୍ଦର କହଁରଙ୍କ (ସଭାପତି) ଘରେ ରହୁଥିଲି ଓ ଗାଁର ଗୋଟିଏ ଭଙ୍ଗା ମଣ୍ଡପରେ ପାଠ ପଢ଼ାଇବାକୁ ଆରମ୍ଭ କଲି । ସେଠାରେ ଅନେକ ଦିନ ଧରି ପିଲାମାନଙ୍କୁ ପାଠ ପଢ଼ାଉଥିଲି । ଯେତେବେଳେ ମୁଁ ସଭାପତିଙ୍କ ଘରେ ରହୁଥିଲି, ସେ ମୋତେ ନିଜର ପୁଅ ଭାବି ରଖିଥିଲେ । ମୁଁ ତାଙ୍କ ଘରେ ରହିବାବେଳେ ତାଙ୍କ ଘର କାମରେ ସାହାଯ୍ୟ କରୁଥିଲି । ତାଙ୍କର ହଳ ମଧ୍ୟ କରିଦେଇଛି । ଆମ ଶିକ୍ଷାକେନ୍ଦ୍ରରେ ମୋଟ ୨୫ଜଣ ପିଲା ଥିଲେ । ସେଥିମଧ୍ୟରୁ ୩ ଜଣ ପିଲା ଆଶ୍ରମ ସ୍କୁଲକୁ ପଢ଼ିବାକୁ ଗଲେ । ତେଣୁ ୨୨ ଜଣ ପିଲା ଅଛନ୍ତି । ପିଲାମାନଙ୍କର ପାଠ ପଢ଼ିବା ପାଇଁ ବହୁତ ଆଗ୍ରହ ଅଛି । କିନ୍ତୁ ତାଙ୍କର ବାପା ମାଆମାନେ ଛୋଟ ପିଲା ହେଲେ ମଧ୍ୟ ସେମାନଙ୍କୁ କାମ ଧନ୍ଦାରେ ଲଗାଇ ଦେଉଛନ୍ତି । ପିଲାମାନଙ୍କୁ ପାଠ ପଢ଼ାଇବା ପାଇଁ ମୋର ବହୁତ ଆଗ୍ରହ ବି ଅଛି । ତେଣୁ ପିଲାମାନେ ମୋତେ ତାଙ୍କର ଜଣେ ଗାଁଭାଇ ବୋଲି ଭାବୁଛନ୍ତି ।

ବର୍ତ୍ତମାନ ଅଗ୍ରଗାମୀର ତାଲିମ ମୋତେ ଭଲ ସାହାଯ୍ୟ କରୁଛି । ପିଲାମାନଙ୍କୁ ପଢ଼ାଇବାବେଳେ କେତେ କଷ୍ଟ ତାହା ନିଜେ ଅନୁଭବ କରୁଛି । ମୁଁ ପିଲାମାନଙ୍କୁ ନାଚ, ଗୀତ, ଗପ ଓ ପରିଭ୍ରମଣ ମାଧ୍ୟମରେ ପଢ଼ାଉଛି । ପିଲାମାନେ ବି ଖୁସି ହେଉଛନ୍ତି । ଶିକ୍ଷାକମିଟିର ସଭ୍ୟ/ସଭ୍ୟାମାନେ ମଧ୍ୟ ସପ୍ତାହକୁ ଦୁଇ ଥର ଲେଖାଏଁ ଶିକ୍ଷାକେନ୍ଦ୍ର ପରିଦର୍ଶନରେ ଆସୁଛନ୍ତି । ସେମାନେ ପିଲାମାନଙ୍କୁ ନାଚ, ଗୀତ, ଗପ, ଲୋକକଥା ଆଦି କହୁଛନ୍ତି । କିନ୍ତୁ ଗାଁରେ ଗୋଟିଏ ଛୋଟ ସମସ୍ୟା ଦେଖାଯାଇଛି । ସେମାନଙ୍କ ମଧ୍ୟରେ ଦୁଇ ଦଳ ହୋଇଛନ୍ତି । ଗୋଟିଏ ଦଳ ଅଗ୍ରଗାମୀକୁ ପସନ୍ଦ କରୁଛନ୍ତି ଓ ଅନ୍ୟ ଦଳଟି ପସନ୍ଦ କରୁନାହାଁନ୍ତି । କିନ୍ତୁ ପିଲାମାନଙ୍କୁ ପାଠ ପଢ଼ାଇବାକୁ ପଠାଉଛନ୍ତି ।

ଆମ ପ୍ରକଳ୍ପର କର୍ମୀମାନେ ମଧ୍ୟ ଆସି ଗାଁର ସୁବିଧା ଅସୁବିଧା ବୁଝୁଛନ୍ତି । ପିଲାମାନଙ୍କର ପାଠ ପଢ଼ା ମଧ୍ୟ ଦେଖିଯାଉଛନ୍ତି । ବର୍ତ୍ତମାନ ଆମ ସ୍କୁଲର ପିଲାମାନେ ଅ, ଆ ଠାରୁ କ୍ଷ, ୟ, ଲ ପର୍ଯ୍ୟନ୍ତ ପ୍ରାୟ ଆଠ ଦଶ ଜଣ ଲେଖିପାରିଲେଣି । ଆଉ କେତେ ଜଣ ବହି ପଢି ପାରିଲେଣି । ଆଉ କେତେଜଣ ପିଲା ମଧ ୧ ଠାରୁ ୧୦୦ ପର୍ଯ୍ୟନ୍ତ ପଢି ଓ ଲେଖିପାରୁଛନ୍ତି । ଗାଁରେ ରହି ବାପା, ମାଆମାନଙ୍କୁ ଦସ୍ତଖତ ମଧ୍ୟ ୪/୫ ଜଣଙ୍କୁ ଶିଖାଇଦେଲିଣି । ତା' ସହିତ ଗାଁର ଗୋଟିଏ ପୋଲ ଭାଙ୍ଗିଯାଇଥିଲା ତାକୁ ସଭାପତି ଓ ମୁଁ ମିଶି ସଜାଇଛୁ । ଗୁରୁଭାଇ ହିସାବରେ ମୁଁ ଏତକ କାର୍ଯ୍ୟ ସମ୍ପାଦନ କରିପାରିଛି । ମୋ ମତରେ ଆମେ ଯେଉଁଠାରେ ରହି କାମ କରୁଛୁ ତାହାହିଁ ଆମର କର୍ମକ୍ଷେତ୍ର । ସେଠାରେ ରହି ଖାଲି ସ୍କୁଲ କରାଇଦେଲେ ଲୋକମାନଙ୍କର ଅସୁବିଧା ଦୂର ହୋଇଯିବ ନାହିଁ । ପାଠ ପଢ଼ାଇବା ସଙ୍ଗେ ସଙ୍ଗେ ଆମକୁ ଲୋକମାନଙ୍କର ସୁବିଧା ଅସୁବିଧାରେ ସହଯୋଗ କରିବା ଦରକାର । ତାହା ନ ହୋଇପାରିଲେ ଲୋକମାନେ ଆମକୁ ସେମାନଙ୍କର ସାଥୀ ବୋଲି ଗ୍ରହଣ କରିବେ ନାହିଁ । ଏହାକୁ ଭାବି ଆମେ କାମ କରିବା ଦରକାର ।

ଆମ ଗାଁର ପିଲାମାନେ କିପରି ପାଠପଢ଼ା ମାଧ୍ୟମରେ ନିଜର ସୁବିଧା ଅସୁବିଧା କଥା ବୁଝିପାରିବେ ସେଥିପାଇଁ ଅଗ୍ରଗାମୀରୁ ଦିଆଯାଇଥିବା ଚିତ୍ର ବହିକୁ ଦେଖାଇ ପିଲାମାନଙ୍କୁ ସେମାନଙ୍କର ସାମାଜିକ କଥାକୁ ଜଣାଉଛୁ । ପ୍ରତ୍ୟେକ ଦିନ ସ୍କୁଲ ଚାଲିଛି । ପିଲା, ଗାଁ ଓ ଅଗ୍ରଗାମୀ ଭିତରେ ଏକ ସଂପର୍କ ରଖିବା ଉପରେ ସମସ୍ତେ ଗୁରୁତ୍ୱ ଦେବା ପାଇଁ ଏହି ପତ୍ରିକା ମାଧ୍ୟମରେ ଜଣାଉଛି ।


ସୁଶାନ୍ତ ପ୍ରଧାନ

ତାଲପଙ୍ଗା ନବସୃଜନ ଶିକ୍ଷାକେନ୍ଦ୍ର,

ଡେରାକୁମ୍ପା, କନ୍ଧମାଳ


□□□

# ପିଲାଙ୍କ ସାଙ୍ଗରେ ଗୋଟିଏ ଆନନ୍ଦ ମୁହୂର୍ତ୍ତ

ମୋଡ଼ ତରଫରୁ ପାପରମେଟଲା ପଞ୍ଚାୟତ ଖଜୁରୀଗୁମ୍ମାରେ ଗୋଟିଏ ନବସୃଜନ ଶିକ୍ଷାକେନ୍ଦ୍ର ଚାଲିଛି । ସ୍କୁଲ ଚାଲିବାର ପ୍ରାୟ ଚାରିମାସ ହେଲାଣି, ଏହି ଗାଁରେ ଚାରିଆଡେ ପାହାଡ଼ ପର୍ବତ ଘେରା ମଝିରେ ଗାଁ । ଆଉ ଗାଁର ଦୁଇ କଡରେ ଝରଣାଟି ବୋହିଯାଉଛି । ଏହି ଗାଁର ପ୍ରାୟ ଅଧିକାଂଶ ଆଦିବାସୀ ଲୋକ ବସବାସ କରନ୍ତି । ଏଠାରେ କନ୍ଧ ଓ ପରଜା ଜାତିର ଆଦିବାସୀମାନେ ବାସ କରନ୍ତି । ଏମାନଙ୍କର ମୁଖ୍ୟ ପେଷା ଡଙ୍ଗର ମାରି ଚାଷ କରିବା । ଡଙ୍ଗର ଠାରୁ ଧାନ, ମାଣ୍ଡିଆ, ସୁଆଁ, କୋଶଳା, କାନ୍ଦୁଲ, ମକା, ଜଡ଼ା ସବୁପ୍ରକାର ଜିନିଷ ପାଆନ୍ତି । ସ୍କୁଲ ଆସିବାବେଳେ ପିଲାମାନେ କନ୍ଧ ଭାଷାରେ କଥା ହୁଅନ୍ତି । ଦିନେ ପିଲାମାନଙ୍କୁ ଜଙ୍ଗଲକୁ ବୁଲାଇବାକୁ ଡାକି ନେଇଥିଲି । କେତୋଟି ଗଛର ନାଁ ପିଲାମାନଙ୍କୁ ପଚାରିବାରୁ ସେମାନେ ୫୫ ପ୍ରକାର ଗଛର ନାମ କହିଲେ । ସେହି ଗଛ ଗୁଡିକର ଔଷଧ ଗୁଣ ମଧ କହିଲେ । ଗାଁକୁ ଛାଡି ପ୍ରାୟ ୫୦୦ମିଟର ଦୂର ପର୍ଯ୍ୟନ୍ତ ସେମାନଙ୍କୁ ଡ଼ାକି ନେଇଥିଲି । ସେହି ପାଖରେ ଝରଣାଟିଏ ବୋହି ଯାଉଛି । ତାହାର କଡ଼େ କଡ଼େ ନାନା ପ୍ରକାର କଦଳୀଗଛ ଓ ଅମୃତଭଣ୍ଡା ଗଛ ଲଗାଯାଇଛି । ପିଲାମାନେ ପଥର ଉପରେ ବସି କେତେଜଣ ଗୀତ ଗାଇଲେ ଏବଂ ଆଉ କେତେଜଣ ପିଲା ଝରଣା ପାଣିରେ ଖେଳିଲେ । ପ୍ରାୟ ୨୫ଜଣ ପିଲା ମୋ ସାଙ୍ଗରେ ଯାଇଥିଲେ । ଝରଣା ପାଖରେ ଥିବା କଦଳୀଗଛରେ ଫଳ ଫଳିଛି ଓ ପିଲାମାନେ ଦୁଇଟି କଦଳୀ ଗଛ ଉପାଡିଲେ ।

ମା ବାପାମାନେ ଏଥିପାଇଁ ମଙ୍ଗୁ ନଥିଲେ । କାରଣ ଏଠାରେ ପୁଅ ଓ ଝିଅମାନେ ଅଲଗା ଅଲଗା ଗଛ ଉପାଡିଲେ ଏବଂ କାହାର ବଞ୍ଚିବ ବୋଲି ସେମାନେ ଅଲଗା ଅଲଗା ଗଛ ଗୁଡିକୁ ଲଗାଇଲେ । କିଛି ସମୟ ଝରଣା ପାଣିରେ ଖେଳିଲେ ।

ଏଠାରେ ବଣଭୋଜି କଲେ ଭଲ ହୋଇଥାଆନ୍ତା ବୋଲି ପିଲାମାନେ ମୋତେ କହିଲେ । ଝିଅ ପିଲାମାନେ ବାଉଁଶ ଛତୁ କିଛି ତୋଳିଲେ । ସେହି ଝରଣାକୁ ଡାକି ନେବାରୁ ଝରଣା କୁଳୁକୁଳୁ ଶବ୍ଦ ସହ ସେମାନଙ୍କର ଗୀତର ସୁରକୁ ମିଳାଇ ଗୀତ ଗାଇବାରୁ ମୁଁ ବହୁତ ଖୁସୀ ହେଉଥାଏ । କିଛି ସମୟ ଗଲାପରେ ସେମାନଙ୍କୁ ସବୁ ଗଛରୁ ଦୁଇଟି ଲେଖାଏଁ ପତ୍ର ଆଣିବା ପାଇଁ ପିଲାଙ୍କୁ କହିଲି । ସେମାନେ ସମସ୍ତେ ଅଲଗା ଅଲଗା ଗଛର ପତ୍ର ଆଣିଲେ ଏବଂ ଗଛ ଗୁଡ଼ିକର ନାମ କହିଲେ । ଆଉ ଗଛଗୁଡ଼ିକ ଆମର କି କି ଉପକାରରେ ଲାଗୁଛି ବୋଲି ପଚାରିଲି । ସେମାନେ ଯାହା ଜାଣିଥିଲେ ସେସବୁକୁ କହିଲେ । ସେମାନେ କହିଥିବା ଗଛଗୁଡ଼ିକର ନାମ ହେଲା; ଆମ୍ବ, ପଣସ, କେନ୍ଦୁ, ଟାଙ୍ଗିନୀ, ବାଉଁଶ, ବାୟାକିରିଛି, କିରିଛି, ସନେଲି, ମାଙ୍କଡକେନ୍ଦୁ, କୁଡଇ, କୁସୁମ, କଦଳୀ, କରଞ୍ଜ, ଦଉଡ଼ା, ଅଣ୍ଡେରୀ, ବିଜା, ଅରଗ, ବାନ୍ଧନ, ଡୁମୁରି, ହରିଡ଼ା, ବାହାଡ଼ା, ବାଲିଆ, ଅଁଳା, ପୋଡ଼ଇ, କୁରୁକୁଟି, କଟୁଆ, ସାହାଜ, ବାହୁବିଜା, ମୁଣ୍ଡି, ଶିଆଳି, ଜାମୁକୋଳି, କଣ୍ଟାକୋଳି, ବରଗଛ, ଶିମୁଳି, ଖସି, ମାଞ୍ଜ, ତେନ୍ତୁଳି, କଳିଆରୀ, ପିପ୍ଳ, ବେଲ, ମହୁଲ, ସିନ୍ଦୁର, ରାଓଳି, ପାଳଦା, ସିଉନା, କଦଳୀ, ଲେମ୍ବୁ, ପିଜୁଳି, କାରଡ଼ା, ମଦଇ, ଚନ୍ଦନ, ସଳପ ଇତ୍ୟାଦି । କେଉଁ ଗଛ କି କାମରେ ଲାଗୁଛି ସେ ବିଷୟରେ ସେମାନେ ଆଦିବାସୀ ଭାଷାରେ କହିଥିଲେ । ନିମ୍ନରେ ସେଗୁଡ଼ିକୁ ଦର୍ଶାଇଲି-

ଆମ୍ବ: ଆମେ ଆମ୍ବ ଫଳକୁ ଖାଉ ଏବଂ ଟାକୁକୁ ଗୁଣ୍ଡକରି ପିଠାକରି ଖାଉ ।

ପଣସ: ତା'ର ଭିତର କସା ଏବଂ ମଞ୍ଜି ଶାଗ ରାନ୍ଧି ଖାଇବେ ।

ଟାଙ୍ଗିନି: ମଞ୍ଜି ଖାଇବେ ଓ ଗଛ ଅଙ୍ଗାର ପାଇଁ ଦରକାର ହୁଏ ।

କେନ୍ଦୁ: କେନ୍ଦୁ ଫଳ ଖାଇବେ ଏବଂ ପତ୍ରକୁ ଖଲି ତିଆରି କରିବେ ।

ତେନ୍ତୁଳି: ଖାଇବେ ଓ ମଞ୍ଜିକୁ ବିକିବେ ।

ବାଉଁଶ: ବାଉଁଶରୁ ତାଟ ଏବଂ ଟୋକେଇ ତିଆରି କରି ବିକିବେ, ଘର ତିଆରି କରିବେ ।

ଶିଆଳି: ମଞ୍ଜି ଖାଆନ୍ତି, ପତ୍ରକୁ ଖଲି ତିଆରି କରି ବିକ୍ରୀ କରନ୍ତି ଏବଂ ଦଉଡି ତିଆରି କରନ୍ତି ।

କୈଳାରୀ: ଏହି ଗଛର ଡାଳକୁ ଶାଗ କରି ଖାଆନ୍ତି ।

ବେଲ: ଡୁମୁରି, ପଢ଼ଇ : ଏହାର ଫଳକୁ ଖାଆନ୍ତି ।

ଅଁଳା: ହରିଡ଼ା, ବାହାଡ଼ା : ଫଳ ଖାଆନ୍ତି ।

ବଲିଆ, ଅଣ୍ଡେରୀ, କୁସୁମ : ଫଳ ଖାଆନ୍ତି ଓ ମଞ୍ଜିକୁ ତେଲ କରନ୍ତି ।

ମହୁଲ : ଫୁଲ ବିକ୍ରୀ ହୁଏ ଏବଂ ଟୋଲାକୁ ତେଲ କରନ୍ତି ଏବଂ ଏହାର ତେଲକୁ ସାଗରେ ପକାଇ ଖାଆନ୍ତି ।

କିରିଛି : କିରିଛିର ମଞ୍ଜିକୁ ତେଲ କରନ୍ତି ଓ ସେହି ତେଲକୁ ଖାଆନ୍ତି ।

ଚନ୍ଦନ, ସିନ୍ଦୁର, ଜାଫ୍ରା : ଏହାକୁ ସବୁ ବିକ୍ରୀ କରନ୍ତି ।

କଣ୍ଟାକୋଳି, ଚାରକୋଳି, ଜାମୁକୋଳି : ଏସବୁକୁ ଆମେ ଖାଉ ।

ପିପ୍‌ଳି : ପତ୍ରକୁ ଆଦିବାସୀମାନେ ପୂଜାରେ ଖଲି ତିଆରି କରନ୍ତି ।

ପିଆଶାଳ, ବାଲୁବିଜା, ମୁଣ୍ଡି, ବିଜା : ଏଗୁଡିକରେ ଘର, ଖଟ ତିଆରି କରନ୍ତି ।

***କେତୋଟି ଗଛର ଔଷଧୀୟ ଗୁଣ :***

କୁସୁମ, କରଞ୍ଜ: ଏହି ଗଛର ମଞ୍ଜିର ତେଲକୁ ହାତରେ ଗୋଡରେ ଲଗାଇ ହୁଅନ୍ତି । ଏହି ତେଲ ପିତା ଲାଗେ । ତେଣୁ ମଶା ମାଛି କାମୁଡ଼ନ୍ତି ନାହିଁ ।

ପାଲଦା, ଅରଖ: ଏକ ପ୍ରକାର ଔଷଧୀୟ ଗୁଣ ।

ମାଞ୍ଜ: ଏହି ଗଛର ଚେରକୁ ନେଇ ମାଛ ମାରନ୍ତି ।

କାଟୁଆ: ଏହି ଗଛର ଫଳକୁ ନେଇ ମାଛ ମାରନ୍ତି ।

ଏହି ସବୁ ଗଛର ଗୁଣ ପଚରା ହେଲା, ଶେଷରେ ପିଲାମାନେ ଖୁସୀହୋଇ ଘରକୁ ଫେରିଲେ ଏବଂ ଆଉଥରେ ପୁଣି ଜଙ୍ଗଲ ଯିବାକୁ କହିଲେ ।

ଜଗୁ ଡୁରୁ

ଖଜୁରୀଗୁମ୍ମା, ଚିତ୍ରକୋଣ୍ଡା

□□□

# ମୋ ବର୍ଷକର ଅନୁଭୂତି

କାଶୀପୁର ବ୍ଲକ୍ ଅଡାଜୋର ଗାଁର ଅଡିଗୁନା ହେଉଛି ଗୋଟିଏ ପଡା । ଏଠାରେ ସମୁଦାୟ ୪୦ ଘର ଅଛି । ଗାଁଟିର ଚାରିପାଖରେ ପାହାଡ଼, ଝୋଲା ଓ ଡଙ୍ଗର ଅଛି । ଅଡାଜର ଠାରେ ଅଗ୍ରଗାମୀର ଏକ ଅଫିସ ଅଛି । ଏଠାରୁ ରହି କର୍ମୀମାନେ ଗାଁଗୁଡିକର ସୁବିଧା ଅସୁବିଧା ବୁଝନ୍ତି । ଏଠାରେ ସବୁକାମ ଚାଲିଥିଲା । କିନ୍ତୁ ଭଲ ସ୍କୁଲଟିଏ ଚାଲିପାରିନଥିଲା । ବର୍ଷକ ତଳେ ଗାଁରେ ଅଗ୍ରଗାମୀ ତରଫରୁ ନବସୃଜନ ସ୍କୁଲ କରାଯାଇଛି । ଗାଁଟି ଚାରି ପାଖରେ ପାହାଡ଼ ମଝିରେ ରହିଥିବାରୁ ଏଠାକୁ ଆସିବାକୁ ହେଲେ ପାହାଡ଼ ଚଢିବାର ସାହସ ଥିବା ଲୋକ ହିଁ ଏଠାକୁ ଆସିପାରିବେ । ଲୋକମାନେ ବାହାର ଦୁନିଆଁ ସହିତ ସେତେ ପରିଚିତ ନୁହଁନ୍ତି । ଏହି ଗାଁର ଲୋକମାନେ ଖାଇବାର ଅସୁବିଧା ହେତୁ ବଣର କନ୍ଦା ଓ ଛତୁ ଖାଇ ବଞ୍ଚନ୍ତି । ଏହିପରି ଏକ ଅବହେଳିତ ଗାଁକୁ ମୋର ଜନ୍ମ ମାଟି ବୋଲି ଭାବି ଶିକ୍ଷକ ଭାବେ ଆଜିକୁ ବର୍ଷେ ତଳୁ କାମ କରିଆସୁଛି । ଗାଁରେ ଜଣେ ପରିବାରର ସଦସ୍ୟ ଭାବେ ରହିଛି ।

ବର୍ଷେ ତଳେ ଯେତେବେଳେ ଗାଁକୁ ଗଲି ପ୍ରଥମେ ସ୍କୁଲ କରିବା ପାଇଁ ଲୋକମାନଙ୍କ ସାଙ୍ଗରେ ଆଲୋଚନା ହେଲା । ଲୋକମାନଙ୍କ ସାଙ୍ଗରେ କଥା ହେବା ସମୟରେ ସ୍କୁଲ ସହିତ ଗାଁର କଥା ମଧ୍ୟ ହେଲୁ । ଗାଁରୁ ବାହାରିଥିବା ନାନାବିଧ ଅସୁବିଧା ଭିତରେ ପାଠପଢ଼ା କଥା ମଧ୍ୟ ଉଠିଲା । ଏହାକୁ କିପରି କରାଯାଇପାରିବ ଏବଂ ଅଗ୍ରଗାମୀ ଏଥିପାଇଁ ସ୍କୁଲ ଦେବାକୁ ରାଜି ଅଛି । ତୁମେ ସ୍କୁଲ କରିବ କି ନାହିଁ ପଚାରିବାକୁ ଲୋକମାନେ ରାଜି ହେଲେ । ଏଥିପାଇଁ ସେମାନଙ୍କୁ ସ୍କୁଲ ଘରି କରିବାକୁ ପଡିବ ବୋଲି କହିବାରୁ ସେମାନେ ରାଜି ହେଲେ । ଗାଁରେ କୌଣସି ପଢିବା ଲୋକ ନଥିବାରୁ ତାହା ଦେଖି ଆଶ୍ଚର୍ଯ୍ୟ ଲାଗିଲା । ସେଥିପାଇଁ ଗାଁରେ ବିଭିନ୍ନ ଅସୁବିଧା ଥିବାର

ଜଣାଗଲା । ଯିଏ ଯାହା କହିଲା ହଁ ଆଜ୍ଞା ବୋଲି କହିବା ଏଠାରେ ମଧ୍ୟ ରହିଛି । ତେଣୁ ଏହାକୁ ଦୂର କରିବା ପାଇଁ ଆମକୁ ଚେଷ୍ଟା କରିବାକୁ ଭାବିଲାବେଳକୁ ମୋତେ ବହୁତ ବଡ ବୋଝ ଭଳି ଲାଗୁଥାଏ । ତଥାପି ଏହାକୁ ଦୂର କରିବା ପାଇଁ ଆସିଛି ଏବଂ କରିବି ବୋଲି ଭାବି ନିଜକୁ ପ୍ରସ୍ତୁତ କରିନେଲି । ପୂର୍ବପୁରୁଷରୁ ଶିକ୍ଷା ଏଠାରେ ପଛରେ ପଡିଛି । ହଠାତ୍ ତାହା ହୋଇପାରିବ ନାହିଁ । ଗାଁରେ ସ୍କୁଲ କରାଯିବା ପରେ ଦେଖିଲି ଗାଁରେ ୪୦ଜଣରୁ ଅଧିକ ପିଲା ଅଛନ୍ତି । କିନ୍ତୁ ସେଥିରୁ ୨୫ଜଣ ପିଲା ଆସୁଛନ୍ତି । ଆପଣ ଭାବୁଥିବେ ଯେ, ଏତେ କମ୍ ପିଲା କିପରି ଆସୁଛନ୍ତି । ଏହାର କାରଣ ହେଲା ଘରଗୁଡିକ ଛଡା ଛଡା ଓ ମଝିରେ ନାଳ ମଧ୍ୟ ପଡୁଛି । ବାପା ମା'ମାନେ ଶିକ୍ଷିତ ନୁହନ୍ତି ତେଣୁ ବେଳେବେଳେ ଅବହେଳା କରୁଛନ୍ତି । ଅନେକ ଘରେ ପିଲାମାନେ ଘର କାମରେ ବହୁତ ବ୍ୟସ୍ତ ରହୁଛନ୍ତି । ତଥାପି ସେମାନଙ୍କୁ ପଢାଇବା ପାଇଁ ଦାୟିତ୍ୱ ନେଲି । ପିଲାମାନଙ୍କୁ ସବୁଦିନେ ସ୍କୁଲକୁ ପଠାଇବାର ବ୍ୟବସ୍ଥା କରିବା ପାଇଁ ଶିକ୍ଷା କମିଟିର ସଭ୍ୟ/ସଭ୍ୟାମାନଙ୍କ ଅନୁରୋଧ କଲି । ପିଲାମାନେ ସ୍କୁଲକୁ ଆସିଲା ପରେ ସେମାନଙ୍କ ସଙ୍ଗରେ ମିଶିଲି ସେମାନେ ପଢିଲେ କ'ଣ କ'ଣ ଶିଖିପାରିବେ ସେକଥା ଲୋକମାନଙ୍କୁ କହିଲି । ପିଲାମାନେ ଦିନରେ କମ୍ ଆସିଲେ ମଧ୍ୟ ରାତିରେ ସମସ୍ତେ ଆସୁଛନ୍ତି । ଯିଏ ଯେତିକି ପଢିପାରୁଛି ତାହାକୁ ସେତିକି ପଢାଉଛି । ଧୀରେ ଧୀରେ ପିଲାମାନେ ଅଧିକରୁ ଅଧିକ ଜାଣିପାରୁଛନ୍ତି । ସ୍କୁଲ ମଧ୍ୟ ଭଲରେ ଚାଲୁଛି ।

ମୁଁ ଖାଲି ଶିକ୍ଷକ ଭାବରେ ଏଠାରେ କାମ କରୁନାହିଁ ବରଂ ଗାଁର ଜଣେ ଦାୟିତ୍ୱବାନ୍ ସଦସ୍ୟ ଭାବରେ ସବୁ ସୁବିଧା ଅସୁବିଧା ବିଷୟରେ ବୁଝୁଛି । ଗାଁର ଦ୍ୱିତୀୟ ସମସ୍ୟା ଥିଲା ରୋଗ । ଗାଁ ଦାୟିତ୍ୱରେ ଥିବା ଏ.ଏନ.ଏମ୍. ଦିଦିଙ୍କୁ ଘାଟି ଚଢ଼ି ଆସେ ନାହିଁ । ତେଣୁ ଲୋକମାନେ ଝାଡା କିମ୍ବା ଜର ହେଲେ ଔଷଧ ଖାଆନ୍ତି ନାହିଁ । ଦିଦିଙ୍କ ଠାରୁ ବିଭିନ୍ନ ଔଷଧ ବିଷୟରେ ଜାଣିବା ସଙ୍ଗେ ସଙ୍ଗେ ସେଥିପାଇଁ ଯେଉଁ ଯେଉଁ ଔଷଧ ଦରକାର ନିଜେ ଆଣି ପାଖରେ ରଖି ଲୋକମାନଙ୍କୁ ଦେଉଛି । ମଝିରେ ନଳକୂଅ ଖରାପ ହୋଇଯାଇଥିବାରୁ ଲୋକମାନେ ନଦୀରୁ ପାଣିପିଇ ରୋଗରେ ପଡୁଥିଲେ ତାହାକୁ ଫୁଟାଇ ପିଇବା ପାଇଁ କହିବାରୁ ଲୋକମାନେ ତାହା ମଧ୍ୟ କଲେ । ମୁଁ ଲୋକମାନଙ୍କୁ ପରିବେଶ ସୁରକ୍ଷା ବିଷୟରେ ମଧ୍ୟ ସଚେତନ କରିଛି । ପିଲାମାନଙ୍କୁ ନେଇ ମଝିରେ ମଝିରେ ଗାଁ ଦାଣ୍ଡ ସଫା କରିଛି । ଗାଁ ମିଟିଂରେ ସେମାନେ କିପରି

ଘରଦ୍ୱାର ସଫା ରଖିବେ ଏବଂ ଖାଉଥିବା ହାଣ୍ଡିକୁ ସଫା ରଖିବେ ସେ କଥା ମଧ୍ୟ ଆଲୋଚନା କରିଛି । ନିଜ ନିଜ ଘର ଚାରିପଟ ସଫା ରଖିବା ପ୍ରତି ଧ୍ୟାନ ଦିଆଯାଉଛି । ଗାଁକୁ ଛାଡିଦେଲେ ସମସ୍ତଙ୍କ କଥା ମଧ୍ୟ ଲୋକମାନେ ଭାବୁଛନ୍ତି । ବର୍ତ୍ତମାନ ଦେଖାଯାଉଛି ଯେ ଅନ୍ୟାନ୍ୟ ଗାଁର ଲୋକମାନେ ଜଙ୍ଗଲ କାଟି ସଫା କରିଦେଉଛନ୍ତି । ଯାହାଦ୍ୱାରା କି ଲୋକମାନେ କାଠ ଖଣ୍ଡିଏ ଆଣିବା ପାଇଁ ଅନେକ ଦୂର ଯାଉଛନ୍ତି । ଏପରି ଅବସ୍ଥା ଜାରି ରହିଲେ ଭବିଷ୍ୟତରେ ଲୋକମାନେ ଆଗକୁ ବହୁତ ହଇରାଣ ହେବେ ।

ଏହାକୁ ଆଖିଆଗରେ ରଖି ଗାଁର ଲୋକମାନେ ଗାଁ ଜଙ୍ଗଲକୁ ସୁରକ୍ଷା କରିଛନ୍ତି । ସେମାନେ ସେଥିରୁ କାହାକୁ ଗଛ କାଟିବାକୁ ଦେଉନାହାନ୍ତି । ଜଙ୍ଗଲଟି ତାଙ୍କ ଗାଁର ବୋଲି ସେମାନେ ତାହାକୁ ଜଗୁଛନ୍ତି । ଗଛ ବଡ ହେଲେ ଗାଁର ଲୋକମାନେ ସେଥିରୁ ବନଜାତ ଦ୍ରବ୍ୟ ସଂଗ୍ରହ କରିବେ ଏବଂ ଯାହାର କାଠ ଦରକାର ହେବ ସେମାନେ କାହାକୁ କେତେ ଓ କିପରି ଦେବେ ତାହା ସେମାନେ ଠିକ୍ କରିବେ । ଏହାଦ୍ୱାରା ଲୋକମାନେ ପରିବେଶ ସୁରକ୍ଷା ବିଷୟରେ ଜାଣୁଛନ୍ତି ଏବଂ ଜଙ୍ଗଲ ନଷ୍ଟ ନକରିବା ପାଇଁ ବାହାରିଛନ୍ତି ।

ଗାଁରେ ପିଇବା ପାଣିର ବହୁତ ଅସୁବିଧା ଥିବାରୁ ଏହା ଗ୍ରାମ ସଭାରେ ପକାଇବା ପାଇଁ ଲୋକମାନଙ୍କୁ କହିଛି । ଏକଥା ସରପଞ୍ଚ ଓ ସମିତି ସଭ୍ୟଙ୍କୁ ମଧ୍ୟ କୁହାଯାଇଛି । କିନ୍ତୁ ଏଠାରେ ଗ୍ରାମ ପଞ୍ଚାୟତର ସଭା କେତେବେଳେ ହେଉଛି କିଛି ଜଣାଯାଉନାହିଁ । ଲୋକମାନେ ମଧ୍ୟ ସେଠାକୁ କେବେ ଯାଇନାହାନ୍ତି । ସେମାନେ ଯଦି ଗ୍ରାମସଭା ବିଷୟରେ ଜାଣିବେ ନାହିଁ ତେବେ ପଞ୍ଚାୟତ କଥା ମଧ୍ୟ କିଛି ଜାଣିପାରିବେ ନାହିଁ । ଏକଥା ଗାଁରେ ଆଲୋଚନାବେଳେ ଅନେକ କଥା ଆସିଲା । ସେମାନେ ପଞ୍ଚାୟତିରାଜ ବିଷୟରେ କିଛି ଜାଣି ନାହାନ୍ତି । ତାଙ୍କୁ ଏ ବିଷୟରେ କହିବ ଅବା କିଏ ? ପ୍ରତିନିଧିମାନେ ଲୋକମାନଙ୍କୁ ନଡକାଇ ଏହା କରିଦେଉଛନ୍ତି । ଯାହାଦ୍ୱାରା ସେମାନେ ସେମାନଙ୍କ ମନଇଚ୍ଛା ଯୋଜନା କରିଦେଇ ତା ନାଁରେ ଠକି ଚାଲିଛନ୍ତି । ଏକଥା ଉପରେ ସମସ୍ତ ଗାଁରେ ଆଲୋଚନା ହେବା ଦରକାର । ପିଲାମାନଙ୍କ ପାଇଁ ଆସୁଥିବା ଅଙ୍ଗନବାଡ଼ି ଖାଦ୍ୟ ମଧ୍ୟ ମିଳିନାହିଁ । ଏ ବିଷୟରେ ସୁପରଭାଇଜରଙ୍କୁ କୁହାଯାଇଛି । ସେ ଗାଁ ଲୋକଙ୍କ ସହିତ କଥାବାର୍ତ୍ତା କରି ଏଥିପାଇଁ ପଦକ୍ଷେପ ନେବେ ବୋଲି କହିଥିଲେ କିନ୍ତୁ ଏ ପର୍ଯ୍ୟନ୍ତ ଗାଁକୁ ଆସିନାହାନ୍ତି । ଏ ବିଷୟରେ ପୁଣିଥରେ

ଲେଖି ଜଣାଇବୁ । ଏହିପରି ବିଭିନ୍ନ ସରକାରୀ ଯୋଜନା ବିଷୟରେ ଲୋକମାନଙ୍କ ସାଙ୍ଗରେ ରହି ଆଲୋଚନା କରିବା ସଙ୍ଗେ ସଙ୍ଗେ ଏହାକୁ କାର୍ଯ୍ୟକାରୀ କରବାକୁ ଚେଷ୍ଟା କରାଯାଉଛି । ଏହିପରି ଯେକୌଣସି ଆଲୋଚନା ଗାଁ ଲୋକମାନଙ୍କ ସଙ୍ଗରେ କରାଯାଉଛି । ଗାଁ ପାଣ୍ଠି, ସ୍କୁଲ ପାଣ୍ଠି, ଶିକ୍ଷା ସ୍ୱାସ୍ଥ୍ୟ, ପରିବେଶ ଓ ବିଭିନ୍ନ ଯୋଜନା ବିଷୟରେ ଆଲୋଚନା କରାଯାଉଥିବାରୁ ଲୋକମାନେ ବିଭିନ୍ନ ବିଷୟରେ ଜାଣିପାରୁଛନ୍ତି । କିଛିଦିନ ତଳେ ବି.ପି.ଏଲ କାର୍ଡ ଉପରେ ଆଲୋଚନା କରାଯାଇଥିଲା । ପୂର୍ବ ମିଟିଂରେ ମଧ୍ୟ ଏହା ଉପରେ ଆଲୋଚନା କରାଯାଇଥିଲା । ଲୋକମାନଙ୍କ ଠାରୁ ୧୦୦୦ଟଙ୍କା ଲେଖାଏଁ ନେଇ ଜଣେ ହରିଜନ ଲୋକମାନଙ୍କୁ କାର୍ଡ କରାଇଦେବ ବୋଲି କହି ଠକିବାକୁ ବସିଥିଲା । ଲୋକେ ମୋତେ ତାହା କହିଥିଲେ ମୁଁ ଏ ଖବର ପାଇବା ପରେ ଲୋକମାନଙ୍କୁ ଏକଥା ପଚାରିଲି । ଲୋକମାନେ ମୋତେ ସତକଥା କହିଲେ । ମୁଁ ଲୋକମାନଙ୍କୁ ପଇସାଦେବା ପାଇଁ ମନାକଲି ଏବଂ ବି.ଡି.ଓ ଙ୍କୁ ଏ ବିଷୟରେ ଲେଖିକରି ଜଣାଇବା ବୋଲି କହିଲି । ତାହା ମଧ୍ୟ କରାଯାଇଥିଲା । ଏଣୁ ସେ ମୋ ଉପରେ ଅନେକ ରାଗିଛି । ସେ ମଧ୍ୟ ଥରେ ସ୍କୁଲକୁ ଆସି ମୁଁ କାହିଁକି ପୁରୁଣା ପ୍ରଣାଳୀରେ ପଢ଼ାଉନାହିଁ ବୋଲି କହିଲା । ମୁଁ ତାକୁ ପଢ଼ା ବିଷୟରେ ବୁଝାଇବାରୁ ସେ କିଛି କହିଲା ନାହିଁ । ଶୁଣୁଛି ସେ ମୋ ବିରୁଦ୍ଧରେ ଏଣେ ତେଣେ ଅନେକ କଥା କହୁଛି । ମୁଁ ଜାଣିଛି ଯେ ଯେଉଁମାନେ ଭଲ କାମ କରିବେ ସେମାନେ ଗାଳିମନ୍ଦ ସବୁ ସହିବେ । ତେଣୁ ଜୋରଦେଇ କହୁଛି ଯେ ମାଡ଼ ଖାଇବି ପଛେ ନିଜ ବାଟରୁ ଓହରିବି ନାହିଁ ।

ଏହାଛଡା ପୂର୍ବରୁ ରହି ଆସିଥିବା ଠକେଇ ଓ ଶୋଷଣ ଉପରେ ମଧ୍ୟ ଧ୍ୟାନ ଦେବାକୁ ପଡୁଛି । ଲୋକମାନେ ମୋତେ ନିଜର ବୋଲି ଭାବୁଥିବାରୁ ଅନେକ କଥା ଆଲୋଚନା କରିପାରୁଛି । ସେମାନଙ୍କ ବଞ୍ଚିବା ଉପରେ କାମ କରିବା ପାଇଁ ସମସ୍ତ କଥା ଆମକୁ ଜାଣିବାକୁ ଓ ବୁଝିବାକୁ ହେବ ଏକଥା ଅଗ୍ରଗାମୀ ସବୁବେଳେ କହିଆସିଛି । ତାହାକୁ ସଫଳକରିବା ପାଇଁ ଚେଷ୍ଟା କରୁଛି । ଏହି ଗାଁର ଲୋକମାନଙ୍କ ଭିତରେ ରହି କାମ କରୁଥିବାରୁ ଗାଁର ଲୋକ ଭାବରେ ଗାଁର ସବୁ କାମ କରୁଛି । ଏପରିକି ଗାଁର ଲୋକ ମରିଗଲେ ତା'କୁ ମଶାଣିକୁ ନେଉଛି । ସେମାନଙ୍କ ଭିତରେ ରହିଥିବାରୁ ଏବଂ ସେମାନଙ୍କ ଭଳି ବଞ୍ଚୁଥିବାରୁ ଲୋକମାନେ ମୋତେ ଘରର ବୋଲି ଭାବୁଛନ୍ତି ।

ଯେଉଁପିଲା ଦିନେ ମୋତେ ଦେଖି ଡରୁଥିଲା ସେ ଆଜି ନିର୍ଭୟରେ ମୋ ଆଗରେ ବସି କଥା କହିପାରୁଛି । ଏଠାରେ ଯେତେ ସମସ୍ୟା ଥାଉ ପଛକେ ସେଥିପାଇଁ ମୋ ମନରେ କିଛି ହତାଶ ଭାବ ନାହିଁ । ଆଜି ଯଦି ମୁଁ କେଉଁଥିରେ ବିଫଳ ହୋଇଛି କାଲି ସେଥିରେ ସଫଳ ହେବି ବୋଲି ମୋର ବିଶ୍ୱାସ ରହିଛି । ଯେଉଁଠି ରାତି ଅଛି ସେଠି ଦିନ ହେବା ସୁନିଶ୍ଚିତ । ଏଣୁ ଆମେ ବାଧାବିଘ୍ନକୁ ସହ୍ୟକରି ତାକୁ ଅତିକ୍ରମ କରିବାକୁ ଚେଷ୍ଟା ଓ ଲକ୍ଷ୍ୟ ରଖି ଭବିଷ୍ୟତକୁ ସ୍ୱାଗତ କରିନେବା ଦରକାର ।

**ଅଗ୍ନି ମାଝୀ**

**ନବସୃଜନ ଶିକ୍ଷାକେନ୍ଦ୍ର, ଅଡାଜୋର**



# ଗତ ଅଢ଼େଇ ବର୍ଷ ଭିତରେ ମୋ ଶିକ୍ଷାକେନ୍ଦ୍ରର ଅନୁଭୂତି

ମୋ ନାଁ ଅଗ୍ନିକୁମାର ମାଝୀ । ଶିକ୍ଷାକେନ୍ଦ୍ର ଅଡ଼ିଗୁନା, ଉପକେନ୍ଦ୍ର ଅଡ଼ାଜୋର୍, ପ୍ରକଳ୍ପ କାଶୀପୁର । ଅଢ଼େଇ ବର୍ଷ ଭିତରେ ମୋ ଶିକ୍ଷାକେନ୍ଦ୍ରର ଅନୁଭୂତି ମୁଁ ଏଠାରେ ଉପସ୍ଥାପନ କରୁଛି । ଅଢ଼େଇ ବର୍ଷ ଭିତରେ ମୋ ଗାଁରେ ତଥା ମୋ ଶିକ୍ଷାକେନ୍ଦ୍ରରେ କିଛି ପରିବର୍ତ୍ତନ ନିଶ୍ଚୟ ଆସିଛି । କେନ୍ଦ୍ର ଆରମ୍ଭ ପରେ ଗାଁରେ ଲୋକମାନେ ଶିକ୍ଷାର ମୂଲ୍ୟ ବୁଝି ପାରିଛନ୍ତି । ଆମ ଗାଁରେ କେନ୍ଦ୍ର ଆରମ୍ଭ ପୂର୍ବେ ଶିକ୍ଷାର ନା ମଧ୍ୟ ଲୋକେ ଶୁଣି ନଥିଲେ । ଯାତାୟାତର ଘୋର ଅସୁବିଧା ଥିବାରୁ ସରକାରୀ କର୍ମଚାରୀମାନେ କେବେ ବି ଆସନ୍ତି ନାହିଁ । ପାହାଡ଼ ପର୍ବତ ଘେରା ଟିକିରା ଉପରେ ସମସ୍ତେ ଡଙ୍ଗର ଚାଷ କରି ବଞ୍ଚନ୍ତି । ଉକ୍ତ ଗ୍ରାମର ଲୋକେ କେବଳ ଧଳାକାଗଜ ଉପରେ ମୋହର ମାରି ପ୍ରତିନିଧିଙ୍କୁ ବାଛିବାରେ ହିଁ ସ୍ୱାଧୀନତା ପାଇଛନ୍ତି । କିନ୍ତୁ ସ୍ୱାଧୀନ ଦେଶରେ ମୌଳିକ ଅଧିକାର ପାଇବାରେ ଏବେବି ବଞ୍ଚିତ ହୋଇ ରହିଛନ୍ତି । ଆମ ଗାଁରେ ନା ଶିକ୍ଷା ନା ସ୍ୱାସ୍ଥ୍ୟ ନା ରାସ୍ତାଘାଟ ନା ପିଇବା ପାଣିର ସୁବିଧା ନା ଅନ୍ୟକିଛି ସରକାରୀ ଯୋଜନା ରହିଛି । କେବଳ ଭୋଟ ଦେଇ ପ୍ରତିନିଧିଙ୍କୁ ଜିତାଇବାର ସୁବିଧା (ତଥାପି ଅସୁବିଧା) ରହିଛି ।

ଏପରି ଏକ ଅନୁନ୍ନତ ଓ ନିରକ୍ଷର ଅନ୍ଧକାର ଭିତରେ ଅଗ୍ରଗାମୀ ସଂସ୍ଥା ତରଫରୁ ନବସୃଜନ ଶିକ୍ଷାକେନ୍ଦ୍ର ଖୋଲିବା ଆମ ଗ୍ରାମରେ ଏକ ଅପରିହାର୍ଯ୍ୟ ଆବଶ୍ୟକତା ବୋଲି ମୁଁ ଭାବୁଛି । ଗ୍ରାମର ଲୋକେ ମଧ୍ୟ ଉକ୍ତ କେନ୍ଦ୍ର ପ୍ରତି ଏକମତ ଅଛନ୍ତି । ସେମାନେ ପ୍ରତ୍ୟେକ ମାସିକ ବୈଠକରେ କେନ୍ଦ୍ର ସହ ଓତଃପ୍ରୋତ ଭାବେ ଜଡ଼ିତ ହୋଇ ରହିବା ପାଇଁ କହିଆସୁଛନ୍ତି । ସେମାନଙ୍କ ପାଟିର ଭାଷା ଆଜି ଅନ୍ୟମାନଙ୍କୁ ଜବାବ୍ ଦେଇପାରୁଛି । ଗାଁ କଥା, ପଞ୍ଚାୟତ କଥା, ଭୋଟ ଦେବାର ମୂଲ୍ୟ, ଗ୍ରାମସଭାର

ଉଦ୍ଦେଶ୍ୟ ଆଜି ପ୍ରତ୍ୟେକ କ୍ଷେତ୍ରରେ ଗ୍ରାମବାସୀ ବର୍ତ୍ତମାନ ସଚେତନ ହେଲେଣି । ଏହା ମୁଁ ୨ବର୍ଷ ଭିତରେ ଲକ୍ଷ୍ୟ କରିଆସିଛି । ମୋ ରହିବା ଭିତରେ ସିଲଟଖଡି ଧରି ଲେଖିବା, ପଢ଼ିବା, ବହି ଓଲଟାଇବା ବ୍ୟତୀତ ଲୋକେ ନିଜର ଅଧିକାର ଜାଣିବା ଓ ଅନ୍ତଃସ୍ୱରକୁ ପ୍ରକାଶ କରିବାରେ ତ ବାହାରିଛନ୍ତି । ଏତିକି ମୋତେ ଖୁବ୍ ଖୁସୀ ଲାଗୁଛି । ଏହା ସତେ ଯେ ମୋ ଗାଁରେ ମୋ କେନ୍ଦ୍ରରେ ପିଲାସଂଖ୍ୟା କମିଯାଉଛନ୍ତି । ଏକଥା ପ୍ରତ୍ୟେକ ମାସିକ ବୈଠକରେ ମୁଁ କହିଆସିଛି । ପିଲାସଂଖ୍ୟା କମିବାର କାରଣ ମଧ୍ୟ ମୁଁ ଜଣାଇଛି । ଅଚ୍ୟୁତଭାଇଙ୍କ କାନରେ ମଧ୍ୟ ଏକଥା ପହଞ୍ଚିଲାଣି । ପ୍ରକୃତରେ ଆଗ ଗାଁରେ ପାଠପଢ଼ିଲା ବୟସରେ ସେତେ ପିଲା ଅଧିକ ନାହାନ୍ତି । ଅତି ଛୋଟ ନଚେତ୍ ଅତି ବଡପିଲା ଅଛନ୍ତି । ବଡ ପିଲାମାନେ ଖାଲି କାମଧନ୍ଦାରେ ବ୍ୟସ୍ତ ଓ ଅତି ଛୋଟପିଲାମାନେ ପଢ଼ିବାକୁ ଆସିପାରନ୍ତି ନାହିଁ । ତଥାପି ଆଜି ନହେଲେ ଆସନ୍ତାକାଲି ନିଶ୍ଚୟ ପିଲାସଂଖ୍ୟା ବଢ଼ିବେ ।

ମୁଁ ଗ୍ରାମର ଯୁବକମାନଙ୍କୁ ନେଇ ସ୍କୁଲ କରେ । ବୟସ୍କମାନଙ୍କୁ ଭାଷା ମାଧ୍ୟମରେ ସଚେତନ ହେବା ପାଇଁ ବୁଝାଏ । ସବୁଦିନେ କେନ୍ଦ୍ରରେ ବୟସ୍କ ବ୍ୟକ୍ତି ବସି କିଛି କଥା ଶୁଣିବାକୁ ଇଚ୍ଛା ପ୍ରକାଶ କରନ୍ତି । ମାଆମାନେ ଘରେ ବିଶେଷ କରି କାମ ଧନ୍ଦାରୁ କେନ୍ଦ୍ରକୁ ଆସିପାରନ୍ତି ନାହିଁ । ସେମାନଙ୍କ ପାଖରେ ସମୟ ପାଇଲେ ମୁଁ ନିଜେ ମଧ୍ୟ ଯାଇ ଶିକ୍ଷା, ସ୍ୱାସ୍ଥ୍ୟ ଓ ପରିବେଶ ଉପରେ କହି ଶୁଣାଏ । ଗ୍ରାମରେ ମଦପାଣି ପିଇବା ଅଭ୍ୟାସ ଆଗରୁ ଖୁବ୍ ପ୍ରଚଳିତ ଥିଲା । ତାକୁ ଆସ୍ତେ ଆସ୍ତେ ବର୍ତ୍ତମାନ ଯୁବକମାନଙ୍କୁ ନେଇ ବନ୍ଦ କରାଯାଉଛି । ଗ୍ରାମରେ ମଦ ରାନ୍ଧିବା ଗତ ତା:୧.୫.୨୦୦୦ ରିଖ ଠାରୁ ବନ୍ଦ କରାଯାଇଛି ।

ବର୍ତ୍ତମାନ ଗାଁରେ ଶାନ୍ତିଶୃଙ୍ଖଳା ସହ ଶିକ୍ଷାକେନ୍ଦ୍ର ପରିଚାଳିତ ହେଉଛି । ଶିକ୍ଷାକମିଟି ଓ ଗ୍ରାମବାସୀ କେନ୍ଦ୍ର ପ୍ରତି ସହଯୋଗ ରକ୍ଷା କରିଆସୁଛନ୍ତି । ନିଜେ ଗ୍ରାମାବସୀ ହିଁ କେନ୍ଦ୍ର ମରାମତି ଦାୟିତ୍ୱ ବହନ କରୁଛନ୍ତି । ଗ୍ରାମବାସୀଙ୍କ ସହ ବୈଠକକରି ୫ ଏକର ଜମିରେ ଜଙ୍ଗଲ ସୁରକ୍ଷା ହୋଇପାରିଛି । ଗ୍ରାମ୍ୟ ପାଣ୍ଠି ଅଚଳ ହୋଇ ପଡିଥିଲା; ତାହା ମୁଁ ପୁନଶ୍ଚ ବଜାୟ ରଖିବା ପାଇଁ ଚେଷ୍ଟା କରୁଛି । ବର୍ତ୍ତମାନ ଗ୍ରାମ୍ୟ ପାଣ୍ଠି ରଖି ଗ୍ରାମବାସୀ ତା'ର ରକ୍ଷଣାବେକ୍ଷଣର ସମସ୍ତ ଦାୟିତ୍ୱ ନେଉଛନ୍ତି । ୨ବର୍ଷ ଭିତରେ ଗୋଟିଏ ନୂଆ ଅନୁଭୂତି ମୁଁ ଦେଖିବାକୁ ପାଇଲି । ନଳକୂପ ଖନନ ପାଇଁ ୱାର୍ଡ଼ମେମ୍ବର ପାଖରେ ସମସ୍ତ ଗାଁଲୋକ ମିଶି ଅଭିଯୋଗ କରିଥିଲେ । ୱାର୍ଡ଼ମେମ୍ବର ଅତିଗୁନା

ଗ୍ରାମର ହେବାକୁ ଥିବା ନଳକୂଅକୁ ତାଙ୍କ ଗ୍ରାମରେ ଖୋଳାଉଥିବାରୁ ଆମ ଗାଁଲୋକେ ସବୁ ୱାର୍ଡ଼ମେମ୍ବର ତଥା ତାଙ୍କ ଗାଁର ଲୋକଙ୍କ ସହ ଖୁବ୍ ଯୁକ୍ତିତର୍କ କରିଥିଲେ । ଏପରିକି କେତେ ଜଣଙ୍କୁ ମାଡ଼ ମଧ୍ୟ ହୋଇଛି । ଏହା ଗତ ତା: ୨୦.୦୫.୨୦୦୦ରିଖରେ ଘଟିଥିଲା । ଅଭିଯୋଗ କରିବା ସତ୍ତ୍ୱେ ଅଡିଗୁନାକୁ ଅର୍ଡର ହୋଇଥିବା ନଳକୂପ ସେମେଲ୍‌ଗୁଡ଼ା ଗ୍ରାମରେ ଖୋଳାଗଲା । ପରେ ଆମ ଗାଁର ଲୋକମାନେ ଗାଁରେ ନିଷ୍ପତ୍ତି ନେଇଛନ୍ତି ଯେ ସେମାନେ ୧୦/୧୫ ଜଣ ବ୍ଲକ୍‌ରେ ଯାଇ ବସା କରିବେ ଓ ଏହାର ସମାଧାନ ପାଇଁ ଅଭିଯୋଗ କରିବେ । ଯାହା ହେଉ ଏତେ ବର୍ଷ ମଧ୍ୟରେ ଆଜି ଆମ ଗାଁର ଲୋକ ନିଜ ଅଧିକାରକୁ ସାବ୍ୟସ୍ତ କରି ଅନ୍ୟମାନଙ୍କୁ ଜବାବ୍ ଦେଇ ପାରିଛନ୍ତି; ନିଜ ଘରୁ ବାହାରକୁ ବାହାରିନଥିବା ଲୋକେ ଆଜି ବ୍ଲକ୍ ଦ୍ୱାରକୁ ଯାଇ ବ୍ଲକ୍ ଅଧିକାରୀଙ୍କ ପାଖରେ ଅଭିଯୋଗ କରିପାରୁଛନ୍ତି । ଏଥିପାଇଁ ମୋତେ ଖୁବ୍ ଖୁସୀ ଲାଗୁଛି । ମୋ କେନ୍ଦ୍ରରେ ଶିଶୁମାନଙ୍କୁ ଏ ଉଦ୍ଦେଶ୍ୟ ନେଇ ଶିକ୍ଷାଦାନ ଆରମ୍ଭ ହୋଇଛି ।

ଆଶା କରୁଛି ଏ ନବସୃଜନଶିକ୍ଷାକେନ୍ଦ୍ର ଯଦି ତିନିବର୍ଷ ପରେ ଆଉ କିଛି ବର୍ଷ ଆଗକୁ ବଢ଼ିବ ତେବେ ନିଶ୍ଚିତ ଭାବେ ଉକ୍ତ ଗାଁ ତଥା ସେହି ଅଞ୍ଚଳର ଉନ୍ନତି ହୋଇପାରିବ । ଶହ ଶହ ବର୍ଷ ପରେ ତ ଆଦିବାସୀ ଅଞ୍ଚଳରେ ସରକାର ଶିକ୍ଷାର କୌଣସି ପ୍ରକାର ପ୍ରସାର କରିପାରିନାହିଁ । ଆଉ ତିନି ବର୍ଷରେ କ'ଣ ସବୁଲୋକେ ଶିକ୍ଷିତ ହୋଇଯିବେ ? ଆମ ଗାଁ ପାଇଁ ପରିସ୍ଥିତି ଅନୁଯାୟୀ ତିନି ବର୍ଷର ଶିକ୍ଷାଟା ତିନିଦିନ ପରି ମନେହେଉଛି । କାରଣ ଦେଶ ସ୍ୱାଧୀନତାର ୫୩ ବର୍ଷ ପରେ ପ୍ରଥମ କରି ଅଗ୍ରଗାମୀ ତରଫରୁ ଶିକ୍ଷାର ମଞ୍ଜି ବୁଣାଯାଇଛି । ଆଉ ମୁଁ ବିଶେଷ କିଛି ଲେଖୁନାହିଁ । ଏତିକି ମୋର ଅନୁଭୂତିରୁ କହି ମୋର ଅସୁବିଧା କଥା ଟିକିଏ କହି ବନ୍ଦ କରୁଛି ।

ମୁଁ ସବୁବେଳେ ଅଡ଼ାଜୋର୍‌ଠାରୁ ପାହାଡ଼ ଚଢ଼ି କିରାସିନି, ଚାଉଳପତ୍ର ଓ ଯାହାକିଛି ଶିକ୍ଷାସାମଗ୍ରୀ ବୋହିନିଏ । ଚଲାବାଟ ମଧ୍ୟ ନିରାପଦ ନୁହେଁ । ପ୍ରକଳ୍ପରୁ ବା ଉପକେନ୍ଦ୍ରରୁ ଯାହା ଶିଖିଯାଇଥାଏ, ସେହି ଗ୍ରାମରେ ପିଲାଙ୍କ ତଥା ଗ୍ରାମବାସୀଙ୍କ ଗହଣରେ ମିଶିବା ପରେ ସତେ ଅବା ସବୁ ବୁଦ୍ଧି ହଜିଯିବା ପରି ମନେହୋଇଥାଏ । ସେଠାରେ କୌଣସି ଜଣେ ହେଲେ ମଧ୍ୟ ଭଲମନ୍ଦ କଥା ବିଚାର କରିପାରୁଥିବା ବ୍ୟକ୍ତି ଦେଖାଯାଆନ୍ତି ନାହିଁ । ଦିନରେ ୫/୬ ଜଣ ପିଲାଙ୍କ ବ୍ୟତୀତ କେହି ଦେଖାଯାଆନ୍ତି ନାହିଁ । ପୂରାପୂରି ଶୂନ୍‌ଶାନ୍ ଓ ନୀରବ ପରିବେଶ ଭିତରେ ମୁଁ ଜଣେ ଲୋକ ରହେ । ମୋତେ

ବେଳେବେଳେ ନିରାଶ ମଧ୍ୟ ଲାଗେ । ଯେଉଁଦିନ ମୁଁ ସାହିରେ ଘରେ ଘରେ ପିଲାଙ୍କୁ ଡାକିବାରେ ସମୟ ନପାଏ, ସେଦିନ ପିଲା ପୂରା କମିଯାଆନ୍ତି । ଏଣୁ ମୋର ପିଲାଙ୍କୁ ଡାକିବାର କାମ ଦୈନନ୍ଦିନ ବୃତ୍ତି ବୋଲି ମୁଁ ମଧ୍ୟ ମାନିନେଇଛି । ଅବଶ୍ୟ ବର୍ତ୍ତମାନ ଧୀରେ ଧୀରେ ପିଲା ନିଜେ କେନ୍ଦ୍ରକୁ ଆସିବାକୁ ଆରମ୍ଭ କଲେଣି । ପ୍ରକୃତରେ ଜଣେ ଶିକ୍ଷକ ବା ସେବକ ହିସାବରେ ଲୋକଙ୍କ ପାଇଁ, ଲୋକାମାନଙ୍କ ଉନ୍ନତିମୂଳକ କାମ କରିବା ପାଇଁ ଯିଏ ନିଜକୁ ଯତ୍ନବାନ କରେ ସେ କେବେ ବି ନିଜ ଦେହରେ ବାଜୁଥିବା ବଜ୍ରପାତକୁ ଖାତିର୍ କରେ ନାହିଁ ।

ଅଗ୍ନୀ ମାଝୀ

ନବସୃଜନ ଶିକ୍ଷାକେନ୍ଦ୍ର, ଅଡ଼ିଗୁଡା



# ବୁଦ୍ଧିରାମ ସିଂକୁ

ଆମ ଗାଁର ନାମ ଗାଲୁସାହି । ଗୋଟିଏ ବଡ଼ ଗାଁ ଏହି ଗାଁରେ ପାଞ୍ଚୋଟି ସାହି ଅଛି ଯଥା; ରଙ୍ଗାବସା, ବୁରୁସାହି, ମଝିସାହି, ତଳସାହି ଏବଂ ବଃଡ଼ାବ ସାହି । ରଙ୍ଗାବସା ସାହିଟି ଗାଁରୁ ପୂରା ବିଚ୍ଛେଦ ହୋଇରହିଛି । ଅନ୍ୟ ଚାରୋଟି ସାହି ଲଗାଲଗି ହୋଇରହିଛି । ଗାଁରେ ମୋଟ ୧୩୦ଟି ପରିବାର ବାସ କରନ୍ତି । ଆଦିବାସୀମାନେ ହେଲେ ଗଣ୍ଡ ଓ କୋହ୍ଲ ଜାତିର ଏବଂ ଅଣଆଦିବାସୀମାନେ ହେଲେ ମହାକୁଡ ବା ଗଉଡ଼ ଜାତିର ।

୧୯୮୫ ମସିହାରେ ଯୁବକମାନଙ୍କୁ ନେଇ ଯୁବକସଂଘଟିଏ ଗଠନ କରାଯାଇଥିଲା । ଯୁବକସଂଘ ନାମରେ ପ୍ରତ୍ୟେକ ପରିବାରରୁ ୫ ପାହି କରି ଧାନ ଆଦାୟ କରି ରଖାଯାଇଥିଲା । ଏହି ଧାନକୁ ଅଭାବ ଅସୁବିଧା ସମୟରେ ନେବେ ଏବଂ ଅମଳ ସମୟରେ ଏକ ଖଣ୍ଡିକୁ ୬ପାହି ସୁଧରେ ପରିଶୋଧ କରିବେ ବୋଲି ବୈଠକରେ ନିଷ୍ପତ୍ତି ନିଆଯାଇଥିଲା । ଧାନ ଦେବାନେବା ଚାଲିଲା । କିନ୍ତୁ ଗାଁର କେତେ ଲୋକ ନେବାକୁ ମନ କଲେ ନାହିଁ । ସେମାନେ ପରିଶୋଧ ନରକିବାର ଜାଣି ଅନ୍ୟ ଗ୍ରାମବାସୀ ମଧ୍ୟ ପରିଶୋଧ କଲେ ନାହିଁ, ଯାହାଫଳରେ ପାଣ୍ଠିଟି ନଷ୍ଟ ହୋଇଗଲା ।

ଆମ ବୁରୁସାହିରେ କେବଳ ଆଦିବାସୀ ଲୋକ ରହନ୍ତି, ସେମାନେ ନିହାତି ଗରିବ । ତେଣୁ ଏମାନେ ବିଚାର କଲେ ପାଣ୍ଠିଟି ଥିଲା, ଗାଁର ସମସ୍ତେ ଉପକୃତ ହୋଇ ପାରୁଥିଲେ । ପାଣ୍ଠିଟି ଗଲାପରେ ଆମ୍ଭେମାନେ ବେଶି ଅସୁବିଧାରେ ପଡ଼ିଲୁ । ଏଣୁ ଆମ ସାହିରେ ନୂଆ ଭାବରେ ପାଣ୍ଠି କଲେ ଆମ ପାଇଁ ସୁବିଧା ହେବ ଏବଂ କାହା ଦୁଆରକୁ ଯିବାକ ପଡ଼ିବ ନାହିଁ । ଠିକ୍ ଏହି ସମୟରେ ଅଗ୍ରଗାମୀ ଆମ ସାହିରେ ପହଞ୍ଚିଲା । ଅଗ୍ରଗାମୀ କର୍ମୀମାନେ ଆସି ଶସ୍ୟପାଣ୍ଠି, ଶିକ୍ଷା, ଜଙ୍ଗଲ, ଶୋଷଣ, ଠକେଇ, ଦୁର୍ନୀତି ଓ ଅନ୍ୟାୟ ବିଷୟରେ ବାରମ୍ବାର ବୈଠକ କରି ଲୋକମାନଙ୍କୁ ଚେତନା ଦେଲେ । ଆଗରୁ ପାଣ୍ଠି ବିଷୟରେ ବିଚାର କରିଥିବାରୁ ଲୋକମାନେ ଆଗଭର

ହୋଇ ଧାନ ଆଦାୟ କଲେ । ପ୍ରଥମ ବର୍ଷ ମୋଟ ୬ଖଣ୍ଡି ଧାନ ହୋଇଥିଲା । ବର୍ତ୍ତମାନ ସେହି ଧାନ ୭୮ ଖଣ୍ଡି ହୋଇଛି । ଏହି ପାଣ୍ଠିକୁ ଗାଁଲୋକେ ମିଟିଂ କରି ବୁଣା ସମୟରେ ଏବଂ ଅଭାବ ସମୟରେ ବାଣ୍ଟି ନେଉଛନ୍ତି । ଅମଳ ସମୟରେ ମିଟିଂ କରି କେବେ ପରିଶୋଧ କରିବେ, ନିର୍ଦ୍ଦିଷ୍ଟ ଦିନ ଠିକ୍ କରି ପରିଶୋଧ କରୁଛନ୍ତି । ଧାନର ପରିମାଣ କେତେ ହେଲା ତାହାର ହିସାବକିତାବ ମୋ ପାଖରେ ରହୁଛି ଏବଂ ଧାନ କାହା ଘରେ ରହିବ ତାହା ଗାଁ ଲୋକେ ସ୍ଥିର କରି ସାଇତି ରଖୁଛନ୍ତି । ଏହା ପାଣ୍ଠି ଦ୍ୱାରା ଗାଁ ଲୋକେ ବେଶ୍ ଉପକୃତ ହୋଇପାରିଛନ୍ତି । ମୋ ଅନୁପସ୍ଥିତିରେ ମଧ୍ୟ ମିଟିଂ କରି ଧାନ ବାଣ୍ଟିନିଅନ୍ତି ଏବଂ ପରିଶୋଧ କରନ୍ତି । ସେମାନେ କେବଳ ମୋତେ ହିସାବ ଦିଅନ୍ତି । ବର୍ତ୍ତମାନ ଗ୍ରାମବାସୀଙ୍କର ଦାୟିତ୍ୱବୋଧ ଆସିଯାଇଛି । ଗାଁର ସଭାସମିତିରେ ମଧ୍ୟ ସେମାନେ ଯୋଗ ଦେଉଛନ୍ତି । ଯେଉଁ ମୁହୂର୍ତ୍ତରେ ମିଟିଂ ଡାକିଲେ ବି ଆଗଭର ହୋଇ ବାହାରିଆସୁଛନ୍ତି ।

ଆମ ଗାଁରେ ୧୯୯୧ ମସିହାରେ ଅଗ୍ରଗାମୀ ତରଫରୁ ରାତିସ୍କୁଲ ଖୋଲା ହେଲା । ଗ୍ରାମବାସୀ ମୋତେ ଶିକ୍ଷକତା କରିବା ପାଇଁ କହିଲେ । ବର୍ତ୍ତମାନ ସୁଦ୍ଧା ମୁଁ ସେ ସ୍କୁଲରେ ଶିକ୍ଷାଦାନ କରୁଅଛି । ସେତେବେଳେ ଆମ ସାହିର ପିଲାମାନେ ଦିନସ୍କୁଲକୁ କେହି ଯାଉନଥିଲେ କି ବାପାମା'ମାନେ ମଧ୍ୟ ପଠାଉ ନଥିଲେ । ମୁଁ ପଢୁ ପଢୁ କେମିତି ପଢିଗଲି ଓ ମେଟ୍ରିକ୍ ପାସ୍ କରିଗଲି, ମୁଁ ମଧ୍ୟ ଜାଣିପାରେ ନାହିଁ । ମୁଁ ପ୍ରଥମେ ସ୍କୁଲ୍ ଆରମ୍ଭ କଲି ଡିବିର ଆଲୁଅରେ । ପିଲାମାନେ କଥା ମଧ୍ୟ କହୁନଥିଲେ । ମୁଁ ବଡ଼ ଅସୁବିଧାରେ ପଡିଲି କେମିତି ପାଠ ପଢ଼ାଇବି । ସେହି ପିଲାମାନେ କେତେକ ଗୋରୁଗାଈ ଚରାଉଥିଲେ, କେତେକ ଛୋଟ ଛୁଆକୁ ଧରୁଥିଲେ ଏବଂ କେତେକ ବାପାମାଆଙ୍କୁ ଚାଷକାମରେ ସାହାଯ୍ୟ କରୁଥିଲେ । ପିଲାମାନେ ଯାହା ଦିନରେ କାମ କରୁଥିଲେ ଏବଂ ନିଜ ଘରର ଦୈନନ୍ଦିନ ବ୍ୟବହାର୍ଯ୍ୟ ଜିନିଷକୁ ଆଞ୍ଚଳିକ ଭାଷାରେ ନେଇ ପାଠ ଆରମ୍ଭ କଲି । ପିଲାମାନେ ବହୁତ ଖୁସି ହେଲେ ଏବଂ ବହୁତ ପିଲା ଆସିଲେ । ସେତେବେଳେ ଜଣେ ଲୋକର ଘର ବାରଣ୍ଡାରେ ସ୍କୁଲ କରୁଥିଲି । ଗୋଟିଏ ବର୍ଷ ପରେ ଗାଁଲୋକେ ସମସ୍ତେ ମିଶି ସ୍କୁଲଗୃହ ନିର୍ମାଣ କଲେ । ମାଆମାନେ ସ୍କୁଲ ଘର ଲିପାଲିପି କଲେ ଏବଂ ରଙ୍ଗମାଟିରେ ନୁଣ୍ଡା ଦେଇ ସୁନ୍ଦର କରିଦେଲେ । ଠିକ୍ ଆଦିବାସୀ ଘର ପରି ଆମ ସ୍କୁଲଘର ଦିଶୁଛି ।

କିଛି ବର୍ଷ ସ୍କୁଲ ଚାଲିବା ପରେ ପିଲାସଂଖ୍ୟା ଧୀରେ ଧୀରେ କମିବାରେ

ଲାଗିଲା । ମୁଁ ବଡ ଅସୁବିଧାରେ ପଡିଲି । କିପରି ସବୁ ପଲା ସ୍କୁଲକୁ ଆସିପାରିବେ ଚିନ୍ତା କଲି । ପିଲାମାନେ ଯେଉଁଠି ଦଳ ହୋଇ ଖେଳନ୍ତି ସେଠାକୁ ଯାଇ ତାଙ୍କ ସହିତ ଖେଳିଲି, ମିଶିଲି; ବାପାମାଆଙ୍କୁ ଘରେ ଘରେ ଯାଇ ବୁଝାଇଲି । ମାସରେ ଦୁଇଥର ଗ୍ରାମ୍ୟବୈଠକ ଡକାଇଲି । ପ୍ରତ୍ୟେକ ଦିନ ଆସୁଥିବା ପିଲାମାନେ ମଧ୍ୟ ଅନ୍ୟ ପିଲାଙ୍କୁ ଆଣିବାରେ ସାହାଯ୍ୟ କଲେ । ତା'ପରେ ପିଲାସଂଖ୍ୟା ବଢ଼ିବାରେ ଲାଗିଲେ । ମୋ ସ୍କୁଲର ପିଲାମାନେ ସରକାରୀ ଉ.ପ୍ରା.ସ୍କୁଲ୍, ମି.ଇ.ସ୍କୁଲ୍ ଏବଂ ହାଇସ୍କୁଲ୍‌ରେ ମଧ୍ୟ ପାଠ ପଢିଲେଣି । ବର୍ତ୍ତମାନ ସାହିରେ ଶିକ୍ଷାର ପ୍ରଭାବ ଏମିତି ପଡ଼ିଯାଇଛି ଯେ ଗୋରୁଗାଈ ଚରାଉଥିବା ପିଲାମାନେ ମଧ୍ୟ ସରକାରୀ ସ୍କୁଲକୁ ପଢିବାକୁ ଗଲେଣି । ବାପାମାଆ ମୋତେ କହିଲେ କ'ଣ କଲ ମାଷ୍ଟର ? ଆମ ପିଲାମାନେ ଗୋରୁଗାଈ ଚରାଇବା ଛାଡ଼ି ସ୍କୁଲ୍‌କୁ ଧାଉଁଛନ୍ତି । ଆମେ କମିତି କାମଧନ୍ଦା କରି ବଞ୍ଚିବୁ । ତା'ପରେ ମୁଁ କହିଲି ଗାଈଗୋରୁ ଚରାଇବା ପାଇଁ ଜଣକୁ ବଗାଳ ରଖିବା, ସେ ପ୍ରତ୍ୟେକ ଦିନ ଭାତିଆ ନେବ ଏବଂ ବର୍ଷ ଶେଷରେ ଦରମା ନେବ । ଏକଥାରେ ଗ୍ରାମବାସୀ ରାଜି ହେଲେ । ତିନି ବର୍ଷ ହେଲାଣି ବଗାଳ ଗାଈଗୋରୁ ଚରାଉଛି । ବର୍ତ୍ତମାନ ମୋ ସ୍କୁଲର ପିଲାମାନେ ସମସ୍ତେ ଦିନ ସ୍କୁଲ୍‌କୁ ପାଠ ପଢିବାକୁ ଯାଉଛନ୍ତି । ରାତିରେ ଏବଂ ସକାଳ ସମୟରେ ମୋ ପାଖରେ ପଢୁଛନ୍ତି । ବର୍ତ୍ତମାନ ଆମ ଗାଁ ସରକାରୀ ସ୍କୁଲରେ ଆମ ସାହିପିଲାଙ୍କ ସଂଖ୍ୟା ଅଧିକ । ଆମ ସ୍କୁଲ ଗାଁରେ ଏମିତି ପ୍ରଭାବ କରାଇପାରିଛି । ଯାହାଫଳରେ ଗାଁଯାକର ପିଲା ଆମ ସ୍କୁଲରେ ହାଜର । ବର୍ତ୍ତମାନ ଆମ ସ୍କୁଲର ପିଲାସଂଖ୍ୟା ୫୦କୁ ଟପିଯାଇଛି ।

ଆମ ଗାଁରେ ଜଙ୍ଗଲ ନାହିଁ । କାଠ ପାଇଁ ବିଶେଷ ଅସୁବିଧା । ଆମ ସାହିକୁ ଲାଗି ଠେଙ୍ଗରା ହୁଳିଟିଏ ଥିଲା । ଆଗରୁ ବହୁତ ଅନାବନା ଗଛ ଥିଲା । କାଳକ୍ରମେ ଲୋକେ କାଟି କାଟି ସଫା କରିଦେଲେ । ୧୯୮୦ ମସିହାରେ ଆମେ ସାହିଲୋକ ମିଟିଂ କରି ସେ ଠେଙ୍ଗରା ହୁଳିକୁ ଜଗାରଖା କରିଥିଲୁ । ବର୍ତ୍ତମାନ ସେ ଠେଙ୍ଗରା ହୁଳିରେ ଅନାବନା ଗଛ ବେଶ୍ ଝଙ୍କାଳିଆ ହୋଇ ଉଠିଛି । ଲୋକମାନେ ସେଥିରୁ କାଠ ଆଣି ଚଳୁଛନ୍ତି । ସେହି ଠେଙ୍ଗରା ହୁଳିର ଗଛରେ ଆମ ସ୍କୁଲଗୃହ ନିର୍ମାଣ କରାଯାଇଛି ।

ମୋ ସ୍କୁଲର ଆଉ ଗୋଟିଏ ଅନୁଭୂତି କହୁଛି । ମୋ ସ୍କୁଲରେ ଯେତେ ପିଲା ପଢୁଥିଲେ ସମସ୍ତେ କଥା କହୁଥିଲେ ଏବଂ କହିଲେ କରି ପକାଉଥିଲେ । ଗୋଟିଏ

ଛୋଟପିଲା, ନାମ ତା'ର ସାକାରି ବ୍ରଦା । ସ୍କୁଲରେ ପାଦ ଦେବାର ଦୁଇବର୍ଷ ପର୍ଯ୍ୟନ୍ତ କଥା କହୁନଥିଲା । ପଢାଇବାକୁ ମୋତେ ଅସୁବିଧା ହେଲା । ଯେତେ କଥା କହିଲେ ବି ସେ କଥା କହୁନଥିଲା । ତେଣୁ ମୁଁ ତାକୁ କିଛି କହୁନଥିଲି । ପ୍ରତ୍ୟେକ ଦିନ ଆସେ ଓ ସ୍କୁଲରେ ସେ ଚୁପ୍‌ଚାପ୍ ବସେ । ଯାହା ପଢ଼ାଏ ଶୁଣେ । ନିଜ ସ୍ଲେଟ୍‌ରେ ଯାହା ଲେଖିବା କଥା ଲେଖେ । ମୁଁ ଭାବୁଥିଲି, ପାଠ ପ୍ରତି ତା'ର ଆଗ୍ରହ ନାହିଁ । ପାଠ ଶିଖିପାରିବ ନାହିଁ କି ପାଠ ପଢ଼ିବ ନାହିଁ । ଏକଥା ତା' ମାଆାକୁ ମଧ୍ୟ କହିଥିଲି । ତା' ମାଆ କହେ ଘରେ ତ ଭଲ କଥା କହୁଛି । କେମିତି ସ୍କୁଲରେ କଥା କହୁନାହିଁ । କିନ୍ତୁ ଘରେ ସ୍ଲେଟ୍‌ରେ କ'ଣ ସବୁ ଲେଖାଲେଖି କରେ ଏବଂ ଗୁଣୁ ଗୁଣୁ ହୋଇ କଥାକହେ । ସାକାରି ଛୋଟ ଥିଲାବେଳେ ତା'ବାପା ତାକୁ ଛାଡ଼ି ଆରପୁରକୁ ଚାଲିଯାଇଥିଲେ । ଯେଉଁ ପିଲାମାନେ କଥା କହୁଥିଲେ ତାଙ୍କଠାରୁ ସାକାରି ଧୀରେ ଧୀରେ ଅନେକ କଥା ଶିଖିପାରୁଛି ଏବଂ ଲେଖିପାରୁଛି । ଅନ୍ୟ ପିଲାମାନେ ସରକାରୀ ସ୍କୁଲକୁ ପଢ଼ିବାକୁ ଗଲେ । ସେ ମଧ୍ୟ ଗଲା । ସେ ପିଲା ବଡ ସୁନ୍ଦର ଭାବେ ପାଠ ପଢ଼ିପାରିଲା । ଏହି ବର୍ଷ ସେ ଷଷ୍ଠ ଶ୍ରେଣୀରେ ନାମ ଲେଖାଇବ । ଆମ ସାହିରେ ରାତିସ୍କୁଲ ହୋଇ ନଥିଲେ କେତେ ଯେ ପିଲା ପାଠ ପଢ଼ିବାରୁ ବଞ୍ଚିତ ହୋଇଥାନ୍ତେ । ସ୍ଲେଟ୍, କାଗଜ, ବହି, କଲମ ବିଷୟରେ ପିଲାଙ୍କ ଧାରଣା ମଧ୍ୟ ନଥାନ୍ତା, ସମ୍ପର୍କ ମଧ୍ୟ ରହନ୍ତା ନାହିଁ । ଏମିତି ଗାଁ ଗହଳିରେ ହଜାର ହଜାର ପିଲା ପାଠ ପଢିବାରୁ ବଞ୍ଚିତ ହୋଇ ରହିଛନ୍ତି । ଗାଁ ଗଣ୍ଡାରେ ଲୋକ ଆଗେଇଲେ ସିନା ଦେଶ ଆଗେଇବ । ଆମ ଦେଶର କିଛି ଲୋକ ମଟରଗାଡ଼ି ଚଢିଲେ, ପକ୍‌କାଘରେ ରହିଲେ ଓ ଉଡ଼ାଜାହାଜରେ ଉଡିଲେ ଆମ ଦେଶକୁ ଧନଶାଳୀ ଓ ଆଦର୍ଶ ରାଷ୍ଟ୍ର ବୋଲି କହିପାରିବା ନାହିଁ । ଯେପର୍ଯ୍ୟନ୍ତ ଗାଁଗଣ୍ଡା ଉନ୍ନତି କରିନାହିଁ, ପଛରେ ପଡିଛି, ସେ ପର୍ଯ୍ୟନ୍ତ ଆମ ଦେଶ ପଛରେ ପଡିଛି ବୋଲି କହିବା ବା ଗରିବ ଦେଶ ବୋଲି କହିବା ।

ବିକଳ୍ପ ଶିକ୍ଷାକେନ୍ଦ୍ର,ଘାଲୁସାହି
ଶୁକୁଳି, ମୟୁରଭଞ୍ଜ

□□□

# ନିଶିକା ନାଙ୍ଗାରୀ ମାଝୀ

ପ୍ରଥମେ ଆମ୍ଭ ନିଶିଖାଲ୍ ଗ୍ରାମରେ ୧୯୯୬ ମସିହାରେ ଜାନୁୟାରୀ ମାସରେ ଆରମ୍ଭ ହୋଇଥିଲା । ଏହା ପୂର୍ବରୁ ଆମର ଗ୍ରାମର ଲୋକମାନେ କୌଣସି ଲୋକ ଫୁଲ୍‌ପେଣ୍ଟ ପିନ୍ଧି ଗାଁକୁ ଆସିଲେ ବହୁତ ଡରୁଥିଲେ ଏବଂ ଓଡ଼ିଆ ଭାଷା ବି କିଛି ଜାଣିନଥିଲେ । ଯେତେବେଳେ ଆମ ଗାଁରେ ଅଗ୍ରଗାମୀର ଭାଇମାନେ ଆସି ସ୍କୁଲ ବିଷୟରେ କଥାବାର୍ତ୍ତା କରି ମୋତେ ଗୁରୁଭାଇ ରୂପେ ବାଛିଲେ । ଗାଁଲୋକ ସମସ୍ତେ ମିଶି ସ୍କୁଲଘର ତିଆରି କଲେ । ତା'ପରେ ସ୍କୁଲ ଆରମ୍ଭ ହେଲା । ଛାତ୍ରଛାତ୍ରୀ ସଂଖ୍ୟା ୪୫; ସେଥିରୁ ପୁଅ ୨୮ ଓ ଝିଅ ୧୭ଜଣ । ସେଥିରୁ ୧୨ଜଣ ଦିନସ୍କୁଲକୁ ଗଲେଣି । ବର୍ତ୍ତମାନ ବି ସାନ ପିଲାମାନଙ୍କୁ ମିଶାଇ ୪୫ଜଣ ପିଲା ଅଛନ୍ତି ।

ଏହି ଅଢ଼େଇ ବର୍ଷ ଭିତରେ ଆମ ଗାଁ ବହୁତ କିଛି ବଦଳିଯାଇଛି ବୋଲି ମୁଁ ଅନୁଭବ କରୁଛି । କାରଣ ବର୍ତ୍ତମାନ ଆମ ଗାଁରେ ସାକ୍ଷର ହୋଇଥିବା ଲୋକଙ୍କ ସଂଖ୍ୟା ୭୨ରେ ପହଞ୍ଚିଲୁଣି । ପ୍ରତିବର୍ଷ ଦିନସ୍କୁଲକୁ ପୁଅଝିଅ ଯାଉଛନ୍ତି । ପ୍ରତିବର୍ଷ କିଛି କିଛି କୁଟୁମ୍ବ ପାଣ୍ଠି ଉଠାଉଛନ୍ତି । ପ୍ରତି ୨ବର୍ଷକୁ ଥରେ ସ୍କୁଲଗୃହ ଛପର କରୁଛନ୍ତି ଏବଂ ଗାଁଲୋକ ଓ ସ୍କୁଲକମିଟି ମଧ୍ୟ ଗୁରୁଭାଇଙ୍କୁ ସବୁକାମରେ ସହଯୋଗ କରୁଛନ୍ତି । ଲୋକମାନେ ଏବେ ସଚେତନ ହୋଇ ଗାଁ ଦାଣ୍ଡ ମଧ୍ୟ ସଫା ରଖୁଛନ୍ତି । ସ୍କୁଲ ନହେବା ପୂର୍ବରୁ ଏସବୁ ବିଷୟ କିଛି ନଥିଲା । ଏଣୁ ସ୍କୁଲ ହେବା ଦ୍ୱାରା ଆମ ଗାଁ ବହୁତ କିଛି ଆଗେଇ ଚାଲିଛି ବୋଲି ମୁଁ ଅନୁଭବ କରୁଛି । ମୁଁ ପିଲାମାନଙ୍କୁ ଖାଲି ପାଠ ପଢ଼ାଉନାହିଁ, ପାଠ ସହିତ ଗୀତ, ଗପ, ନାଚ ମାଧ୍ୟମରେ ଶିକ୍ଷା ଦିଆ ହେଉଅଛି । ଆମ ଗାଁରେ ଜଙ୍ଗଲ କମିଟି ମଧ୍ୟ ଗଢ଼ାଯାଇଛି । ଏଣୁ ଜଙ୍ଗଲ ମଧ୍ୟ ରଖିଛୁ ଏବଂ ନିଶା ନିବାରଣର ଚେଷ୍ଟା ଚାଲିଛି ।

ଏବେ ମୁଁ ଆମ ଗାଁର ଆୟକାରୀ ପନ୍ଥା ବିଷୟରେ କିଛି ଲେଖୁଛି । ଆମ ଗାଁରେ ଆୟକାରୀ ପନ୍ଥା ପାଇଁ ୩୦ହଜାର ଟଙ୍କା ଦିଆହୋଇଥିଲା । ସେଥିମଧ୍ୟରୁ

୬ହଜାର ଟଙ୍କାକୁ ୯ଟି ଛେଳି କିଣାହୋଇଥିଲା । ସେହି ଛେଳି ବଢ଼ି ୧୨ ପଟ ହୋଇଥିଲା । କିନ୍ତୁ ଝାଡାରୋଗରେ ୬ ପଟ ମରିଗଲା ଓ ୨ ପଟକୁ ବାଘ ଖାଇଦେଲା । ୨ ପଟ ଛେଳି ବିକ୍ରି ହେବା ପରେ ବର୍ତ୍ତମାନ ୪ପଟ ଛେଳି ଅଛି ଓ ଟିକିରି ବ୍ୟାଙ୍କରେ ୧୫ ହଜାର ୪୦୦ଟଙ୍କା ଅଛି । ରାୟଗଡ଼ା ପୋଷ୍ଟ ଅଫିସ୍‌ରେ ୫ ହଜାର ଟଙ୍କା ଫିକ୍ସ ଡିପୋଜିଟ୍ ହୋଇଛି ଆଉ ଗାଁର ସ୍କୁଲ କମିଟି ହାତରେ ୧୨୦୦ ଟଙ୍କା ଅଛି ।

ଆଉ ଆମ ଗାଁରେ ଲୁହାପଥର ଖଣି ଅଛି । ସେଥିପାଇଁ ସେହି ଖଣି ଦ୍ୱାରା ଆମ ଗାଁର ଜମିବାଡ଼ି, ଗଛଲତା ବହୁତ ନଷ୍ଟ ହେବାର ଲାଗିଥିଲା । ଆମେ ସବୁ ଗାଁଲୋକ ଏକ ହୋଇ ତାଙ୍କ ସାଙ୍ଗରେ ଲଢ଼ି ମୁଖ୍ୟମନ୍ତ୍ରୀ ପର୍ଯ୍ୟନ୍ତ ଲେଖାଲେଖି କରି ସେହି ଲୁହାପଥର ଖଣିକୁ ବନ୍ଦ କରିଦେଇଛୁ । ସେହି ଖଣି ବା ଖାଦାନ୍ ଯଦି ଚାଲୁହେବ ତାହାହେଲେ ସେହି ପାହାଡ଼ରୁ ୧୦ହଜାର ୯୮୦ଟି ଗଛ କଟାହେବାର ଅଛି । ତେବେ ଯାଇ ଖାଦାନ୍ ଖୋଲା ହୋଇପାରିବ । ଏଣୁ ଆମେ ଗ୍ରାମବାସୀ ଏକ ହୋଇ ସେ ଖାଦାନ୍‌କୁ ବନ୍ଦ କରିଦେବା ପାଇଁ ସକ୍ଷମ ହୋଇଛୁ । ଅଗ୍ରଗାମୀ ଆମକୁ ଏହି ଏକତା ହେବା ଶିଖାଇଛି । ତେଣୁ ଆମେ ଅଗ୍ରଗାମୀକୁ ଭଲ ପାଉଛୁ ଓ ଅଗ୍ରଗାମୀ ମଧ୍ୟ ଆମକୁ ଭଲ ପାଉଛି । ଏସବୁ କେତେ କଷ୍ଟକର ହୋଇ ପାରିଛି, ତାହା ଅନୁଭବୀ ଛଡ଼ା ଆଉ କେହି କହି ପାରିବେ ନାହିଁ ।

ବିକଳ୍ପ ଶିକ୍ଷାକେନ୍ଦ୍ର<br>ନିଶିଖାଲ୍, କାଶୀପୁର



# ମୋ ପାଠପଢ଼ା ସମୟର କାହାଣୀ

ମୋର ନାମ ଗୌରାଙ୍ଗ ବିଶୋଇ, ଆମ ଘରେ ପାଞ୍ଚ ପ୍ରାଣୀ ବାସକରୁ । ପିତା, ମାତା, ମୁଁ ଓ ମୋର ଛୋଟ ଦୁଇଟି ଭଉଣୀ, ଆମ ପରିବାର ଅତି ଗରିବ । ମୋର ବାପା ବୁଦ୍ଧି ଖଟାଇ କୌଣସି କାମ କରିପାରନ୍ତି ନାହିଁ । ଜମି, ବାଡି କିଛି ନାହିଁ । ମୋ ବାପା ପାଠ ପଢିନାହାନ୍ତି । କିନ୍ତୁ ମୋର ମା' ଅଷ୍ଟମ ଶ୍ରେଣୀ ପାସ କରିଛନ୍ତି । ମା'ର ବୁଦ୍ଧି ଟିକିଏ ଛୋଟିଆ । ଦୋକାନଟିଏ କରି ଘର ମେଣ୍ଟାଉଥାନ୍ତି । ଖାଇବା ପିଇବାରେ ବହୁତ ଅସୁବିଧା ସମ୍ମୁଖୀନ ହେଉଥିଲା । ଗୋଟିଏ ଛୋଟିଆ ମଫସଲ ଗାଁ ଛୋମୁଗୁଡ଼ା ଗ୍ରାମରେ ବାସ କରିଥାଉ । ମତେ ଯେତେ ବେଳେ ପାଞ୍ଚ ବର୍ଷ ହେଲା ମା' କହିଲେ ପୁଅକୁ ସ୍କୁଲରେ ନାମ ଲେଖାଇ ପାଠ ପଢ଼ାଇବା କିନ୍ତୁ ବାପା କହିଲେ ଆମର ଟଙ୍କା ପଇସା ନାହିଁ । ପାଠ ପଢ଼ାଇଲେ କେତେ ଟଙ୍କା ପଇସା ଦରକାର ପୁଣି ତାର ପେଣ୍ଟ ସାର୍ଟ ବହିପଟା କଲମ କେତେ ଦରକାର । ଆମେ ଏତେ ପଇସା ଆଣିବା କେଉଁଠି । କିନ୍ତୁ ମା' ସାହସର ସହିତ କହିଲେ ମୁଁ ମୋର ପୁଅକୁ ଯେମିତି ହେଲେ ପାଠ ପଢ଼ାଇବି ।

ବାପାର କଥାରେ ମୋର ତିନି ଦାଦା ବିରୋଧ କଲେ ତୁ ଯେମିତି ହେଲେ ତୋର ପୁଅକୁ ପାଠପଢ଼ାଇବୁ ବୋଲି ବାଧ କଲେ । ପରିଶେଷରେ ବାପା ତା'ର ପୁଅକୁ ପାଠ ପଢ଼ାଇବା ପାଇଁ ସ୍ଥିର କଲେ । ଗ୍ରାମରେ ଥିବା ପ୍ରାଥମିକ ସ୍କୁଲରେ ନାମ ଲେଖାଇଲେ । କିନ୍ତୁ ମୋର ପାଠ ପଢ଼ିବା ପାଇଁ ଆଦୌ ଇଛା ନଥିଲା । ସ୍କୁଲ ଘଣ୍ଟି ବାଜିଲେ ସ୍କୁଲକୁ ଯିବାକୁ ହେବ ବୋଲି ନଖାଇପିଇ କୂଅ ପାଖ ଓ ଧାନବୁଦା ଭିତରେ ଲୁଚି ରହୁଥିଲି । ବାପା, ମା' ମତେ ଖୋଜି ଆସନ୍ତି, ତା' ସହିତ ମୋ ତିନି ଦାଦା ମଧ ଖୋଜି ଆସିଥାନ୍ତି । ଖୋଜି ଖୋଜି ଧରି ନେଇ ସ୍କୁଲରେ ଛାଡନ୍ତି । ମତେ ତ ଆଦୌ ସ୍କୁଲ ଯିବାକୁ ଇଛା ନାହିଁ । ତେଣୁ ଘଣ୍ଟି ବାଜିଲେ ମୁଁ ଲୁଚିବା ପାଇଁ ଯାଏ । ଏମିତିକି ମମସ୍ତ ଦିନ ଲୁଚିବାକୁ ଯାଏ । ତେଣୁ ମା' ବାପା ଓ ତିନି ଦାଦା ମୋ ଉପରେ ରାଗିଲେ । ସ୍କୁଲ ଶିକ୍ଷକ ମତେ ଧରିନେଇ ସ୍କୁଲରେ ବସାନ୍ତି ।

ଶିକ୍ଷକ ଭାରି ଦୟାଳୁ । କିନ୍ତୁ ରାଗିଲେ ଭୀଷଣ ମାଡ଼ ମାରନ୍ତି । ତେଣୁ ମୁଁ ସ୍କୁଲ ଯିବା ପାଇଁ ଆହୁରି ଅଧିକ ଭୟ କରି ଲୁଚିବାକୁ ଯାଏ । ଦିନେ ସ୍କୁଲ ଘଣ୍ଟି ବାଜିଲା । ମୁଁ ଲୁଚିବାକୁ ଏକ ଧାନ କିଆରୀ ଭିତରେ ପଶି ଚୁପ୍ ଚାପ୍ ରହିଯାଇଥିଲି । ମୋ ଦାଦା ଖୋଜି ଖୋଜି ଧାନ କିଆରୀରେ ପ୍ରବେଶ କଲେ ଓ ମତେ ଧରି ଭୀଷଣ ମାଡ଼ ମାରିଲେ ଓ ଗୋଡ଼ରେ ଛାଟ ମାରି ମାରି ମୋର ବାମ ଗୋଡକୁ ଫୁଲାଇ ଦେଲେ । ଫଳରେ ଗୋଡ଼ ବଥା ହେଲା । ମୁଁ ଆଉ କୁଆଡେ ଯାଇ ପାରିଲି ନାହିଁ । ସ୍କୁଲ ଘଣ୍ଟା ବାଜିଲେ ମା' ସ୍କୁଲରେ ନେଇ ଛାଡ଼ନ୍ତି । ଏମିତି ପ୍ରତ୍ୟେକ ଦିନ ସ୍କୁଲ ଆଣି ଛାଡନ୍ତି, ସ୍କୁଲ ଶିକ୍ଷକ ମଧ୍ୟ ମୋତେ ଆଉ ମାଡ଼ ମାରିଲେ ନାହିଁ । ମୁଁ ମାଡ଼ ଭୟରେ ସ୍କୁଲ ଯିବା ଆରମ୍ଭ କଲି । ବାପା ମା' ପୁଅ ସ୍କୁଲ ଯାଉ ବୋଲି ନୂଆ ପେଣ୍ଟ ସାର୍ଟ ଓ ଖଡିପଟା ଓ ଖାତା ଆଣିଦେଲେ । ନୂଆ ନୂଆ ପେଣ୍ଟ ସାର୍ଟ ପଟା, ଖଡି, ଖାତା ନେଇ ଖୁସିରେ ସ୍କୁଲ ଗଲି । ଏମିତି କି ଦିନେ ସ୍କୁଲ ନଗଲେ ମତେ ବିରକ୍ତ ଲାଗେ । ତା'ପରେ ପାଠ ପଢ଼ିବା ପାଇଁ ମୁଁ ମନ ବଳାଇଲି । କଷ୍ଟେ ମଷ୍ଟେ ମା' ବାପା ମତେ ପ୍ରଥମରୁ ପଞ୍ଚମ ପର୍ଯ୍ୟନ୍ତ ପଢ଼ାଇଲେ ।

ପଞ୍ଚମ ପାସ୍ କଲି । ପୁଣି ତ ଷଷ୍ଠ ଶ୍ରେଣୀ ପଢ଼ିବାକୁ ହେବ । ତେଣୁ ମା'ବାପା ବିଚାର କଲେ, କଷ୍ଟେ ମଷ୍ଟେ ପୁଅକୁ ମ୍ୟାଟ୍ରିକ ପର୍ଯ୍ୟନ୍ତ ପଢ଼ାଇବା । ତେଣୁ ବାପା ମତେ ପୋଡାଗଡ଼ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ମୋର ନାମ ଲେଖାଇଲେ । ଧାର ଉଧାର କରି ମତେ ପେନ, ଖାତା, ବହି, କଲମ କିଣି ଦେଲେ । ମୁଁ ଏବଂ ଆମ ଗ୍ରାମରୁ ତିନି ଜଣ ସାଥିରେ ମୋ ସହିତ ଷଷ୍ଠ ଶ୍ରେଣୀରେ ପଢୁଥିଲେ । ତେଣୁ ପାଠପଢ଼ିଲେ ଇଛା ନ ପଢିଲେ ଇଛା । ତେଣୁ ସେମାନେ ସ୍କୁଲ ଗୋଟିଏ ଦିନ ଗଲେ ତିନି ଚାରିଦିନ ସ୍କୁଲ ବନ୍ଦ କରନ୍ତି । ସେମାନଙ୍କ ସହିତ ମୁଁ ମଧ୍ୟ ମିଶି ପୁଣି ସ୍କୁଲ ନଯିବା ପାଇଁ ଠକିବା ଆରମ୍ଭ କଲି । ସ୍କୁଲ ଯିବା ସମୟରେ କେଉଁ ଖାଲ ଭିତରେ ଲୁଚି ରହି ଠିକ୍ ଚାରିଟା ହେଲେ ବାହାରି ଘରେ ପହଞ୍ଚି ଯାଇଥିଲୁ । ଏମିତି କରି କଷ୍ଟେମଷ୍ଟେ ଷଷ୍ଠ ଶ୍ରେଣୀ ପାସ୍ କଲି । କିନ୍ତୁ ସପ୍ତମରେ ଶିକ୍ଷକମାନେ ଶ୍ରେଣୀରେ କହୁଥାନ୍ତି 'ସପ୍ତମ ଶ୍ରେଣୀ ବହୁତ କଷ୍ଟ ଓ ବୋର୍ଡ଼ ପରୀକ୍ଷା ।' ପୁଣି ସପ୍ତମ ଶ୍ରେଣୀ ପରୀକ୍ଷା ଉଚ୍ଚ ବିଦ୍ୟାଳୟରେ ହେବ । ଶିକ୍ଷକ ଭୟ ଦେଖାନ୍ତି । ମୁଁ ଶିକ୍ଷକ କଥାକୁ ବିଚାର କଲି ଭଲ ପାଠ ନପଢ଼ିଲେ ଫେଲ ହୋଇଯିବି, ଏଥର ଟିକେ ଭଲ ପଢିବି ବୋଲି ଭାବି ଲାଗିପଡିଲି । ଘରର ଆର୍ଥିକ ପରିସ୍ଥିତି ତ ଖରାପ । ତେଣୁ ତ ଟିଉସନ କରାନ୍ତି ନାହିଁ । ମୁଁ କିନ୍ତୁ ସପ୍ତମ ଶ୍ରେଣୀ କିପରି ପାସ୍ କରିବି ବହୁତ ଚିନ୍ତା । ମୁଁ ପାଠ ପଢ଼ିବାରେ ଲାଗିଗଲି । ପରୀକ୍ଷା ହେଲା । ଯାହା ହେଉ ଭଗବାନଙ୍କ କୃପାରୁ ସପ୍ତମ ଶ୍ରେଣୀ ସି ଗ୍ରେଡ଼ରେ ପାଶ କଲି । କିନ୍ତୁ ସି ଗ୍ରେଡରେ ପାସ୍

କରିଥିବାରୁ ମା' ବାପା ଓ ଦାଦାମାନେ ଭାରି ରାଗିଲେ ମୋ ଉପରେ । କିନ୍ତୁ ମୁଁ ଉତ୍ତର ଦେଲି ମୋ ସହିତ ପଢୁଥିବା ପିଲାମାନେ ତ ଫେଲ ହେଲେ । ମୁଁ ଯେମିତି ସେମିତି ତ ପାସ କରିଗଲି ନା । ତା'ପରେ ସେମାନେ ଶାନ୍ତ ହେଲେ । ସପ୍ତମ ଶ୍ରେଣୀ ପାସ୍ କଲା ପରେ ବାପା ଅଷ୍ଟମ ଶ୍ରେଣୀରେ ମୋର ନାମ ଲେଖାଇ ଦେଲେ । ତାପରେ ବହିପତ୍ର, ଖାତା କିଣେଇଦେଲେ କିନ୍ତୁ ମୋର ଅଷ୍ଟମ ଶ୍ରେଣୀରେ ପାଠ ପଢ଼ାରେ ମୁଁ ଅବହେଳା କଲି । ଇଂରାଜୀ ଶିକ୍ଷକ ଭୀଷଣ ମାଡ ମାରୁଥିବାରୁ ପୂର୍ବପରି ଠକାମି ଆରମ୍ଭ କଲି । ପାଠପଢ଼ା ଅବହେଳା ଯୋଗୁଁ ଫେଲ ହେବାର ସମ୍ଭାବନା ଥିଲା । କିନ୍ତୁ କଷ୍ଟେ ମଷ୍ଟେ ପାସ୍ କରିଗଲି ଓ ନବମ ଶ୍ରେଣୀରେ ପଢ଼ିବା ପାଇଁ ପୁଣି ନବମ ଶ୍ରେଣୀରେ ନାମ ଲେଖାଇଲି । ନବମ ଶ୍ରେଣୀର ଗଣିତ ଇଂରାଜୀ ବହୁତ କଷ୍ଟ । ମୋତେ ଏହି ଦୁଇଟି ବହି ଦେଖିଲେ ଭାରି ରାଗ ମାଡେ । କିନ୍ତୁ ଶିକ୍ଷକମାନେ କହନ୍ତି ଯେ ନବମ କ୍ଲାସର ପାଠ ଦଶମ କ୍ଲାସରେ ପଡ଼ିବ ନବମ ଶ୍ରେଣୀର ପାଠ ଅବହେଳା ଯୋଗୁଁ ପୁଣି ନବମ ଶ୍ରେଣୀରେ ଆଉ ଏକ ବର୍ଷ ପଢ଼ିଲି । ମୁଁ କେମିତି ମାଟ୍ରିକ ପାସ କରିବି । ମତେ ଚିନ୍ତା ଲାଗେ ଯେ ପିଲାମାନେ କେମିତି ମାଟ୍ରିକ ପାସ୍ କରନ୍ତି । କିନ୍ତୁ ଶିକ୍ଷକମାନେ କ୍ଲାସର କୌଣସି ଭେଲ୍ୟୁ ନାହିଁ ବୋଲି କ୍ଲାସରେ କହନ୍ତି । ମତେ ଏହି କଥା ଭାରି ବାଧିଲା । ତେଣୁ ମୁଁ ନବମ ଶ୍ରେଣୀରେ ଏମିତି ପାଠ ପଢିଲି ଯେ ଦିନ ରାତି ଖାଇବା ଶୋଇବା ଭୁଲିଗଲି । ସବୁବେଳେ ପାଠ ପଢ଼ିଲି । ଶ୍ରେଣୀରେ ଦ୍ୱିତୀୟ ଶ୍ରେଣୀ ସ୍ଥାନ ପାଇଛି ନବମ ଶ୍ରେଣୀରେ । ମା' ବାପା, ଦାଦାମାନେ ଭାରି ଖୁସୀ ହେଲେ । ଦଶମ ଶ୍ରେଣୀରେ ମୁଁ କେମିତି ଦ୍ୱିତୀୟ ଶ୍ରେଣୀ ନା ପ୍ରଥମ ଶ୍ରେଣୀରେ ପାସ୍ କରିବି ବୋଲି ଚିନ୍ତା କଲି । ପିଲାମାନେ କିଏ କିଏ ଟିଉସନ ହୁଅନ୍ତି କିନ୍ତୁ ଆମର ଘରର ଆର୍ଥିକ ପରିସ୍ଥିତି ଶୋଚନୀୟ ଯୋଗୁଁ ଟିଉସନ ହୋଇ ପାରିଲି ନାହିଁ । କିନ୍ତୁ ମୁଁ ମୋର ଘରେ ପାଠପଢ଼ାରେ ବହୁତ ପରିଶ୍ରମ କଲି । କାଳେ ମ୍ୟାଟ୍ରିକ ଫେଲ ହୋଇଯିବାକୁ ପଡିବ ବୋଲି ମୁଁ ବୋର୍ଡ଼ ପରୀକ୍ଷା ଦେଲି ନାହିଁ । ସପ୍ଲିମେଣ୍ଟାରୀ ପରୀକ୍ଷା ଦେବା ପାଇଁ ବହୁତ କଷ୍ଟ କଲି ପାଠ ପଢ଼ିବା ପାଇଁ । ପରିଶେଷରେ ସପ୍ଲିମେଣ୍ଟାରୀ ପରୀକ୍ଷା ଦେଲି ଏବଂ ଦ୍ୱିତୀୟ ଶ୍ରେଣୀରେ ପାସ କଲି । ମା' ବାପା, ଦାଦାମାନେ ଭାରୀ ଖୁସୀ ହେଲେ । ମୁଁ ମଧ ଭାରୀ ଖୁସୀ ହେଲି ଯେ ମୁଁ ମ୍ୟାଟ୍ରିକରେ ଦ୍ୱିତୀୟ ଶ୍ରେଣୀରେ ପାସ୍ କଲି । ମା', ବାପା ବହୁ କଷ୍ଟରେ ପ୍ରଥମରୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ାଇଛନ୍ତି । ତେଣୁ ମୁଁ ବାପା, ମା'ଙ୍କ ପାଖରେ ଚିର ଦିନ ପାଇଁ ଋଣୀ । ଏଇଟି ମୋର ପ୍ରଥମ ଶ୍ରେଣୀରୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ କାହାଣୀ ।

ଗୌରାଙ୍ଗ ବିଶୋଇ



# ମୋ ଅନୁଭୂତିରୁ ଟିକିଏ କଥା

ମୋର ନାମ ବୃଷଭ କହଁର । ପ୍ରକଳ୍ପ ଅଗ୍ରଗାମୀ, ଡେରାକୁମ୍ପା, ଜି: କନ୍ଧମାଳ । ଅଗ୍ରଗାମୀ ଦ୍ୱାରା ଖୋଲାଯାଇଥିବା ଏହି ନବସୃଜନ ଶିକ୍ଷାକେନ୍ଦ୍ରରେ ଶିକ୍ଷାକତା କରୁଛି । ଆଜିକୁ ପ୍ରାୟ ୨ ବର୍ଷ ହେଲାଣି ଗାଦାପଙ୍ଗା ଶିକ୍ଷାକେନ୍ଦ୍ରରେ କାମ କରୁଛି । ଗାଦାପଙ୍ଗା ଗାଁଟି କ୍ରାଣ୍ଡିବାଲି ପଞ୍ଚାୟତ ମଧ୍ୟରେ ଅବସ୍ଥିତ । ଏହି ଗାଁକୁ ଯିବାକୁ ହେଲେ କ୍ରାଣ୍ଡିବାଲିଠାରୁ ୬ କିଲୋମିଟର ଯିବାକୁ ପଡିବ । ଏହି ଗାଦାପଙ୍ଗା ଗାଁରେ ମୋଟ ଆଦିବାସୀ, ହରିଜନ ଓ ସାଧାରଣ ବର୍ଗର ଲୋକ ମିଶି ମୋଟ ୨୫ ଟି ପରିବାର ବାସ କରନ୍ତି । ପ୍ରାୟ ସମସ୍ତ ଲୋକ ନିରକ୍ଷର । ତେଣୁ ଗାଦାପଙ୍ଗା ଗାଁକୁ ଦେଖିଲେ ବହୁତ ଦୁଃଖଲାଗେ । ଏଠାକାର ସବୁଲୋକ ଗରିବ । ଦେଖିବାକୁ ଗଲେ ଏହି ଗାଁରେ କୌଣସି ପ୍ରକାର ସରକାରୀ ସୁବିଧା ନାହିଁ । ଅଗ୍ରଗାମୀ ଦ୍ୱାରା ଗୋଟିଏ ଚେକ୍‌ଡ୍ୟାମ, ଗୋଟିଏ କୂଅ ଓ ଗୋଟିଏ ବନ୍ଧ ଖୋଳାଯାଇଛି । ସରକାର ଦ୍ୱାରା ମାତ୍ର ଗୋଟିଏ ଇନ୍ଦିରାଆବାସ ଘର ହୋଇଛି । ଆଉ କୌଣସି କାମ ହୋଇନାହିଁ ।

ଗାଦାପଙ୍ଗା ଗାଁରେ ମୁଁ ଯେଉଁ ଦିନ ରହିଲି, ସେହି ଦିନ ମୁଁ ଗୋଟିଏ ବୈଠକ କଲି, ବୈଠକରେ ଆମର ଅନେକ ଅସୁବିଧା ଦେଖିବାକୁ ପାଇଲୁ । ସେହି ଅସୁବିଧାଗୁଡ଼ିକୁ କେମିତି ଆମେ ସମାଧାନ କରିପାରିବା ସେଥିପାଇଁ ସମସ୍ତ ଲୋକ ବାଟ ଖୋଜିଲୁ । ପ୍ରଥମ ଅସୁବିଧା ସ୍କୁଲଘରକୁ ତିଆରି କରିବା ପାଇଁ କୁହାଗଲା । ସେହି ଭଙ୍ଗାଘରକୁ ସଙ୍ଗେ ସଙ୍ଗେ ତିଆରିଲେ । ତା'ପରେ ସ୍କୁଲକୁ ମୋଟେ ୫ଜଣ ଆସୁଥିଲେ । ତାଙ୍କର ବାପା ଓ ମା'ମାନଙ୍କୁ ଡାକି ବୈଠକ ଅନୁଷ୍ଠିତ କଲୁ ଏବଂ ତାଙ୍କର ବାପାମା' ଆସି ପିଲାମାନଙ୍କର ନାମ ଲେଖାଇଲେ । ସେହି ଦିନଠାରୁ ମଧ୍ୟ ପିଲାମାନେ ଆସିଲେ ନାହିଁ । ପିଲାମାନଙ୍କୁ କହିଲି ତୁମେ ଯାଇ ସମସ୍ତଙ୍କୁ ଡାକି ଆଣିଲେ ପାଠ ପଢ଼ିବା ବୋଲି

କହିଲି । ପିଲାଏ ହଁ କହି ସମସ୍ତଙ୍କୁ ଧରି ଆସିଲେ । ତା'ପରେ ମୁଁ ପିଲାମାନଙ୍କୁ ପାଠ ପଢ଼ାଇବାର ଉପାୟ ଆରମ୍ଭ କଲି । ପିଲାମାନେ ପ୍ରଥମେ ସିଲଟ୍‌ଖଡି ଧରି ଜାଣି ନଥିଲେ । ସେମାନଙ୍କୁ ପ୍ରଥମ ଦିନରେ ଖାଲି ଚିତ୍ର କାଟି ଦେଖାଇଲି ଏବଂ ପିଲାମାନଙ୍କୁ ପଚାରିଲି । ପିଲାମାନେ ଚିତ୍ର ଦେଖି ନିଜେ ନିଜେ ସବୁ କହିବାକୁ ଲାଗିଲେ । ତହିଁ ଆର ଦିନ ଗୀତ ଗାଇବା ଆରମ୍ଭ କଲି । ପିଲାଏ ଗୀତ ଶିଖିବା ଆରମ୍ଭ କଲେ । ତା'ପରେ ସବୁ ପିଲା ନିଜେ ନିଜେ ସ୍କୁଲକୁ ଆସିବାକୁ ଲାଗିଲେ । ମୋତେ ଆଉ ଡାକିବାକୁ ପଡିଲା ନାହିଁ । ପିଲାମାନଙ୍କୁ ମଁ ଅକ୍ଷର ଶିକ୍ଷା ଦେବା ଆରମ୍ଭ କଲି । ପିଲାମାନେ ଖୁସୀ ହୋଇ ଅକ୍ଷରସବୁ ଶିଖିବାକୁ ଆରମ୍ଭ କଲେ ।

ମୁଁ ଗାଦାପଙ୍ଗା ଗାଁକୁ ଯିବାପରେ ପ୍ରଥମେ ଗୋଟିଏ ଘରଦେଲେ । ସେହିଠାରେ ରହି ମୁଁ ପିଲାମାନଙ୍କୁ ପାଠ ପଢ଼ାଉଥାଏ । କିନ୍ତୁ ଗୋଟିଏ ଦିନ ପିଲାଏ ବେଶୀ ପାଟିତୁଣ୍ଡ କରୁଥିଲେ । ସେହିମାନଙ୍କୁ ମୁଁ ଶାନ୍ତ କରିବି ବୋଲି ମନକୁ ଭାବି ପିଲାମାନଙ୍କୁ ଚୁପ୍ ହେବାକୁ କହିଲି । ତା'ପରେ ଘରକୁ ଯିବା ପୂର୍ବରୁ ସେହି କୁନି ଝିଅଟି ମୋତେ ବହୁତ ଗାଳି ଦେଲା । ଶେଷରେ ମୁଁ ତାକୁ କିଛି ନକରି ଜୋର୍‌ରେ ପାଟିକଲି । ଏହି କହିବା କଥାକୁ ଘରକୁ ଯାଇ ତାଙ୍କର ବାପା ମୋତେ ବହୁତ ପ୍ରକାର କଥା କହିଲେ । ସେହି କଥାକୁ ମୋତେ କହିଲେ ଏବଂ ମୁଁ ତା'ପରେ ମିଟିଂ କଲି । ମିଟିଂରେ ଆମର ଉପକେନ୍ଦ୍ର କର୍ମୀ ଭାଇ ମଧ୍ୟ ଉପସ୍ଥିତ ହୋଇଥିଲେ । ପରେ ସେହି ଗାଁର ସମସ୍ତ ଭାଇ, ବାପା, ମା'ମାନେ କହିବାରୁ ରହିଲି । କିନ୍ତୁ ସେହି ଲୋକଟି ଦେଇଥିବା ଘରେ ରହିଲି ନାହିଁ । ଗାଁଲୋକମାନେ ମୋତେ ରହିବା ପାଇଁ ଘରଟିଏ କରିଦେଲେ ।

ସ୍କୁଲ ପାଠ ପଢ଼ାଇବା ସଙ୍ଗେ ସଙ୍ଗେ ଗାଁର ସୁବିଧା ଅସୁବିଧା ଦେଖିବାକୁ ପଡୁଛି । ଆମ ଗାଦାପଙ୍ଗା କେନ୍ଦ୍ରରେ ମାସକୁ ୪ଥର ବୈଠକ ବସୁଛନ୍ତି । ମୁଁ ଦିନବେଳା ଯେଉଁ ପିଲାମାନଙ୍କୁ ପାଠ ପଢ଼ାଉଛି, ସେହି ପିଲାମାନଙ୍କୁ ଧରି ଗାଁରେ କ'ଣ ଅସୁବିଧା ରହିଛି ତା'ର ଆଲୋଚନା କରୁଛି ଓ ସମାଧାନର ରାସ୍ତା ଆମେ ଖୋଜୁଛୁ । ବଡ଼ ଅସୁବିଧା ହେଲେ ବାପା ମା'ମାନଙ୍କ ସଙ୍ଗେ ଆଲୋଚନା କରୁଛୁ ।

ମୋ ସ୍କୁଲରେ ପିଲାସଂଖ୍ୟା ୨୯ । ସେଥିମଧ୍ୟରୁ ୨୨ଜଣ ଝିଅ ଓ ୭ ଜଣ ପୁଅ । ଆମେ ପିଲାମାନେ ମୁଁ ମିଶି ଆମ ସ୍କୁଲ ଘରର କିଛି ନଷ୍ଟ ହେଲେ ପୁଣି ଥରେ

ଠିକ୍ କରୁ । ଆମେ ଏମିତି ବାଟଘାଟ ମଧ୍ୟ ପରିଷ୍କାର କରୁ । ଅଗ୍ରଗାମୀ ଦେଇଥିବା ଅନୁଦାନ ଟଙ୍କାରେ ଗୋଟିଏ ଦୋକାନ କରିଛୁ ଏବଂ କିଛି ଟଙ୍କାରେ ଛେଳି କିଣିଛୁ । ଗାଁରେ ପାଖାପାଖି କୌଣସି ସରକାରୀ ସ୍କୁଲ ମଧ୍ୟ ନାହିଁ । ତେଣୁ ଗାଁଟିକୁ ଦେଖି ମୋତେ ବହୁତ ଦୁଃଖ ଲାଗେ । କିନ୍ତୁ ମୁଁ ଅନୁଭବ କରୁଛି ଯେ ଗାଁଲୋକମାନେ ଧୀରେ ଧୀରେ ନିଶ୍ଚୟ ସଚେତନ ହେଲେଣି ।

ବୃଷଭ କହଁର
ନବସୃଜନ ଶିକ୍ଷାକେନ୍ଦ୍ର
ଗାଦାପଙ୍ଗା, କନ୍ଧମାଳ

□□□

# ଗତ ଅଢ଼େଇ ବର୍ଷ ଭିତରେ ମୋ ଶିକ୍ଷାକେନ୍ଦ୍ରର ଅନୁଭୂତି

ନାମ: ଅମ୍ବିକା ଦିଗାଲ, ନିଜ ଗାଁ: ବଇଡ଼ା, ଜି: କନ୍ଧମାଳ, ଶିକ୍ଷାକେନ୍ଦ୍ର: କଟାପଙ୍ଗା, ଅଗ୍ରଗାମୀ: ଡେରାକୁମ୍ବା, ଉପକେନ୍ଦ୍ର: କ୍ରାଣ୍ଡିବାଲି, ବ୍ଲକ୍: ଫିରିଙ୍ଗିଆ, ଜି: କନ୍ଧମାଳ । ମୁଁ ନିଜ ଗାଁଠାରୁ ୪୫ କିଲୋମିଟର ଦୂରରେ ରହୁଛି । କଟାପଙ୍ଗା ଗାଁକୁ ଯିବାର ଠିକ୍ ୨୬ମାସ ବିତିଗଲାଣି । ମୁଁ ପ୍ରଥମେ ଯାଇ ଗାଁଟା ଦେଖିଆସିଲି । ତା'ପରେ ଆସି ମୁଁ ମୋ ଆବଶ୍ୟକୀୟ ଜିନିଷପତ୍ର ନେଇକି ଗଲି । ମତେ ଯତନ ଭାଇ ଛାଡି ଦେବାକୁ ଆସିଲେ । କର୍ମୀଭାଇ ସହିତ ଉପକେନ୍ଦ୍ରକୁ ଗଲି । ଉପକେନ୍ଦ୍ରକୁ କ୍ଷେତ୍ରସଂଯୋଜକ ଭାଇ ମତେ କଟାପଙ୍ଗାରେ ଛାଡିଦେଇ ଆସିଲେ । ମୁଁ ସେଠାରେ ରହିଲି । ମୁଁ ସେହି ଗାଁର ପ୍ରତ୍ୟେକ ଲୋକଙ୍କୁ ଚିହ୍ନିବା ପାଇଁ ପ୍ରଥମେ ଘର ଘର ବୁଲିଲି । ପ୍ରଥମ ଦିନ ସେମାନଙ୍କ ସହ କଥା ହେବା ପାଇଁ ମଧ୍ୟ ମୋତେ କେମିତି କେମିତି ଲାଗୁଥିଲା । ମୁଁ ସେତେବେଳେ ନବାତୀ ମା'ର ଗୋଟିଏ ଛୋଟିଆ ଘର ଥାଏ । ମୁଁ ସେଇଠି ପ୍ରାୟ ମାସେ ରହିଲି ଓ ଦାଣ୍ଡରେ ପିଲାଙ୍କୁ ପାଠ ପଢ଼ାଇଲି । ପୁଅ ୧୫ ଓ ଝିଅ ୧୫, ମୋଟ ୩୦ ଜଣ ପିଲା ନାମ ଲେଖାଇଥିଲେ ମଧ୍ୟ ପ୍ରତିଦିନ ୨୭/୨୮ ପିଲା ଆସୁଥିଲେ । ସେମାନେ ନିଜ ଇଚ୍ଛାରେ ସ୍କୁଲକୁ ଆସନ୍ତି । ମତେ କେବେ ବି ସେମାନଙ୍କୁ ଡାକିବାକୁ ପଡିନି, ସେଇଟା ହିଁ ମୋ ପାଇଁ ଖୁବ୍ ଖୁସୀର କଥା ଥିଲା ।

ମୁଁ ପ୍ରଥମେ ଗାଁ ଲୋକଙ୍କୁ ବୁଝାଇବା କଥା ଛାଡ, ସେମାନଙ୍କ ସହିତ ଭଲ ଭାବେ କଥାବାର୍ତ୍ତା ମଧ୍ୟ କରିପାରୁ ନଥିଲି । କିନ୍ତୁ ଧୀରେ ଧୀରେ ଅଗ୍ରଗାମୀର ବିଭିନ୍ନ ବୈଠକ, ତାଲିମ୍ ଇତ୍ୟାଦିରେ ଯୋଗଦେବା ଦ୍ୱାରା ମୁଁ ସମସ୍ତଙ୍କ ସହିତ ନିର୍ଭୟରେ କଥାବାର୍ତ୍ତା କରିପାରିଲି ।

ମୁଁ ସେହି ଗାଁକୁ ଯିବା ପୂର୍ବରୁ ମା'ବାପାମାନେ ବହୁତ ମଦ ପିଉଥିଲେ । ମୁଁ ଯିବା ପରଠୁ ଧୀରେ ଧୀରେ ସେମାନେ ମଦ ପିଇବା ବନ୍ଦ କଲି । ବର୍ତ୍ତମାନ ଆଉ

କେହି ମଦ ପିଉନାହାନ୍ତି । ନବାତୀ ବେହେରା ମା' ବହୁତ ମଦ ପିଉଥିଲେ ଓ ସ୍ୱାମୀ ସାଙ୍ଗରେ ଗଣ୍ଡଗୋଳ କରୁଥିଲେ । ବର୍ତ୍ତମାନ ସେ ସବୁକଥା ଜାଣିବା ପରେ ମଦ ଛାଡିଛନ୍ତି । ମୁଁ ଗାଁରେ ବାରମ୍ବାର ମିଟିଂ କରି ବିଭିନ୍ନ ସୁବିଧା ଅସୁବିଧା ବିଷୟରେ ବୁଝାଉଛି । ସେମାନଙ୍କୁ ପଲ୍ଲୀସଭା ଓ ଗ୍ରାମସଭା ଇତ୍ୟାଦି ବିଷୟରେ ମଧ୍ୟ ବୁଝାଇଛି ଓ ସେଥିରେ ଯୋଗ ଦେବାକୁ କହୁଛି । କିଛି ଲୋକ ବୁଝିଲେଣି । ମୁଁ ଯିବା ପରେ କାଟାପଙ୍ଗା ଗାଁର ଏକତା ବଢ଼ିଛି । ଏହି ଗାଁରେ କୁଟୁମ୍ବପାଣ୍ଠି ମଧ୍ୟ ଅଛି । ଆଗେ ଲୋକେ ସାହୁକାରମାନଙ୍କ ପାଖରୁ ଋଣ ଆଣି ଶୁଝି ପାରୁ ନଥିଲେ । ଏହି କୁଟୁମ୍ବପାଣ୍ଠି ହେବା ଫଳରେ ସେମାନେ ଆଉ ସାହୁକାରମାନଙ୍କ ଉପରେ ନିର୍ଭର କରୁନାହାନ୍ତି । ମୁଁ ଯିବା ପରେ ଗାଁରେ ମହିଳାମଣ୍ଡଳଟିଏ ମଧ୍ୟ ଗଠିତ ହୋଇଛି । ତା'ର ନାମ 'ଲାଦାଙ୍ଗି ମହିଳାମଣ୍ଡଳ' ଦିଆଯାଇଛି । କାଟପଙ୍ଗା ଗାଁର ଲୋକ ପାଳୁଅ ଚାଷ ଉପରେ ନିର୍ଭର କରନ୍ତି । ପାଳୁଅ ଚାଷରୁ ସେମାନେ ବହୁତ ଲାଭ ପାଆନ୍ତି ।

ମୁଁ ପିଲାମାନଙ୍କୁ ନେଇ ପି.ଆର୍.ଏ କରିଥିଲି । ଏହାଦ୍ୱାରା ପିଲାମାନେ ନିଜ ଗାଁରେ ବିଷୟରେ ଅନେକ ଅଜଣା ଜିନିଷସବୁ ଜାଣିପାରିଲେ । କଟାପଙ୍ଗା ଗାଁରେ ଗୋଟିଏ ସରକାରୀ ପ୍ରାଥମିକ ବିଦ୍ୟାଳୟ ଅଛି । କିନ୍ତୁ ସେଠାରେ ଶିକ୍ଷକ କେବେ ସ୍କୁଲକୁ ଆସୁ ନଥିଲେ । ଗାଁରେ ଅନେକ ଥର ବୈଠକ କରି ଏ ବିଷୟରେ ବୁଝାଇବା ପରେ ସଭାପତି ଶିକ୍ଷକଙ୍କୁ କହିଲେ ଓ ବର୍ତ୍ତମାନ ସ୍କୁଲ୍‌ଟି ଠିକ୍ ଚାଲିଛି । ଅଙ୍ଗନବାଡିର ଖାଦ୍ୟ ଠିକ୍ ଭାବେ ମିଳୁ ନଥିଲା । ଅଙ୍ଗନବାଡ଼ିର ଦିଦିକୁ ଏକଥା ଯାଇ କହିବାରୁ ବର୍ତ୍ତମାନ ପ୍ରତି ମାସରେ ଥରେ ଖାଦ୍ୟ ମିଳୁଛି । ତା'ପରେ ଆମ ଶିକ୍ଷାକେନ୍ଦ୍ରମାନଙ୍କରେ 'ଶିଶୁ ପଞ୍ଚାୟତ' ନିର୍ବାଚନ ହୋଇଥିଲା । ସେଥିରେ ପିଲାମାନେ ସରପଞ୍ଚ, ୱାର୍ଡ଼ମେମ୍ବର ଛିଡ଼ା ହୋଇଥିଲେ । ଏହା ହେବାଦ୍ୱାରା ସେମାନେ ସରପଞ୍ଚ, ୱାର୍ଡ଼ ମେମ୍ବର ଆଦିଙ୍କ କର୍ତ୍ତବ୍ୟ ବିଷୟରେ ମଧ୍ୟ ଜାଣିପାରୁଛନ୍ତି ।

ଅନେକ ପିଲା ଓଡ଼ିଆ ଭାଷା ଠିକ୍ ଭାବରେ ବୁଝିପାରନ୍ତି ନାହିଁ । ତେଣୁ ମୁଁ ଯଥାସମ୍ଭବ ସରଳ କରି ଦେଶିଆ ଭାଷାରେ ସେଗୁଡିକୁ ବୁଝାଇବାକୁ ଚେଷ୍ଟା କରିଥାଏ । ମଝିରେ ମଝିରେ ପାଖ ଜଙ୍ଗଲକୁ ପିଲାମାନଙ୍କୁ ବୁଲାଇବାକୁ ନେଇଥାଏ ଓ ବିଭିନ୍ନ ପ୍ରକାର ଗଛଲତା, ପକ୍ଷୀ, ଜନ୍ତୁ ଇତ୍ୟାଦିକୁ ଚିହ୍ନାଇଦେଇଥାଏ । ପିଲାମାନେ ଏହାଦ୍ୱାରା ବହୁତ ଖୁସୀ ହୁଅନ୍ତି । ମୁଁ ବର୍ତ୍ତମାନ କଟାପଙ୍ଗାର ଗାଁରେ ସେହି ଗାଁର ଜଣେ ଝିଅ ଭାବରେ ରହିଛି ।

ଅମ୍ବିକା ଦିଗାଲ



# ତଫାତ୍ କେତେ ?

ଆମ ସିର୍ଲିଯୋଡ଼ି ଶିକ୍ଷାକେନ୍ଦ୍ର ଚାଲିବାର ଦୁଇବର୍ଷ ପୂରି ଆଉ କେତୋଟି ମାସ ଗଲେ ତିନିବର୍ଷ ହୋଇଯିବ । ଆମେ ଆପଣଙ୍କ ଅନୁଷ୍ଠାନ ତରଫରୁ ଗୁରୁଭାଇ ରୂପେ ନିଯୁକ୍ତ ହୋଇ ଆଦିବାସୀ ଇଲାକାର ବିଭିନ୍ନ ପଞ୍ଚାୟତ, ବ୍ଲକ୍ ଜିଲ୍ଲାଠାରୁ ଆରମ୍ଭ କରି ଗାଁ ସ୍ତର ପର୍ଯ୍ୟନ୍ତ ଘଞ୍ଚ ଜଙ୍ଗଲ ଭିତରେ ଘେରି ରହିଥିବା ଦୁର୍ଗମ ଗାଁ, ଯେଉଁଠାରେ ଶିକ୍ଷା କ'ଣ, ସ୍ୱାସ୍ଥ୍ୟ କ'ଣ, ରାଜନୈତିକ ଓ ଅର୍ଥନୈତିକ ଶିକ୍ଷା କ'ଣ, ଧନ୍ଦାମୂଳକ ଶିକ୍ଷା କ'ଣ, ସ୍ୱାଧୀନତା ଅଧିକାର କ'ଣ, ବଞ୍ଚିବାର ଅଧିକାର କ'ଣ, ଶିକ୍ଷାଗତ ଅଧିକାର କ'ଣ ଜାଣି ନାହାନ୍ତି, ଯେଉଁଠିକି ସରକାର ଯେକୌଣସି କାର୍ଯ୍ୟକ୍ରମ ଠିକ୍ ଭାବରେ ତୁଲାଉ ନାହିଁ ସେଇଠି ଆମେ ଯାଇ ସମସ୍ତଙ୍କ ସହ ସୁସମ୍ପର୍କ ରଖି ଗାଁ ତଥା ଆଖପାଖ ଗାଁରେ କାମ କରିଆସୁଛୁ ଓ ସରକାରଙ୍କ କାର୍ଯ୍ୟକ୍ରମଗୁଡ଼ିକୁ ମଧ୍ୟ ଲୋକଙ୍କ ପାଖରେ ପହଞ୍ଚାଇବାର ବ୍ୟବସ୍ଥା କରୁଛୁ ।

ଖାଲି ତ ଆମେ ଗାଁର ୬ରୁ ୧୪ ବର୍ଷର ପିଲାଙ୍କୁ ପାଠ ପଢ଼ାଉନାହୁଁ; ତା'ସହିତ ବିଭିନ୍ନ କାର୍ଯ୍ୟକ୍ରମ ବିଷୟରେ ମଧ୍ୟ ଚିନ୍ତା କରୁଛୁ । ଗାଁର ସମସ୍ତଙ୍କୁ ଉନ୍ନତ କରିବା ପାଇଁ ଚାହୁଁଛୁ । ଏହି ୨ ବର୍ଷ ମଧ୍ୟରେ ଦେଖିବାକୁ ଗଲେ ଗାଁର ବହୁତ ପରିବର୍ତ୍ତନ ହୋଇଛି ଓ ହେବ ମଧ୍ୟ । ଦେଶ ସ୍ୱାଧୀନ ହେବାର ୫୩ ବର୍ଷ ବିତିଯାଇଥିଲେ ସୁଦ୍ଧା ସରକାର ଯଦି ଏହିପରି ଶହ ଶହ ଗାଁମାନଙ୍କରେ ଶିକ୍ଷା, ସ୍ୱାସ୍ଥ୍ୟ ଇତ୍ୟାଦି ଉପରେ ସଚେତନତା ଆସି ପାରିନାହିଁ କି ଶିକ୍ଷାର ଆଲୋକ ମଧ୍ୟ ସେମାନଙ୍କ ପାଖରେ ପହଞ୍ଚି ପାରିନାହିଁ । ସେହି ଦୃଷ୍ଟିରୁ ଦେଖିବାକୁ ଗଲେ ଆମ ସ୍କୁଲ୍ ତଥା ଗାଁ ଏହି ଦୁଇ ବର୍ଷ ଭିତରେ ବହୁତ କିଛି ପରିବର୍ତ୍ତନ ହୋଇଥିବାର ପରିଲକ୍ଷିତ ହେଉଛି । ଏଇଥିପାଇଁ ଆମେ ବଡ଼ ଗର୍ବ କରିବା କଥା । ଯେଉଁଲୋକମାନେ ବଡ଼ ଲୋକମାନଙ୍କୁ ଦେଖିଲେ ଭୟ କରୁଥିଲେ, ପାଖକୁ ଯାଇ କଥା ହେବାକୁ ସାହସ କରୁନଥିଲେ କିମ୍ବା ଓଡ଼ିଶା ଭାଷା

ମଧ କହି ପାରୁନଥିଲେ, ଯେଉଁ ପିଲାମାନେକି ପ୍ୟାଣ୍ଟ୍ ପିନ୍ଧା ଲୋକଙ୍କୁ ଦେଖିଲେ ଅଧା ବାଟରୁ ଦେଖିକି ଡରି ପଳାଉଥିଲେ, ସେମାନଙ୍କୁ ସ୍କୁଲ୍‌କୁ ଆଣି ପଢ଼ାଇବାଟା କେତେ କଷ୍ଟ ହୋଇ ନଥିବ, ସେମାନଙ୍କ ସହିତ କିପରି ସମ୍ପର୍କ ରଖିବାକୁ ହୋଇଥିବ !

ବର୍ତ୍ତମାନ ୪/୫ ବର୍ଷର ପିଲାମାନେ ମଧ ମୋ ଶୋଇବା, ଖାଇବା, ପଢ଼ିବା ଜାଗାକୁ ଆସି ମୋତେ ଲାଗି ବସନ୍ତି, ମୋ ଉପରେ ଚଢ଼ନ୍ତି, ମୋ ସହିତ ମଜା କରନ୍ତି । ମୁଁ ଯଦି ମୋ ନିଜ ଗାଁକୁ ୨/୩ ଦିନ ପାଇଁ ଯାଇଥିବି, ତୁମେ ଏତେ ଦିନ ଘରକୁ ଯାଇ ଆଉ ରହନାହିଁ ବୋଲି ସେମାନେ ଅଭିମାନ କରନ୍ତି । ଘରୁ ଆସି ଗାଁରେ ପହଞ୍ଚିଲା ମାତ୍ରେ ଛୋଟ ପିଲାମାନେ ସିଧା ମୋ ପାଖକୁ ଧାଇଁ ଆସନ୍ତି । ମୁଁ କାଶୀପୁର କିମ୍ୱା ଗାଁକୁ ଯାଇଥିଲେ ଟ୍ରେନ୍‌କୁ ସବୁବେଳେ ଅପେକ୍ଷା କରିଥାନ୍ତି ଯେ ମୁଁ କାଲେ ସେଇ ଟ୍ରେନ୍‌ରେ ଆସୁଥିବି । ଗାଁର ପ୍ରାୟ ସମସ୍ତେ ମୋତେ ଖୋଜନ୍ତି । ସେ ଗାଁର ଲୋକମାନଙ୍କୁ ଆମ ଗାଁକୁ ଡାକିନେଇ ଶିକ୍ଷା, ସ୍ୱାସ୍ଥ୍ୟ, କୃଷି ଓ ଅନ୍ୟାନ୍ୟ ବିଷୟ ନେଇ ପରିବର୍ତ୍ତନର କଥା କହେ ।

ସେମାନେ ମୋତେ ଯେମିତି ଗାଁର ଲୋକ ବୋଲି ମାନି ନେଇଛନ୍ତି । ସେମାନେ କୌଣସି ଜିନିଷ ମଧ ମୋତେ ଛାଡି ଖାଆନ୍ତି ନାହିଁ । ଗାଁର ସମସ୍ତ ପିଠାପଣା କିମ୍ୱା ପେଜ ଖାଇବାକୁ ଡାକନ୍ତି । କୌଣସି କାରଣବଶତଃ ନଖାଇଲେ ଆମ ଘରେ ଖାଇଲା ନାହିଁ ବୋଲି ମନଦୁଃଖ କରନ୍ତି । ତେଣୁ ମୁଁ ଟିକେ ଖାଇଦିଏ । ଏଇ ତ ମୋର ବ୍ୟକ୍ତିଗତ ସମ୍ପର୍କ । ମତେ ଆଖପାଖ ସରକାରୀ ସ୍କୁଲ୍‌ରେ ମାଷ୍ଟ୍ର ହେବା ପାଇଁ ସବୁବେଳେ କହନ୍ତି । ଲେଲିଗୁମା ଗାଁର କିଛି ଲୋକ କଲେକ୍ଟର ପାଖକୁ ଯିବା, ତୁ ଆମ ଗାଁରେ ମାଷ୍ଟ୍ର ହେବୁ ବୋଲି କହି ଆସିଥିଲେ । ତେଣୁ ସେମାନଙ୍କୁ ଏ ବିଷୟରେ ମୁଁ ବୁଝାଇଦେଲି । ତା'ପରେ ଜିଲ୍ଲାପାଳଙ୍କ ନିକଟକୁ ଯାଇ ସେମାନେ 'ଆମ ଗାଁରେ ସରକାରୀ ଶିକ୍ଷକ ରହୁନାହାନ୍ତି, ଅଗ୍ରଗାମୀ ଶିକ୍ଷକ ଆମକୁ ଦିଅନ୍ତୁ' ବୋଲି କୁଆଡେ ଦରଖାସ୍ତ ଦେଇଛନ୍ତି ।

ସେମାନେ କହନ୍ତି ଓ ଲେଖିଛନ୍ତି ଯେ ଅଗ୍ରଗାମୀର ମାଷ୍ଟ୍ରମାନେ ସବୁବେଳେ ରହି ପାଠ ପଢ଼ାଉଛନ୍ତି, କେତେ ପିଲାଙ୍କୁ ଶିକ୍ଷିତ କଲେଣି, ବାହାରକୁ ପଢ଼ିବାକୁ ପଠାଇଲେଣି । ସରକାରୀ ମାଷ୍ଟ୍ରମାନେ କାହିଁକି ସେମିତି କରୁନାହାନ୍ତି ବୋଲି ଲେଖିଛନ୍ତି । ଆମକୁ ଦେଖି ପ୍ରାୟ ସରକାରୀ ସ୍କୁଲ୍ ଥିବା ଗାଁର ଲୋକମାନେ ମାଷ୍ଟ୍ରମାନଙ୍କ ପାଖରେ ଅଭିଯୋଗ କଲେ ସେମାନେ ଆଜିକାଲି କିଛି କିଛି ମାଷ୍ଟ୍ର ସ୍କୁଲ୍‌କୁ ଆସୁଛନ୍ତି । କିନ୍ତୁ ଆସିଲେ ମଧ ପାଠ ପଢ଼ାଉନାହାନ୍ତି ବୋଲି ଗାଁଲୋକ ଅଭିଯୋଗ କରୁଛନ୍ତି । ଆମେ

ମଧ୍ୟ ସେ ଶିକ୍ଷକମାନଙ୍କୁ କହୁଛୁ ଯେ ଆମେ ପାଠ ପଢ଼ାଉଛୁ ଆପଣ ମଧ୍ୟ ପାଠ ପଢ଼ାନ୍ତୁ, ଗାଁ ଲୋକଙ୍କ ସାଙ୍ଗରେ ମିଶନ୍ତୁ । ଆପଣ ଏସବୁ କରୁନାହାନ୍ତି ବୋଲି ହିଁ ଗାଁଲୋକ ଅଭିଯୋଗ କରୁଛନ୍ତି । ଆପଣଙ୍କର କର୍ତ୍ତବ୍ୟ ଆପଣ କରିବା ନିହାତି ଦରକାର ।

ଆମ ସ୍କୁଲଖୁ ୩ବର୍ଷ ପରେ ଅନୁଦାନ ବନ୍ଦ ହୋଇଯିବ ବୋଲି ଜାଣି ଆୟକାରୀ ପନ୍ଥା ବିଷୟରେ ବହୁତ ଥର ଆଲୋଚନା ହୋଇଛି । କିପରି ଆୟକାରୀ ପନ୍ଥା ବଢ଼ିପାରିବ, ସେ ବିଷୟରେ ବି ବହୁତ ଥର ଆଲୋଚନା କରିଛୁ । କିନ୍ତୁ ସେହି ଆୟକାରୀ ଟଙ୍କା ଦିଆ ହୋଇଥିଲେ କେତେ ଟଙ୍କା ବଢ଼ିଥାନ୍ତା; ଏବେ ତ ୩ ବର୍ଷ ହୋଇଯିବ । ଗାଁଲୋକ ସେଠି କ'ଣ କରିବେ ? ଗାଁ ଲୋକ ସବୁବେଳେ ପ୍ରଶ୍ନ ପଚାରୁଛନ୍ତି ଯେ ସ୍କୁଲ୍ ଉଠିଗଲେ ଆମ ପିଲାମାନେ ପଢ଼ିବେ କେଉଁଠି ? ଆମ ସ୍କୁଲ୍ ପ୍ରତିଦିନ ଚାଲୁଛି ।

ମୁଁ ସ୍କୁଲରେ ଅନୁପସ୍ଥିତ ଥିଲେ ମଧ୍ୟ ପିଲାମାନେ ସ୍କୁଲ୍ ଚଳାନ୍ତି । ତେଣୁ ଏବେ ମିଳୁଥିବା କିରାସିନି ୨୨/୨୩ ଦିନ ଯାଉଛି । ତେଣୁ ଆମେ ୨/୩ ଟା ଲଣ୍ଠନ ଲଗାଉଛୁ ତଥାପି ନଅଣ୍ଟିଲେ ମୋ ପଇସାରେ ମଧ୍ୟ କିରୋସିନି କିଣା ହେଉଛି । ଆଗରୁ ୧୨ ଲିଟର୍ କିରୋସିନି ଅଣ୍ଟୁ ନଥିଲା ଆଉ ଏବେ ୯ ଲିଟର କିରୋସିନି ଅଣ୍ଟିବ କି ? ବର୍ତ୍ତମାନ ମୋର ଛାତ୍ରଛାତ୍ରୀ ସଂଖ୍ୟା ୨୫ଜଣ । ବାହାରକୁ ଏବର୍ଷ ୪ଜଣଙ୍କୁ ପଢ଼ିବା ପାଇଁ ପଠାଇଛି । ତା'ପରେ ଝିଅମାନଙ୍କୁ ମଧ୍ୟ ଅଧିକ ସଂଖ୍ୟାରେ ସ୍କୁଲ୍‌କୁ ଆସିବା ପାଇଁ ଧାଁ ଧପଡ଼ କରୁଛି । କିନ୍ତୁ ମୋର ପରିଶ୍ରମ ବୃଥା ହୋଇଯାଉଛି । ଅନେକ ଝିଅଙ୍କର ଇଚ୍ଛା ଅଛି ସ୍କୁଲ୍‌କୁ ଆସିବାକୁ କିନ୍ତୁ ସେମାନଙ୍କ ବାପା ମା'ମାନେ ଛାଡିବାକୁ ଆଦୌ ରାଜି ହେଉନାହାନ୍ତି । ତେଣୁ ମୁଁ ବହୁତ ଦୁଃଖିତ ।

**ଜୟରାମ ମାଝୀ**

**ନବସୃଜନ ଶିକ୍ଷାକେନ୍ଦ୍ର, ସିଲିଯୋଡି**



# ତାଲିମ୍ ଶିବିର ଓ ମୋର ଅଭିଜ୍ଞତା

ଗତ ଫେବୃୟାରୀ ମାସ ୨ ତାରିଖ ଠାରୁ ୬ ତାରିଖ ପର୍ଯ୍ୟନ୍ତ ଅଗ୍ରଗାମୀ, ଡେରାକୁମ୍ପା, କନ୍ଧମାଳଠାରେ ଆଞ୍ଚଳିକ ନବସୃଜନ ଗୁରୁଭାଇ ଓ ଭଉଣୀଙ୍କ ପାଇଁ ଏକ ତାଲିମ୍ ଶିବିର ଅନୁଷ୍ଠିତ ହୋଇଥିଲା । ଏହି ତାଲିମ୍ ବିଷୟରେ ଓ ଏଠାରେ ମୁଁ ଯାହା ଶିଖିଲି, ଜାଣିଲି, ଦେଖିଲି ତାହା ମୁଁ ମୋ ଶିକ୍ଷାକେନ୍ଦ୍ରରେ ପ୍ରୟୋଗ କରିଅଛି । ଏହା ପିଲାମାନଙ୍କ ମନରେ ମଧ୍ୟ ବହୁତ ଆନନ୍ଦ ଦେଉଛି । ଏହା ସମୟସୀମା ଆହୁରି ଦୁଇଦିନ୍ ବଢ଼ାଇଥିଲେ ଆହୁରି ଭଲ ହୋଇଥାନ୍ତା ।

**କାର୍ଯ୍ୟକ୍ରମ:**

୧. ପ୍ରତିଦିନ ପ୍ରଭାତ ସମୟରେ ପ୍ରାର୍ଥନା କରାଯାଇଥିଲା ଓ 'ଗାନ୍ଧୀ ଏକ ଜୀବନ' ବହିରୁ କିଛି ଅଂଶ ପଢ଼ାଯାଇଥିଲା ।

୨. ପ୍ରତ୍ୟେକ ଦିନ ଠିକ୍ ସମୟରେ ଶ୍ରମଦାନ କରାଯାଇଥିଲା । ମୋତେ ଏହି ତାଲିମ୍‌ର ଶ୍ରମଦାନ କାର୍ଯ୍ୟକ୍ରମଟି ବେଶି ଆନନ୍ଦ ଦେଇଥିଲା । କାହିଁକି ? ଏହାର କାରଣ ହେଉଛି ଅନେକ ଗଛର ମୂଳରୁ ମାଟି ଧୋଇ ହୋଇ ଯାଇଥିଲା ଓ ଆମେ ତା' ଉପରେ ଦିନରେ ମାଟି ଓ ଛୋଟ ଛୋଟ ପଥର ଦେଇ ଦେଇଥିଲୁ; ଯାହା ଫଳରେ ବର୍ଷା ଦିନରେ ଆଉ ମାଟି ଧୋଇ ହୋଇ ଯାଇପାରିବ ନାହିଁ । ଶ୍ରମଦାନ ସମୟ ଥିଲା ୭ ଘଣ୍ଟାଠାରୁ ୮ ଘଣ୍ଟା ପର୍ଯ୍ୟନ୍ତ ।

୩. ସକାଳ ୯ ଘଣ୍ଟା ସମୟରେ ଜଳଖିଆ କରାଯାଉଥିଲା ।

୪. ଠିକ୍ ୧୦ ଘଣ୍ଟା ସମୟରେ ଆମର ତାଲିମ୍ ଆରମ୍ଭ କରାଯାଉଥିଲା । ଆରମ୍ଭ ହେବା ପୂର୍ବରୁ ପୂର୍ବଦିନର ବିବରଣୀ ଉପସ୍ଥାପନ କରି ତା'ପରେ ତାଲିମ୍‌ର କାର୍ଯ୍ୟସୂଚୀ ଅନୁଯାୟୀ କାମ ଆରମ୍ଭ କରାଯାଉଥିଲା ।

ଏହି ତାଲିମ୍ ଶିବିରରେ ନଡା ବା କୁଟା ଦ୍ୱାରା ଶିକ୍ଷା ସାମଗ୍ରୀ ଓ ଛୋଟ ପିଲାମାନଙ୍କ ପାଇଁ ଖେଳନା ପ୍ରସ୍ତୁତି ବିଷୟରେ ବିନୟ ଭାଇ ଶିକ୍ଷା ଦେଇଥିଲେ । ବିନୟ ଭାଇ କହିଥିଲେ ଯେ, ତୁମେମାନେ ସମସ୍ତେ ନଡ଼ାକୁଟା ଦେଖିଥିବ ଓ ନଡାରେ କ'ଣ କ'ଣ ସବୁ ତିଆରି ହୋଇପାରିବ ତାହା ଦର୍ଶାଇଥିଲେ । ନଡାରେ ମୂର୍ତ୍ତୀ ତିଆରି କରିବା, ଘରଛପର କରିବା, ଗାଈଗୋରୁମାନଙ୍କୁ ଖାଇବାକୁ ଦେବା, ଦଉଡି ତିଆରି କରିବା, ବିଞ୍ଚଣା, ପିଲାମାନଙ୍କ ପାଇଁ ପେଁକାଳି, ଛଡ଼ା ଆହୁରି ଅନେକ ଜିନିଷ ତିଆରି କରାଯାଇ ପାରିବ । ନଡ଼ାରେ ଚିତ୍ର ମଧ୍ୟ କରିହେବ ।

ନଡାରେ ଆମେ ସେଦିନ ହଂସ, ଗାନ୍ଧିଜୀ, ପଦ୍ମଫୁଲ, ମାଛ, ଆମ୍ବ, ଫୁଲ, ପତ୍ର, କଳସ, ଚଢ଼େଇ ଇତ୍ୟାଦି ବିଭିନ୍ନ ପ୍ରକାରର ଜିନିଷ ତିଆରି କରିଥିଲୁ । ପିଲାମାନଙ୍କ ପାଇଁ ଏପରି ଜିନିଷ ପ୍ରକୃତରେ ଅତ୍ୟନ୍ତ ଉପଯୋଗୀ ଓ ଆନନ୍ଦଦାୟକ ।

ମୁଁ ତାଲିମ୍ କେନ୍ଦ୍ରରୁ ଫେରିବା ପରେ ପିଲାମାନଙ୍କ ସହିତ ମିଶି ବଉଳା ଗାଈ ଗପଟିକୁ ନଡ଼ାରେ 'ମଡେଲ୍' ତିଆରି କରି ରାଜ୍ୟସ୍ତରୀୟ ଶିଶୁମେଳାକୁ ଆଣିଥିଲୁ । ଆଉ ପିଲାମାନେ ପାଠ ପଢୁଥିବାରୁ ଦୃଶ୍ୟଟିଏ ମଧ୍ୟ ନଡ଼ା ଦ୍ୱାରା ତିଆରି କରିଥିଲୁ । ପିଲାମାନେ ଏହା ତିଆରି କରିବା ସମୟରେ ବହୁତ ଖୁସୀ ହେଉଛନ୍ତି । ନୂଆ ନୂଆ ଶିକ୍ଷା ଉପରେ ପିଲାଏ ଧାରଣା ପାଇଲେ ଖୁସୀରେ ସ୍କୁଲ୍‌କୁ ଆସୁଛନ୍ତି ଓ ପାଠ ପଢ଼ାରେ ମନ ଦେଉଛନ୍ତି । ବିଭିନ୍ନ ପ୍ରକାର ଶସ୍ୟକୁ ନେଇ ଆମେ ତିଆରି କରିଥିବା ଅକ୍ଷରଚାର୍ଟ ମଧ୍ୟ ପିଲାମାନେ ଶିଶୁମେଳାକୁ ନେଇଥିଲେ । ସେହି ଅକ୍ଷର ଚାର୍ଟକୁ ନେଇ ପିଲାମାନଙ୍କ ଠାରୁ ବହୁତଗୁଡାଏ ପ୍ରଶ୍ନ ଆସୁଛି । କି ମଞ୍ଜି, କେଉଁ ଜାଗାରେ ଏହା ଚାଷ ହୁଏ, ଏହି ମଞ୍ଜିକୁ ଆଉ କ'ଣ କରଯାଏ ଇତ୍ୟାଦି ଇତ୍ୟାଦି । ମୁଁ ଭାବିଥିଲି ପିଲାମାନେ କେବଳ ଅକ୍ଷର ଜାଣିପାରିବେ । ଏତେ ଗୁଡାଏ ପ୍ରଶ୍ନ ପିଲାମାନଙ୍କ ମନରେ ଉଠିବ ବୋଲି ମୁଁ ଆଗରୁ ଭାବିପାରି ନଥିଲି । ତେଣୁ ମୋତେ ଖୁବ୍ ଖୁସୀ ଲାଗିଲା ।

ଏହି ତାଲିମ୍ ଶିବିରରେ ବିଜୟ ଭାଇ ପ୍ରକୃତିର ଜାଲ ଖେଳ ଶିଖାଇଥିଲେ । ପ୍ରକୃତିରୁ ଯାହା ସବୁ ମିଳୁଛି, ସେହି ଛବିଗୁଡିକ ତିଆରି କରି ସେ ଆଣିଥିଲେ । ପରେ ସେ ଲମ୍ବା ସୂତା ଗୋଟିଏ ଆଣି ଆମମାନଙ୍କୁ ପ୍ରକୃତିର ଜାଲ ଖେଳ ଦେଖାଇବାକୁ ଆରମ୍ଭ କଲେ । ପ୍ରଥମେ ସେହି ଛବିଗୁଡିକ ସମସ୍ତ ଗୁରୁଭାଇ ଓ ଭଉଣୀଙ୍କ ମଧ୍ୟରେ ବାଣ୍ଟି ଦିଆଗଲା । ବାଣ୍ଟି ସାରିବା ପରେ ସେ ଛବିକୁ ଦେଖ ବୋଲି ବୋଲି କହିଲେ । ଛବି ଦେଖି ସାରିବା ପରେ ବିଜୟ ଭାଇ ଆମକୁ କହିଲେ, ଏହି ଛବି ସହିତ କାହା

କାହା ଛବିର ସମ୍ପର୍କ ରହିଛି ମୋତେ କହିବ । ତା'ପରେ ଯାହା ସହିତ ଯିଏ ସମ୍ପର୍କ ରହିଛି ବୋଲି କହିଲା ଏହିପରି ସୂଚନା ଲମ୍ବାଇ ଲମ୍ବାଇ ଗଲୁ । ଶେଷରେ ଦେଖିବାକୁ ପାଇଲୁ ଯେ ବୁଢ଼ୀଆଣୀ ଜାଲର ସୂତା ଏପଟରୁ ସେପଟକୁ ଯେମିତି ଲମ୍ବିଥାଏ ଠିକ୍ ସେହିପରି ଏକ ଜାଲ ତିଆରି ହୋଇଯାଇଛି ।

ପ୍ରକୃତି ଜାଲଖେଳରେ ଥିବା ଛବି ଗୁଡ଼ିକ ହେଲା; ଗଛ, ଲତା, ପାଣି, ପବନ, ମାଛ, ବେଙ୍ଗ, କୁମ୍ଭୀର, ଜିଆ, କଙ୍କଡ଼ା, ପଥର, ମାଟି, ଫଳ, ଶୁଆ ସାପ, ପିମ୍ପୁଡ଼ି, ଝିଣ୍ଟିକା, ଘାସ, ଗାଈ, ମଇଁଷି, ବଳଦ, ନେଉଳ, ମଣିଷ ଏହିପରି 'ଜୀବଜଗତ' ଭିତରେ ରହିଥିବା ବିଭିନ୍ନ ପ୍ରକାରର ଜୀବ । ଏହି ଖେଳ ଦ୍ୱାରା ଜୀବଜଗତର କାହା ସହିତ କାହାର ସମ୍ପର୍କ ରହିଛି ଜାଣିହୁଏ ।

ଏହି ପ୍ରକୃତିର ଜାଲ ଖେଳକୁ ମୋ ଶିକ୍ଷାକେନ୍ଦ୍ରରେ ମଧ୍ୟ ଖେଳିଥିଲୁ । ପିଲାମାନେ ବହୁତ ସମୟ ଧରି ଖେଳିବାକୁ ବାହାରିଲେ । ହେଲେ ମାଛ, ବେଙ୍ଗ ଆଦି ପାଖରେ ମିଳୁଥିବା ବିଭିନ୍ନ ଜିନିଷକୁ ସେମାନେ ଜୀଅନ୍ତା ଧରି ଆଣିଥିଲେ । ପିଲାମାନେ ନିଜେ ନିଜେ କାହା ସହିତ କାହାର ସମ୍ପର୍କ ଅଛି ବାଛିଥିଲେ । ପିଲାମାନେ ଆଗ୍ରହର ସହିତ ସେହି ଦିନଠାରୁ ସ୍କୁଲକୁ ବହୁ ସଂଖ୍ୟାରେ ଆସୁଛନ୍ତି ।

ସୁଶାନ୍ତ ଭାଇ ମଜା ଗଣିତ ଶିଖାଇଥିଲେ । ଏ ପରିପ୍ରେକ୍ଷୀରେ ସେ କହିଲେ, ଲୋକମାନେ ପ୍ରଥମେ ଲିଖନ ପ୍ରଣାଳୀ ଜାଣି ନଥିଲେ; ସର୍ବପ୍ରଥମେ ୧ ରୁ ୯ ପର୍ଯ୍ୟନ୍ତ ସଂଖ୍ୟାକୁ କେବଳ ଚୀନ୍ ଦେଶର ଲୋକେ ହିଁ ଜାଣିଥିଲେ; '୦'ର ମୂଲ୍ୟ ପ୍ରଥମେ ଭାରତୀୟମାନେ ଜାଣିଥିଲେ । ଏହାପରେ ସେ ଗୋଟିଏ ପ୍ରଶ୍ନର ଉତ୍ତର ବାହାର କରିବାକୁ କରିଥିଲେ । କେତଟି କୁକୁଡ଼ା ଦିନରେ ଅଣ୍ଡା ଦିଅନ୍ତି । ତେବେ ୧ ଟି କୁକୁଡ଼ା ୬ ଦିନରେ କେତୋଟି ଅଣ୍ଡା ଦେବେ ?

ଏହିପରି ପ୍ରଶ୍ନଗୁଡ଼ିକର ମଜାଗଣିତ ବହୁତଗୁଡ଼ାଏ କହିଲେ । ପହଳି ସହିତ ଗପଗୁଡ଼ିକୁ ନେଇ ମଜାଗଣିତ କିପରି ଶିକ୍ଷା ଦିଆଯାଇପାରିବ, ସେହି ବିଷୟରେ ସୂଚନା ଦେବାକୁ ଯାଇ କହିଲେ, ଗୁରୁଭାଇମାନେ ଏହିପରି ଉପାୟରେ ଛୋଟପିଲାମାନଙ୍କୁ ଶିକ୍ଷାଦେଲେ ସେମାନେ ଆଗ୍ରହର ସହିତ ଗଣିତ ଶିଖିବାକୁ ମନ କରିବେ ।

ପୂର୍ଣ୍ଣ ଭାଇ ଆଦିବାସୀ ଅଞ୍ଚଳର ଅନଗ୍ରସରତାର କାରଣ କହିଥିଲେ । ସେ ନିମ୍ନଲିଖିତ ବିଷୟବସ୍ତୁ ଉପରେ ଗୁରୁତ୍ୱ ଦେଇଥିଲେ ।

୧.	ଶିକ୍ଷାର ମୂଲ୍ୟ ବୁଝିନାହାନ୍ତି ।

୨.	ସୂଚନାର ଅଭାବ ।

୩.	ସରକାର ନୀତିନିୟମ ଜାଣିପାରୁ ନାହାନ୍ତି ଏବଂ ସରକାରୀ ଲୋକ ଲୋକଙ୍କୁ ଠକୁଛନ୍ତି ।

୪.	ଶିକ୍ଷାକ୍ଷେତ୍ରରେ ଭୟ ରହିଛି । ଆନନ୍ଦଦାୟକ ଶିକ୍ଷା ମିଳୁନାହିଁ ।

୫.	ଜାତିପ୍ରଥା

୬.	ଶିକ୍ଷାକମିଟି ଠିକ୍ ସମୟରେ ସ୍କୁଲକୁ ତଦାରଖ କରୁନାହାନ୍ତି । ଅଣ-ଆନୁଷ୍ଠାନିକ ଶିକ୍ଷାକେନ୍ଦ୍ରରେ ନିର୍ଦ୍ଦିଷ୍ଟ ବୟସସୀମା ନଥିବାରୁ ଏହା ସମସ୍ତଙ୍କ ପାଇଁ ଉପଯୋଗୀ ।

ତା'ପରେ ପୂର୍ଣ୍ଣ ଭାଇ ଭାଷା ଓ ଅକ୍ଷର ସମ୍ପର୍କରେ ସୂଚନା ଦେବାକୁ ଯାଇ କହିଲେ, ବିଭିନ୍ନ ଅର୍ଥବନ୍ଧିତ ଧ୍ୱନିର ସୁକ୍ରମିକ ବ୍ୟବହାର କରି ଭାବର ଆଦାନପ୍ରଦାନ କରିବାକୁ ଭାଷା କହନ୍ତି । ଆମେ ଗୁରୁଭାଇ ଓ ଭଉଣୀମାନେ ଯଦି ସ୍ପଷ୍ଟ ଓ ଶୁଦ୍ଧ ଭାବେ ଶବ୍ଦ ସବୁକୁ ଉଚ୍ଚାରଣ ନକରିବା ଓ ଲେଖିବା ତେବେ ପିଲାମାନେ ମଧ୍ୟ ଭୁଲ୍ କରିବେ । ତେଣୁ ଆମେ ସବୁବେଳେ ଏଥିପ୍ରତି ସତର୍କ ରହିବା ଆବଶ୍ୟକ । ଆଦିବାସୀ ପିଲାମାନେ ସେମାନଙ୍କ ଆଞ୍ଚଳିକ ଭାଷାର ପ୍ରଭାବ ଯୋଗୁଁ ଓଡ଼ିଆ ଅକ୍ଷର ଯଥା, ଢ, ଠ, ଘ, ଖ, କ, ଧ, ଛ, ଳ, ଫ, ଡ଼. ଆଦିକୁ ଠିକ୍ ଭାବରେ ଉଚ୍ଚାରଣ କରିପାରି ନଥାନ୍ତି । କିନ୍ତୁ ଗୁରୁ ଭାଇ ଓ ଭଉଣୀମାନେ ଯଦି ଏଥିପ୍ରତି ଯତ୍ନ କରିବେ, ତେବେ ସେମାନେ ନିଶ୍ଚୟ ଶିଖିପାରିବେ ।

ଏହିପରି ତାଲିମ୍ ଯଦି ଆମକୁ ଦିଆଯାଏ, ତେବେ ମୁଁ ଆଶା କରୁଛି ଆମ ସହିତ ପିଲାମାନଙ୍କର ମଧ୍ୟ ବହୁତ ଉନ୍ନତି ହେବ । ମୁଁ ଯେମିତି ଶିଖି ମୋ ଶିକ୍ଷାକେନ୍ଦ୍ରରେ ପ୍ରୟୋଗ କରୁଛି, ସବୁ ଗୁରୁଭାଇ ଓ ଭଉଣୀ ମଧ୍ୟ କରୁଥିବେ ବୋଲି ମୋର ବିଶ୍ୱାସ ।

ଅର୍ଜୁନ କହଁର<br>ନବସୃଜନ ଶିକ୍ଷାକେନ୍ଦ୍ର, ବାରାହାଲା

□□□

# ମୁଁ ପାଠ ପଢ଼ିଲି କେମିତି

ଆମ ଗାଁରେ ଆଗରୁ ସରକାରୀ ସ୍କୁଲଟିଏ ଅଛି । ସେଠାକୁ ସବୁ ପିଲା ପାଠ ପଢ଼ିବାକୁ ଯାଉଥିଲେ । ମୁଁ କିନ୍ତୁ ସ୍କୁଲ୍ ଶିକ୍ଷକଙ୍କୁ ବହୁତ ଭୟ କରୁଥିଲି । ତେଣୁ ସ୍କୁଲ୍ ନିୟମିତ ଭାବରେ ଯାଉ ନଥିଲି । ଗାଁରେ ଏମିତି ଭାବରେ ପଞ୍ଚମ ଶ୍ରେଣୀ ଯାଏଁ ପାଠ ପଢ଼ିଲି । ମୁଁ ଯଦିଓ ଏତେ ଭଲ ପାଠ ପଢୁ ନଥାଏଁ, ଅନ୍ୟାନ୍ୟ କାମରେ ଟିକିଏ ଆଗୁଆ ଥାଏଁ । ତେଣୁ ମୁଁ ପ୍ରଧାନମନ୍ତ୍ରୀ ଥାଏଁ ଆମ ସ୍କୁଲ୍‌ରେ । ଅତଏବ ମୋ ହାତରେ ସ୍କୁଲ୍‌ର ଚାବିକାଠି, ଘଣ୍ଟି ଇତ୍ୟାଦି ଥାଏ । ପ୍ରତିଦିନ ସକାଳ ୮ଘଣ୍ଟା ପର୍ଯ୍ୟନ୍ତ ପାଠ ପଢ଼େ । ୮.୩୦ରେ ଯାହିତାହି କରି ଜଳଖିଆ ଖାଏ । ୯ଟାରେ ଗାଧୋଇ ସାରି ୯.୩୦ ମି.ରେ ଖାଇଦିଏ । ଠିକ୍ ୧୦ଟା ହେଲେ ସ୍କୁଲକୁ ଯାଏ ଆଉ ଘଣ୍ଟି ବଜାଏ । ଗୋଟିଏ ଦିନ ମଧ୍ୟ ସ୍କୁଲକୁ ନଗଲେ ମୋ ବାପା ମା' ଗାଳି ଦିଅନ୍ତି ଓ ଦିନେ ଦି'ଦିନ ଏଥିପାଇଁ ମୁଁ ମାଡ଼ ବି ଖାଇଛି । ଅତଏବ ଯେମିତି ହେଉ ମୋତେ ସ୍କୁଲ୍‌କୁ ଯିବାକୁ ପଡୁଥିଲା ଓ ମା'ବାପାଙ୍କ କଥା ମାନି ଚଳୁଥିଲି ।

ତା'ପରେ ଦିଗିସଲ୍‌ପା ଏମ୍.ଇ. ସ୍କୁଲରେ ଷଷ୍ଠ ଶ୍ରେଣୀରେ ନାମ ଲେଖାଇଲି । ସେଠାରେ ଷଷ୍ଠ ସପ୍ତମ ଦୁଇବର୍ଷ ପାଠ ପଢ଼ିଲି । ସେତେବେଳେ ମୋର ମା' ମୋ ପାଇଁ ଦୁଇଟି ମାଈ କୁକୁଡା କିଣିଦେଇଥିଲେ । ଏହି କୁକୁଡାକୁ ମୁଁ ବହୁତ ଯତ୍ନରେ ପୋଷିଥିଲି । କୁକୁଡା ଦୁଇଟି ବଡ ହୋଇ ଅଣ୍ଡା ଦେଇ ଛୁଆ ହେଲା ଓ ସେହି ଛୁଆମାନେ ବଡ ହେବା ପରେ ମୁଁ ସେଗୁଡିକୁ ବିକ୍ରି କରି ବହୁତ ପଇସା ପାଇଥିଲି ଏବଂ ଏହି ଟଙ୍କାରେ ମୁଁ ପେଣ୍ଟ୍, ସାର୍ଟ ଓ କଲମ, ଖାତା, ବହି ଇତ୍ୟାଦି କିଣି ପାରିଲି । ଏଥିରେ ମୁଁ ଖୁସୀ ହେବା ସଂଗେ ସଂଗେ ମୋ ବାପା ମା' ମଧ୍ୟ ଖୁସୀ ହେଲେ । କିନ୍ତୁ ଏ ଖୁସୀ ବେଶୀ ଦିନ ରହିଲା ନାହିଁ । ସପ୍ତମ ଶ୍ରେଣୀ ପଢ଼ି ସାରିବା ପରେ ମୁଁ ଆଗକୁ ଆଉ ପଢ଼ିବା ପାଇଁ ବାପା ମନା କରିଦେଲେ । ଏହାର ଦୁଇଟି କାରଣ ଥିଲା । ପ୍ରଥମଟି

ହେଉଛି, ଆମ ଘରର ଆର୍ଥିକ ପରିସ୍ଥିତି ସେତେ ଭଲ ନଥିଲା । ଦ୍ୱିତୀୟ କଥା ହେଉଛି ବାପା ଚାହୁଁଥିଲେ ଯେ ମୁଁ ଘରକାମରେ ଅର୍ଥାତ୍ ଚାଷକାମରେ ତାଙ୍କୁ କେମିତି ସାହାଯ୍ୟ କରେ । କିନ୍ତୁ ମୁଁ ଅଲଗା କଥା ଭାବୁଥିଲି । ମୁଁ ଭାବେ ମୁଁ ଯଦି ପାଠ ଦି'ଅକ୍ଷର ପଢ଼ିପାରିବି, ତେବେ ହୁଏତ ଭବିଷ୍ୟତରେ ଭଲ ମଣିଷ ହୋଇପାରିବି । ଗାଁ, ସମାଜର କଥା ଜାଣିପାରିବି । ବଡଲୋକଙ୍କ ମୁହଁରେ ଜବାବ ଦେଇ ସାହସରେ କଥା ହେବି ଓ ଠକେଇରୁ ମୁକ୍ତି ପାଇବି । ମୁଁ ଜାଣିଥିଲି ଯେ କେବଳ ଚାକିରି ପାଇଁ ପାଠ ପଢ଼ାଯାଏ ନାହିଁ; ପାଠ ପଢ଼ିଲେ ଅନେକ ସମସ୍ୟା ବିଷୟରେ ସଚେତନତା ଆସେ । ମୁଁ ଏସବୁ କଥା ମନରେ ଚିନ୍ତା କରି ଯେମିତି ହେଲେ ପାଠ ପଢ଼ିବା ପାଇଁ ସଂକଳ୍ପ କଲି । ମୁଁ ଜାଣିଥିଲି ବାପା ଦ୍ୱିତୀୟ କାରଣ ଅପେକ୍ଷା ପ୍ରଥମ କାରଣ ପାଇଁ ହିଁ ମୋତେ ପାଠ ପଢ଼ିବା ପାଇଁ ବେଶି ମନା କରୁଛନ୍ତି । ତେଣୁ ମୁଁ ଭାବିଲି, ମୁଁ ନିଜେ କିଛି ପଇସା ଯଦି ଉପାର୍ଜନ କରି ପାଠ ପଢ଼ିପାରେ, ତେବେ ବାପା ନିଶ୍ଚୟ ରାଜି ହୋଇଯିବେ ।

ମୁଁ ଆଗରୁ ଜାଣିଥିଲି, ଯଦି ମୁଁ ଆଗ ଅପେକ୍ଷା ଆହୁରି ବେଶୀ କୁକୁଡ଼ା ରଖିବି, ତେବେ ମୁଁ ଆଉ କିଛି ଅଧିକ ଟଙ୍କା ଲାଭ କରିପାରିବି ଓ ସେଥିରେ ନିଶ୍ଚୟ ମୋର ଶିକ୍ଷାସାମଗ୍ରୀ ତଥା ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ କିଣିପାରିବି । ଏକଥା ମୁଁ ବାପାଙ୍କୁ କହିଲି । ତା'ପରେ ମୁଁ ଶିବପ୍ରସାଦ ଉଚ୍ଚ ବିଦ୍ୟାଳୟ ଦିଗିସଲ୍‌ପାରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲି । ସେତେବେଳେକୁ ମୋ ପାଖରେ ବହୁତ କୁକୁଡା ହୋଇଯାଇଥିଲେ । ମୁଁ ସେମାନଙ୍କୁ ଧାନ, ମାଣ୍ଡିଆ, କୁଣ୍ଡା ଇତ୍ୟାଦି ଖାଇବାକୁ ଦିଏ ଓ ଅନେକ ସମୟରେ ମୋ ଖାଇବା ଜିନିଷରୁ ମଧ୍ୟ ସେମାନଙ୍କୁ ଦିଏ । ସେମାନଙ୍କୁ ପୋଷିବା ପାଇଁ ଅନେକ ପରିଶ୍ରମ କରୁଥିଲି ଏବଂ ସେଗୁଡିକୁ ବିକି ଯେଉଁ ପଇସା ପାଉଥିଲି, ସେହି ପଇସାରେ ମୋର ସବୁ ପ୍ରକାରର ଜିନିଷ କିଣୁଥିଲି ।

ଏହିପରି ଭାବରେ ହିଁ ମୁଁ ଅଷ୍ଟମ, ନବମ ଓ ଦଶମ ଶ୍ରେଣୀ ପଢ଼ିଲି । ସେତେବେଳେ ମୁଁ ଜଣକଠାରୁ ଶୁଣିଲି, ଅଗ୍ରଗାମୀ ସଂସ୍ଥା ଏ ଅଞ୍ଚଳରେ କାମ କରୁଛି । ମୁଁ ମଧ୍ୟ ଏହି ସଂସ୍ଥାରେ କାମ କରିବାକୁ ଇଚ୍ଛା କଲି ଓ ଦିନେ ଅଗ୍ରଗାମୀର ଅଫିସ୍ ଥିବା ପାଡେପଦର ଯାଇ ପ୍ରକଳ୍ପ ନିର୍ଦ୍ଦେଶକଙ୍କୁ ଦେଖାକରି ଦରଖାସ୍ତ ଦେଲି । କେତେ ଦିନ ଗଲା ପରେ ସେମାନେ ମୋତେ କାମ କରିବା ପାଇଁ ଡ଼ାକିଲେ । ପ୍ରଥମେ ମୁଁ କର୍ମୀଭାଇମାନଙ୍କ ଠାରୁ ବିଭିନ୍ନ ବିଷୟରେ ଜାଣିଲି ଓ ତାଲିମ୍ ନେଲି ଓ ଗାଁ ଗାଁ ବୁଲି ରାତିସ୍କୁଲସବୁକୁ ଦେଖିଲି । ଆମର ଗୁରୁ ଭାଇଭଉଣୀମାନେ ପିଲାଙ୍କୁ ଅତି ସୁନ୍ଦର

ଭାବରେ ଗୀତ, ନାଚ, ଗପ, ଖେଳ ଇତ୍ୟାଦି ସାହାଯ୍ୟରେ ଶିକ୍ଷା ଦେଉଥିବାର ଦେଖି ମୋତେ ଖୁବ୍ ଖୁସୀ ଲାଗିଲା । ତା'ପରେ ମୁଁ ଲେପେସ୍‌ପଦର ରାତି ସ୍କୁଲ୍‌ରେ ଗୁରୁ ଭାବରେ ଯୋଗ ଦେଲି । ମୋତେ ପ୍ରଥମେ ସେହି ଗାଁରେ ଅଡୁଆ ଅଡୁଆ ଲାଗୁଥିଲା; ରହିବାକୁ ମଧ୍ଯ ଇଛା ଲାଗୁ ନଥିଲା । ମୁଁ ନିଜକୁ ନିଜେ ପଚାରୁଥିଲି ଯେ ମୁଁ ଏହି ଗାଁରେ କେମିତି ରହିପାରିବି, କେମିତି ବାପାମା'ମାନଙ୍କ ସାଙ୍ଗରେ ସୁସମ୍ପର୍କ ରଖିବି, ଏହି ରାତିସ୍କୁଲ୍‌ରେ ପଢୁଥିବା ଟିକି ଟିକି ପିଲାଙ୍କୁ ଶିକ୍ଷା ଦେଇପାରିବି, ଗାଁରେ ସମସ୍ତେ କେମିତି ସାକ୍ଷର ହୋଇପାରିବେ ? ଧୀରେ ଧୀରେ ସମସ୍ତଙ୍କ ସାଙ୍ଗରେ ପରିଚୟ ହୋଇଯିବା ପରେ ସବୁକିଛି ଭଲ ଲାଗିଲା । ତା'ପରେ ମୁଁ ଏହି ଗାଁରେ ଦେଖିଲି ସରକାରୀ କାମ ଆଦୌ ହେଇନାହିଁ କହିଲେ ଚଳେ । ତେଣୁ ମୁଁ ଏ ଗାଁର ସର୍ବାଙ୍ଗୀନ ଉନ୍ନତି ପାଇଁ ଗୁରୁତ୍ୱ ଦେଉଛି । ମୁଁ ଏହି ଲେପେସ୍‌ପଦର ଗାଁରେ ଗୁରୁଭାଇ ଭାବରେ କାମ କରିବାର ୩ବର୍ଷ ଭିତରେ ଅଗ୍ରଗାମୀ ତରଫରୁ ଅନେକ କାମ ହୋଇଛି । କିନ୍ତୁ ମୁଁ ଏବେ ଭାଟିପାସ୍ ରାତିସ୍କୁଲ୍‌ରେ କାମ କରୁଛି । ସେଯାହା ବି ହେଉ ମୁଁ ଅନେକ ସମୟରେ ଭାବେ, ମୁଁ ଯଦି ପାଠ ଦି'ଅକ୍ଷର ପଢ଼ି ନଥାନ୍ତି, ତେବେ ମୁଁ ଏହି ଗାଁକୁ ନା ଆସିଥାନ୍ତି, ନା ପିଲାଙ୍କୁ ପାଠ ପଢ଼ାଇ ପାରିଥାନ୍ତି ନା ମୁଁ ମୋ ଜୀବନରେ ଏତେ ଖୁସୀ ପାଇପାରିଥାନ୍ତି ।

ମଦନ ମୁଦୁଲି<br>ନବସୃଜନ ଶିକ୍ଷାକେନ୍ଦ୍ର, ଭାଟିପାସ୍, କଳାହାଣ୍ଡି



# ମୋ ବରଷକର ଅନୁଭୂତି

ମୋ ନାମ ଘାସି ଜାନୀ, ଗ୍ରାମ: ତେନ୍ତୁଳିଖୁଣ୍ଟି, ଜିଲ୍ଲା: ନବରଙ୍ଗପୁର । ମୁଁ ଦଶମ ଶ୍ରେଣୀ ପାସ୍ କରିବା ପରେ ପାଠେ ପଢ଼ିବାକୁ ମନ ଥିଲେ ମଧ୍ୟ ଆଉ ସୁଯୋଗ ପାଇ ପାରି ନଥିଲି । କାରଣ ମୋ ବାପା ମା' ବହୁତ ଗରିବ ଥିଲେ । ସେମାନେ ମୋତେ କଲେଜ୍‌ରେ ପଢ଼ାଇବା ପାଇଁ ଏତେ ପଇସା କୁଆଡୁ ଆସିବ ବୋଲି କହିଲେ । ମୁଁ ଏଥିରେ ମନଦୁଃଖରେ ଭାଙ୍ଗି ପଡିଲି । ମୁଁ ଭାବିଲି ମୁଁ ତ ଦଶମ ଶ୍ରେଣୀ ପାସ୍ କରିଛି । ତେଣୁ ସରକାରୀ ଚାକିରିଟିଏ ଯଦି ପାଇଯାଆନ୍ତି, ହୁଏତ କିଛି ପଇସା ଉପାର୍ଜନ କରିପାରନ୍ତି । କିନ୍ତୁ ମୁଁ ଏଥିରେ ସଫଳ ହେଲି ନାହିଁ । ଏଥିପାଇଁ ଗୋଟିଏ ଜାଗାରେ ଟଙ୍କା ଦରକାର ହେଲା । ମୁଁ ଟଙ୍କା ନାହିଁ ବୋଲି ତ ଚାକିରି କରିବାକୁ ଚାହୁଁଛି । ସେହି ଚାକିରି ପାଇବା ପାଇଁ ଯଦି ଟଙ୍କା ଦରକାର ପଡ଼େ, ତେବେ ମୁଁ କେଉଁଠୁ ଆଣିବି ! ତା'ପରେ ମୁଁ ବେକାର ରହିଲେ ଭଲ ନୁହେଁ ବୋଲି ଭାବିଲି ଓ କୁଲି ମଜୁରି କରିବା ଆରମ୍ଭ କରିଦେଲି ଏବଂ ଏଥିରୁ ମୋ ପରିବାରକୁ କିଛି କିଛି ପଇସା ଦେଇପାରିଲି ।

ଏମିତି କେତେଦିନ ବିତିଗଲା । ଦିନେ ମୁଁ ଗୋଟିଏ ଗାଁକୁ କୁଲି କାମ କରିବାକୁ ଯାଇଥାଏ । ଏହି ସମୟରେ ମୁଁ ଶୁଣିବାକୁ ପାଇଲି, ଅଗ୍ରଗାମୀ ବୋଲି ଗୋଟିଏ ସଂସ୍ଥା ଏ ଅଞ୍ଚଳରେ କାମ କରୁଛି । ସେମାନେ ଦଶମ ଶ୍ରେଣୀଯାଏଁ ପାଠ ପଢ଼ିଥିବା ପିଲାଙ୍କୁ କାମ ଦେଉଛନ୍ତି । ଆହୁରି ମଧ୍ୟ ଶୁଣିଲି, ଚାରିଟି ଗୁରୁଭାଇ ପଦବୀ ଖାଲି ଅଛି । ଏଥିପାଇଁ ମୁଁ ମୋର ପ୍ରମାଣପତ୍ର ସହିତ ଏକ ଦରଖାସ୍ତ ଲେଖି ପାଢ଼େପଦରଠାରେ ଥିବା ଅଗ୍ରଗାମୀର ଅଫିସ୍‌ରେ ଦାଖଲ କଲି । କିଛି ଦିନପରେ ସେମାନେ ମୋତେ ଡକାଇଲେ ଓ ଇଣ୍ଟରଭ୍ୟୁ କଲେ । ଇଣ୍ଟରଭ୍ୟୁରେ ପାସ୍ କଲି ଓ ତିନିମାସ ପରେ ମୋତେ ବାଗ୍‌ବେଡ଼ା ଗ୍ରାମରେ ଗୁରୁଭାଇ ହିସାବରେ ନିଯୁକ୍ତି ମିଳିଲା ।

ସେମାନେ ମୋତେ ଅଗ୍ରଗାମୀର ନିୟମ ମାନି ଚଳିବାକୁ କହିଲେ ଓ ସେହିପରି ଭାବରେ ଅଗ୍ରଗାମୀର କାମ କରି ଆଜିକୁ ଏକବର୍ଷ ଛ'ମାସ ହୋଇଗଲାଣି ।

ଏହି ବାଗ୍‌ବେଡ଼ା ଗାଁଟି ନବରଙ୍ଗପୁର ଓ କଳାହାଣ୍ଡି ଜିଲ୍ଲାର ସୀମାରେ ଅବସ୍ଥିତ । ଗାଁ ଚାରିପାଖେ ବନପାହାଡ ଘେରି ରହିଛି ଓ ଗାଁ ପାଖ ଦେଇ ବହିଯାଇଛି ଇନ୍ଦ୍ରାବତୀ ନଦୀ । ଏହି ଗାଁରେ ୩୧ଟି ପରିବାର ବସବାସ କରନ୍ତି । ସେମାନଙ୍କ ମଧ୍ୟରୁ ୨୧ଟି ପରିବାର ଆଦିବାସୀ ଓ ୧୦ଟି ପରିବାର ହରିଜନ । ମୋର ରାତିସ୍କୁଲ୍‌ରେ ମୋଟ ୨୫ଜଣ ଛାତ୍ରଛାତ୍ରୀ ପାଠ ପଢ଼ନ୍ତି । ପୁଅ ୧୫ଜଣ ଓ ଝିଅ ୧୦ଜଣ । ଆମ ସ୍କୁଲ୍‌ରେ ପାଠ ପଢ଼ି ବର୍ତ୍ତମାନ ୬ଜଣ ପିଲା ସରକାରୀ ସ୍କୁଲକୁ ପଢ଼ିବାକୁ ଯାଉଛନ୍ତି । ସରକାରୀ ସ୍କୁଲକୁ ପଠାଇବା ଦ୍ୱାରା ମୋ ସ୍କୁଲ୍‌ରେ ପିଲାସଂଖ୍ୟା କମି ଯାଉଥିଲେ ମଧ୍ୟ ମୁଁ ଗାଁରେ ବୈଠକ କରି ଛୋଟ ଛୋଟ ପିଲାଙ୍କୁ ଡାକି ସ୍କୁଲ୍‌ରେ ବସାଉଛି । ପିଲାସଂଖ୍ୟା କମିବା ବିଷୟରେ ମୁଁ ମାସିକ ବୈଠକରେ କଥା ପକାଇଛି । ପିଲାମାନେ ବର୍ତ୍ତମାନ ନିୟମିତ ଭାବରେ ସ୍କୁଲ ଆସୁଛନ୍ତି । କିନ୍ତୁ ପିଲାଙ୍କ କ୍ଷେତ୍ରରେ ବେଳେବେଳେ ଗୋଟିଏ ଅସୁବିଧା ଦେଖାଦେଉଛି । ତାହା ହେଲା ପିଲାମାନେ ପାଳି କରି ଛେଳି ଚରାଇ ନେଉନାହାନ୍ତି ଓ ଯାହାର ଦୁଇଟି ବି ଛେଳି ଅଛି ସେମାନେ ସମସ୍ତେ ଛେଳି ଚରାଇବାକୁ ଯାଉଛନ୍ତି । ଏହା ମୁଁ ପ୍ରତ୍ୟେକ ମାସରେ ବୈଠକ କରି ବୁଝାଉଛି । ଏହାଦ୍ୱାରା କେତେ ପିଲା ଆଉ ଛେଳି ଚରାଇବାକୁ ନେଇନାହାନ୍ତି ଓ ପାଠ ପଢ଼ି ଆସୁଛନ୍ତି ।

ଗାଁରେ କୁଟୁମ୍ବପାଣ୍ଠି ନଷ୍ଟ ହୋଇ ଯାଇଥିଲା । ଗାଁରେ ବୈଠକ କରି ବୁଝିବା ପରେ ଲୋକମାନେ କହିଥିଲେ ଗାଁରେ ପାଣ୍ଠି ଥିଲା କିନ୍ତୁ ବର୍ତ୍ତମାନ ନଷ୍ଟ ହୋଇଯାଇଛି । ତେଣୁ ଗାଁରେ ବାରମ୍ବାର ବୈଠକ କରି ପାଣ୍ଠି ଆଦାୟ କରିବା ପାଇଁ କହିଲେ ଏବଂ ଏହି ପାଣ୍ଠି ନୂତନ ଭାବରେ ଗଢ଼ିବା ପାଇଁ ଲୋକଙ୍କୁ ସଚେତନ କରାଇଲି । ଏହି ନୂଆ ପାଣ୍ଠିରେ ହରିଜନ ସାହିର ଲୋକମାନେ ମିଶି ନାହାନ୍ତି । କାରଣ କେତେକେ ଲୋକ ପାଣ୍ଠି ନେଇ ଆଉ ଫେରସ୍ତ କରି ନାହାନ୍ତି । ପାଣ୍ଠିରେ ୪ ପୁଟି ୯ ମାଣ ଧାନ ଥିଲା । ତାହା ଗାଁଲୋକଙ୍କୁ ଋଣ ଦିଆ ହୋଇଥିଲା । ବର୍ତ୍ତମାନ ସେହି ପାଣ୍ଠି ଆଦାୟ ହୋଇଛି ।

ମୁଁ ଏଥର ସଞ୍ଚୟ ପାଣ୍ଠି ବିଷୟରେ କିଛି ଲେଖୁଛି । ଅଗ୍ରଗାମୀ ତରଫରୁ ଏହି ଗାଁକୁ ୫୦୦୦ଟଙ୍କା ଦିଆ ହୋଇଥିଲା । ଏହି ଟଙ୍କାକୁ ନେଇ ମହିଳାମଣ୍ଡଳର ମା'ମାନେ ବେପାର କରି ମୋ ପାଖରେ ହିସାବପତ୍ର ରଖୁଛନ୍ତି । ଏହି ପାଣ୍ଠିକୁ ଠିକ୍ ଭାବରେ ବଢ଼ାଇପାରିଲେ ବହୁତ କାମରେ ଲାଗିବ ବୋଲି ଆମେ ଆଶା କରୁଛୁ । ମୁଁ ମଧ୍ୟ

ଏଥିପାଇଁ ଗ୍ରାମ୍ୟ କମିଟି ସ୍କୁଲ କମିଟି ଇତ୍ୟାଦି ଲୋକସଂଗଠନ କେମିତି ମଜବୁତ୍ ହେବ ସେ ବିଷୟରେ ଲୋକଙ୍କୁ ବୁଝାଉଛି । ଗାଁଲୋକଙ୍କୁ ଏକାଠି କରି ଗ୍ରାମ ସଭା, ପଲ୍ଲୀ ସଭା ଇତ୍ୟାଦିରେ ଯୋଗ ଦେବା ପାଇଁ କହୁଛି ଓ 'ପଞ୍ଚାୟତିରାଜ' ବିଷୟରେ ବୁଝାଉଛି । ମୋ ଜୀବନରେ ଦୁଃଖ ଥିଲେ ମଧ୍ୟ ଅଗ୍ରଗାମୀରେ ଯୋଗଦେବା ପରେ ଏହି ସ୍କୁଲ୍ ଓ ଗାଁକୁ ଆସି ମୁଁ ମୋ ଦୁଃଖକୁ ଭୁଲିଯିବା ପାଇଁ ସାହସ ପାଇଛି । ଏମିତି ଦୁଃଖସୁଖରେ ଗାଁଲୋକଙ୍କ ସହିତ ମିଶି ମୋ ସମୟ କଟିଯାଉ, ଏହା ହିଁ ଭଗବାନଙ୍କ ପାଖରେ ମୋର ପ୍ରାର୍ଥନା ।

ଘାସି ଜାନୀ

ନବସୃଜନ ଶିକ୍ଷାକେନ୍ଦ୍ର, ବାଗ୍‌ବେଡ଼ା



# ମୋ ବର୍ଷକର ଅନୁଭୂତି

ନାମ: ପରମେଶ୍ୱର ନାଏକ, ଗ୍ରା: ମାଝୀଗାଁ, ଗ୍ରା.ପ.: କେର୍‌ପାଇ, ବ୍ଲକ୍: ଥୁଆମୁଳ ରାମପୁର, ଭା: ଭବାନୀପାଟଣା, ଜି: କଳାହାଣ୍ଡି

**ମୁଁ କେମିତି ପାଠ ପଢ଼ିଲି ?**

ମୁଁ କାଠଖୁରା ପ୍ରାଥମିକ ବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ନାମ ଲେଖାଇଲି । ସ୍କୁଲ୍‌ର ଦୂରତା ଆମ ଘରଠାରୁ ପ୍ରାୟ ୩୫ କିଲୋମିଟର । ସେଠିକୁ ଚାଲିଯିବା ପାଇଁ ବହୁତ କଷ୍ଟ ହେଉଥିଲା । ସ୍କୁଲ୍ ଯିବା ପାଇଁ କୌଣସି ଗାଡି ଘୋଡାର ସବୁଧା ନଥିଲା । ଯିବା ବାଟରେ ଇନ୍ଦ୍ରାବତୀ ନଦୀ ପଡୁଥିଲା । ବର୍ଷା ସମୟରେ ଡଙ୍ଗାରେ ଚଢି ନଦୀ ପାର ହୋଇ ଯାଉଥିଲି । କାଠଖୁରୀ ପ୍ରାଥମିକ ବିଦ୍ୟାଳୟରେ ତୃତୀୟ ଶ୍ରେଣୀ ପାସ । ଉଚ୍ଚ ସରକାରୀ ବିଦ୍ୟାଳୟରେ ନାମ ଲେଖାଇଲି । ସେଠାରେ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଲି । ସ୍କୁଲ୍ ଯିବା ବାଟରେ ନାଗାବଳୀ ନଦୀ ପଡୁଥିଲା । ସ୍କୁଲ୍‌ର ଦୂରତା ଆମ ଘରଠାରୁ ପ୍ରାୟ ୩୨ କି.ମି. । ବର୍ଷାଋତୁରେ ଯିବା ପାଇଁ ବହୁତ କଷ୍ଟ ସହିବାକୁ ପଡୁଥିଲା । ସ୍କୁଲ୍‌ଠାରୁ ଆସିବା ସମୟରେ ମୁଁ ଅଗ୍ରଗାମୀର କେର୍‌ପାଇ ଅଫିସ୍‌କୁ ଯାଇ ଘରକୁ ଆସୁଥିଲି । ସେ ସମୟରେ ଲାଲ୍‌ଧର ଆଜ୍ଞା ଅଫିସ୍‌ରେ ରହୁଥିଲେ । ତାଙ୍କ ସାଙ୍ଗରେ ଅନେକ ସମୟରେ ମୋର କଥାବାର୍ତ୍ତା ହେଉଥିଲା ।

**ମୋ ଶିକ୍ଷାକେନ୍ଦ୍ରର ସ୍ଥିତି:**

ମୁଁ ଦିନେ ଶୁଣିବାକୁ ପାଇଲି, ଲେକାପାଇ ଗ୍ରାମରେ ଅଗ୍ରଗାମୀ ତରଫରୁ ଗୋଟିଏ ସ୍କୁଲ୍ ଖୋଲାହେବ । ଲେଖାପାଇ ଗାଁର ଦୁଇ ଜଣ ଲୋକ ମୋତେ ଡାକିବାକୁ ଆସିଲେ । ମୁଁ ତା'ପରେ ଦୁଇଜଣ ଲୋକଙ୍କ ସହ ମିଶି ମାଣ୍ଡିବିଶି ଅଫିସ୍‌କୁ ଯାଇ ସେଠାରେ ଦରଖାସ୍ତ ଦାଖଲ କଲି । ସେମାନେ ମୋତେ ଅଗ୍ରଗାମୀ, କାଶୀପୁରରେ ଦରଖାସ୍ତ ଦେବାକୁ କହିଲେ । କାଶୀପୁରରେ ଦରଖାସ୍ତ ଦେବା ପରେ ସେମାନେ

ମୋତେ ଇଣ୍ଟରଭ୍ୟୁ ପାଇଁ ଡାକିଲେ । ମୁଁ ଇଣ୍ଟରଭ୍ୟୁ ଦେବା ପାଇଁ ପ୍ରମାଣପତ୍ର ଧରି କାଶୀପୁରରେ ପହଞ୍ଚିଲି । ମୁଁ ଇଣ୍ଟରଭ୍ୟୁରେ ପାସ୍ କରିବା ପରେ ମୋତେ କେଉଁ ଗାଁରେ ଗୁରୁଭାଇ ହେବ ବୋଲି ପଚାରିବାରୁ ମୁଁ କହିଲି, 'ସେର୍କାପାଇ ଗ୍ରାମର ସ୍କୁଲ୍ କରିବି ।' ତା'ପରେ ମୋତେ ସେର୍କାପାଇ ଗାଁରେ ଗୁରୁଭାଇ ହିସାବରେ ନିଯୁକ୍ତି ଦିଆଗଲା ।

ଏହି ସେର୍କାପାଇ ଗାଁଟି ମୋ ନିଜ ଗାଁଠାରୁ ୨ କି.ମି. ଦୂର । ତେଣୁ ଆଗରୁ ସେହି ଗାଁର ସବୁଲୋକଙ୍କ ସାଙ୍ଗରେ ମୋର ପରିଚୟ ରହିଥାଏ । ତେଣୁ ମୋତେ ସ୍କୁଲ ଆରମ୍ଭ କରିବା ପାଇଁ କଷ୍ଟ ଲାଗିଲା ନାହିଁ । ମୁଁ ପ୍ରଥମେ ଅଫିସ୍‌ରୁ ସ୍ଲେଟ୍, ଖଡି, ଖାତା ନେଇ ସେର୍କାପାଇରେ ଥିବା 'ଗୁଡିଘର'ଠାରେ ପାଠ ପଢ଼େଇବା ଆରମ୍ଭ କଲି । ଦୁଇମାସ ଏପରି ପଢ଼ାଇବା ପରେ ଗାଁ ଲୋକ, ମୁଁ ଓ ପିଲାମାନେ ମିଶି ସ୍କୁଲ୍ ଘର ତିଆରି କଲୁ । ସେଠାରେ ବର୍ତ୍ତମାନ ପର୍ଯ୍ୟନ୍ତ ପାଠ ପଢ଼ା ଚାଲିଛି । ଏହି ସ୍କୁଲ୍‌ରେ କେବଳ ପାଠ ପଢ଼ାଯାଉନାହିଁ, ପିଲା ଓ ଗାଁଲୋକଙ୍କ ସାଙ୍ଗରେ ଦୁଃଖସୁଖ ସବୁଥିରେ ଭାଗ ନେବାକୁ ପଡୁଛି । ଏହି ସ୍କୁଲ୍‌ରେ ୧ ବର୍ଷ ଭିତରେ ମୁଁ ୮ ଜଣ ପିଲାଙ୍କୁ ସରକାରୀ ସ୍କୁଲକୁ ପଠାଇପାରିଛି । ଏହି ଗାଁରେ ଏ ସ୍କୁଲ୍ ଖୋଲିବା ପୂର୍ବରୁ ଶିକ୍ଷା କ'ଣ ବୋଲି ଲୋକେ ଜାଣିନଥିଲେ । ଗାଁର ଜଣେ ଦୁଇଜଣଙ୍କୁ ଛାଡିଦେଲେ କେହି ପାଠ ପଢ଼ି ନଥିଲେ । ବର୍ତ୍ତମାନ ସ୍କୁଲ୍ ଖୋଲିବା ପରେ ଲୋକେ ଶିକ୍ଷାର ମହତ୍ତ୍ୱ କିଛି କିଛି ବୁଝିଲେଣି । ଏବେ ମୋ ସ୍କୁଲରେ ଛାତ୍ରଛାତ୍ରୀ ସଂଖ୍ୟା ୩୦ରେ ଆସି ପହଞ୍ଚିଛି । ପୁଅ ୨୦ଜଣ ଓ ଝିଅ ୧୦ଜଣ ପଢୁଛନ୍ତି ।

**କୁଟୁମ୍ବପାଣ୍ଠି:**

ସେର୍କାପାଇ ଗ୍ରାମରେ ଆମ ସ୍କୁଲ ଖୋଲିବା ଆଗରୁ କୁଟୁମ୍ବପାଣ୍ଠି ଥିଲା । ମାତ୍ର ଗାଁ ଲୋକ ପାଣ୍ଠି ଠିକ୍ ଭାବରେ ଉଠାଉ ନଥିଲେ । କେବଳ ମାଣ୍ଡିଆ ୨୫ମାଣ ଓ ଧାନ ୨୦ମାଣ ଥିଲା । ସେଠାରେ ମୁଁ ଗୁରୁଭାଇ ରୂପେ ଯୋଗ ଦେବା ପରେ ପାଣ୍ଠି ଠିକ୍ ଭାବରେ ଉଠୁଛି । ବର୍ତ୍ତମାନ ୨୨୦ମାଣ ଧାନ ଗାଁ ଲୋକ ବାଣ୍ଟି ଖାଇଛନ୍ତି ।

**ସ୍ୱାସ୍ଥ୍ୟ:**

ଏବର୍ଷ ବର୍ଷାଋତୁରେ ଏ ଅଞ୍ଚଳର ଅନେକ ଗାଁରେ ଲୋକେ ଝାଡ଼ାବାନ୍ତି ରୋଗରେ ଆକ୍ରାନ୍ତ ହୋଇଥିଲେ । ତେଣୁ ମୁଁ ଥୁଆମୁଳ ରାମପୁରର ସରପଞ୍ଚ ଓ ବ୍ଲକ୍‌ର ଆଜ୍ଞାମାନଙ୍କୁ କେର୍‌ପାଇ ଆସିଥିବା ବେଳେ ଏ ବିଷୟରେ କହିଲି । ସେମାନଙ୍କୁ

ଯଥାଶୀଘ୍ର ପଦକ୍ଷେପ ନେବାକୁ ଅନୁରୋଧ କରିଥିଲି । ସେମାନେ କହିଲେ, 'ଆମେ ଯାଇ ଚିକିତ୍ସାଳୟରେ ଏକଥା ଜଣାଇଦେବୁ । ଶନିବାର ବା ରବିବାର ଦିନ ଡାକ୍ତର ଆସି ପହଞ୍ଚିବେ ।' ଯା'ହେଉ, ସେମାନେ ଗଲାପରେ ୨୮ ତାରିଖ ଶନିବାର ଦିନ ଭବାନୀପାଟଣା ମୁଖ୍ୟ ଡାକ୍ତରଖାନାରୁ ଡାକ୍ତର ଆସିଲେ । ସେ ଆସି ଲୋକମାନଙ୍କୁ ଚିକିତ୍ସା କରି ଔଷଧପତ୍ର ଦେଲେ । ମୋତେ ମଧ୍ୟ କିଛି ଔଷଧ ଦେଇ କହିଲେ ଯେ ପ୍ରାଥମିକ ଚିକିତ୍ସା ଦରକାର ପଡିଲେ ଏ ଔଷଧ ସବୁ ତୁମ କାମରେ ଲାଗିବ । ମୁଁ ସେହି ଔଷଧ ରଖି ଲୋକଙ୍କର ଅସୁବିଧା ବେଳେ ଦେଉଛି ।

ପରମେଶ୍ୱର ନାଏକ<br>ସେର୍କାପାଇ, ନବସୃଜନ ଶିକ୍ଷାକେନ୍ଦ୍ର



# ତିନିବର୍ଷ ପାଞ୍ଚ ମାସ ଭିତରେ
# ପୁଷ୍ପଘାଟି ଶିକ୍ଷାକେନ୍ଦ୍ର

**ନାମ: ଖଟ ନାଏକ, ନିଜ ଗାଁ: ତେଲିଙ୍ଗିରୀ, ବ୍ଲକ୍: କାଶୀପୁର, ଜିଲ୍ଲା: ରାୟଗଡ଼ା, ଶିକ୍ଷାକେନ୍ଦ୍ର: ନବସୃଜନ ଶିକ୍ଷାକେନ୍ଦ୍ର, ପୁଷ୍ପଘାଟି**

ମୁଁ ଆଜିକୁ ପ୍ରାୟ ୩ବର୍ଷ ୭ମାସ ହେବ, ପୁଷ୍ପଘାଟି ଶିକ୍ଷାକେନ୍ଦ୍ରରେ ଗୁରୁଭାଇ ହିସାବରେ ରହି ଅଗ୍ରଗାମୀର ଶିକ୍ଷା କାର୍ଯ୍ୟକ୍ରମରେ ସାମିଲ୍ ହୋଇଛି । ବର୍ତ୍ତମାନ ମୁଁ ପୁଷ୍ପଘାଟି ଶିକ୍ଷାକେନ୍ଦ୍ରରୁ ବଦଳି ହୋଇ ପୂର୍ବ ଶିକ୍ଷାକେନ୍ଦ୍ରଠାରୁ ୧୮କି.ମି. ହେବ, ଅଗ୍ରଗାମୀ କାଶୀପୁର ପ୍ରକଳ୍ପର ଶିରିପାଇ ଉପକେନ୍ଦ୍ରର-କେଶ୍‌କେରୀ ନବସୃଜନ ଶିକ୍ଷାକେନ୍ଦ୍ରର ଗୁରୁଭାଇ ହିସାବରେ ୧ମାସ ହେବ କାମ କରୁଅଛି । କିନ୍ତୁ ମୁଁ ମୋର ପୂର୍ବ ଶିକ୍ଷାକେନ୍ଦ୍ର-ପୁଷ୍ପଘାଟିରେ ଗତ ୩ବର୍ଷ ୬ମାସର ଅନୁଭୂତି ବିଷୟରେ ଲେଖି ଜଣାଉଛି ।

ମୁଁ ପୁଷ୍ପଘାଟି ନବସୃଜନ ଶିକ୍ଷାକେନ୍ଦ୍ରରେ ଯୋଗ ଦେବା ପାଇଁ ପ୍ରଥମେ ଇଣ୍ଟରଭ୍ୟୁ ଦେଲି । ଇଣ୍ଟରଭ୍ୟୁ ପାସ୍ କରିବା ପରେ ଅଗ୍ରଗାମୀ, କାଶୀପୁରରେ ୫ ଦିନିଆ ଶିକ୍ଷକ ତାଲିମ୍‌ରେ ଯୋଗଦେଲି । ତା'ପରେ ଧୋବାସିଲ୍ ଉପକେନ୍ଦ୍ରର ଭାଇମାନେ ମୋତେ ପୁଷ୍ପଘାଟିରେ ଆଣି ଛାଡିଲେ । ଏହାପରେ ଆରମ୍ଭ ହୋଇଥିଲା ମୋର ପ୍ରକୃତ ଶିକ୍ଷକ ଜୀବନ ।

ମୁଁ ଗାଁ ଲୋକମାନଙ୍କ ସହିତ ଗାଁଭାଇ ଭଳି ମିଶିବାରେ ଲାଗିଲି । ତଥାପି ମୋତେ ନୂଆ ନୂଆ ଖୁବ୍ ଅଡୁଆ ଲାଗୁଥାଏ । ପରେ ଅବଶ୍ୟ ସହଜ ହୋଇଯାଇଥିଲା । ଗାଁର ଘରସଂଖ୍ୟା, ଲୋକସଂଖ୍ୟା ଓ ୬-୧୪ବର୍ଷର ପିଲାସଂଖ୍ୟା ଇତ୍ୟାଦି ବିଷୟରେ ସର୍ଭେ କଲି । ୧୯୯୮ ମସହି ମାର୍ଚ୍ଚ ୨୫ତାରିଖଠାରୁ ମୁଁ ବିଧିବଦ୍ଧ ଭାବରେ ମୋ ଶିକ୍ଷାକେନ୍ଦ୍ର ଆରମ୍ଭ କଲି । କେନ୍ଦ୍ରରେ ପ୍ରଥମେ ପିଲାମାନଙ୍କୁ ଡାକି ଗାଁ ବାରଣ୍ଡାରେ ସ୍କୁଲ୍ ଆରମ୍ଭ କଲି । ତା'ପରେ ଗାଁଲୋକଙ୍କୁ ଡାକି ସ୍କୁଲ୍ ଘର କରିବା ପାଇଁ ଏକ ବୈଠକ

କଲି । ଠିକ୍ ତା'ର ଆଠ ଦଶଦିନ ଭିତରେ ଆମେ ସମସ୍ତେ ମିଶି ସ୍କୁଲ୍ ଘରଟିଏ ତିଆରି କଲୁ । ପିଲାମାନେ ଠିକ୍ ଭାବରେ ସ୍କୁଲ୍‌କୁ ଆସିଲେ, ଗାଁଲୋକ ମଧ୍ୟ ଠିକ୍ ଭାବରେ ସହଯୋଗ କଲେ; ସ୍କୁଲଟି ଠିକ୍ ଭାବରେ ଚାଲିଲା ।

ମୋତେ ଲୋକଙ୍କ ସାଙ୍ଗରେ ମିଶିବା ପାଇଁ ପ୍ରଥମେ କଷ୍ଟ ହୋଇଥିଲା । ଆମ ଅଞ୍ଚଳ ସମାନ ହୋଇଥିଲେ ମଧ୍ୟ ମୁଁ ଲୋକଙ୍କ କଥା ପୂରାପୂରି ବୁଝି ପାରୁନଥିଲି । ଗାଁ ଲୋକଙ୍କ ଭାଷା ବୁଝି ନପାରୁଥିଲେ ମଧ୍ୟ ଗାଁଲୋକ ସହ ବସାଉଠା କଲି, ସେମାନଙ୍କ ଘରକୁ ଗଲି, ସେମାନଙ୍କର ଜୀବନଧାରଣର ପ୍ରଣାଳୀକୁ ବୁଝିଲି । ଦଶପନ୍ଦର ଦିନ ମଧ୍ୟରେ ସମସ୍ତଙ୍କ ସାଙ୍ଗରେ ମିଶିଗଲି । ଏହି ଗାଁରେ ପିଲାମାନଙ୍କ ଛଡ଼ା ପାଖ ଗାଁ ଗାଡାରମୁଇଁର ପିଲାମାନେ ମଧ୍ୟ ମୋ ସ୍କୁଲ୍‌କୁ ପଢ଼ିବାକୁ ଆସୁଥିଲେ । ମୋଟ ୩୫ଜଣ ପିଲା ନାମ ଲେଖାଇଲେ ମଧ୍ୟ ପ୍ରତିଦିନ ୨୭/୨୮ ପିଲା ହିଁ ଆସୁଥିଲେ । ପିଲାମାନେ ପରେ ପରେ ନିଜେ ନିଜେ ହିଁ ସ୍କୁଲ୍ ଆସିଲେ, ମୋତେ ଆଉ ଡାକିବାକୁ ପଡିଲାନି । ସେଇଟା ମୋ ପାଇଁ ଖୁସିର କଥା ଥିଲା ।

ମୁଁ ଏହି ଗାଁରେ ରହିବା ପୂର୍ବରୁ ବାପାମାନେ ବହୁତ ମଦ ପିଉଥିଲେ । ମୁଁ ଯିବା ଦିନଠାରୁ ଧୀରେ ଧୀରେ ସେମାନେ କିପରି ମଦପିଇବା ବନ୍ଦ କରିବେ, ମୁଁ ସେ ଚେଷ୍ଟାରେ ଲାଗିପଡିଲି । ଖୁସିର କଥା ଯେ ଗାଁର ଜଣେ ଦି'ଜଣ ବୁଢ଼ାଲୋକଙ୍କୁ ଛାଡିଦେଲେ ଆଉ କେହି ବର୍ତ୍ତମାନ ମଦ ପିଉନାହାନ୍ତି । ଗାଁର କାଳି ମାଝୀ ବେଶୀ ମଦ ପିଇ ଅନେକ ଲୋକଙ୍କ ସାଙ୍ଗରେ ଗଣ୍ଡଗୋଳ କରୁଥିଲା । ବର୍ତ୍ତମାନ ସେ ମଦ ଛାଡି କାମ ଦାମ କରି ଖୁସିରେ ତା'ପରିବାର ସହିତ ଅଛି । ଗାଁରେ ପୂର୍ବ ଅପେକ୍ଷା ଜାତିଆଣ ମନୋଭାବ କମିଛି । ଗାଁରେ ପ୍ରତିମାସରେ ବୈଠକ କରି ପଲ୍ଲୀସଭା ଓ ଗ୍ରାମସଭା ବିଷୟରେ ମୁଁ ଲୋକଙ୍କୁ ବୁଝାଉଛି । ମୁଁ ନିଜେ ଗାଁଲୋକଙ୍କ ସହିତ ପଲ୍ଲୀସଭା ଓ ଗ୍ରାମସଭାକୁ ଯାଇ ଗାଁରେ ବିଭିନ୍ନ ଉନ୍ନୟନମୂଳକ କାମ ହୋଇ ଗରିବ ଲୋକେ କିପରି ଉପକୃତ ହୋଇପାରିବେ, ସେଥିପାଇଁ ସେମାନଙ୍କୁ ବୁଝାଉଛି । ଗାଁ ଲୋକ ଆଗେ ବାହାରର କେଉଁ ଲୋକଙ୍କ ସାଙ୍ଗରେ କଥାବାର୍ତ୍ତା କରିବାକୁ ଭୟ କରୁଥିଲେ । କିନ୍ତୁ ଏବେ ସେମାନେ ନଡରି ଧୈର୍ଯ୍ୟର ସହିତ ବଡ଼ ବଡ଼ ସରକାରୀ କର୍ମଚାରୀଙ୍କ ସହିତ ମଧ୍ୟ କଥାବାର୍ତ୍ତା କରିପାରୁଛନ୍ତି । ଗାଁର ଏକଥା ବଢ଼ିଛି । ଗାଁରେ କୁଟୁମ୍ବପାଣ୍ଠି ମଧ୍ୟ ଅଛି । ସେମାନେ ବର୍ତ୍ତମାନ ସାହୁକାରଙ୍କ ଉପରେ ନିର୍ଭର କରୁନାହାନ୍ତି । ମୁଁ ଯିବାପରେ ଗାଁରେ ସଞ୍ଚୟ ଦଳଟିଏ ମଧ୍ୟ ଗଠିତ ହୋଇଛି । ସଞ୍ଚୟ ଦଳରେ ୨୦୦ଟଙ୍କା ଅଛି ।

ଠିକ୍ ଭାବରେ ଲୋକେ ଜମା କରୁଛନ୍ତି ।

ଏହି ଗାଁପାଖରେ ଥିବା କୁଟିଙ୍ଗା ପ୍ରାଥମିକ ବିଦ୍ୟାଳୟ ମଧ୍ୟ ଠିକ୍ ଭାବରେ ଚାଲୁ ନଥିଲା । ଶିକ୍ଷକମାନେ ନିୟମିତ ଭାବେ ଆସୁନଥିଲେ । କୁଟିଗାଁର ଆଦିବାସୀ ଭାଇ ଓ ମାଆମାନଙ୍କୁ ସବୁବେଳେ ବାଟଘାଟରେ ଘଡିଏ ଅଧେ କେହି ବୁଝାଇଲି । ଗାଁର ଲୋକ ସଚେତନ ହୋଇ ଶିକ୍ଷକମାନଙ୍କୁ ଏକଥା କହିଲେ । ବର୍ତ୍ତମାନ ସ୍କୁଲକୁ ଶିକ୍ଷକମାନେ ନିୟମିତ ଭାବେ ଆସୁଛନ୍ତି । ଗାଁଲୋକ ଶିକ୍ଷା ବିଷୟରେ ସଚେତନ ହେବା ସହିତ ସ୍ୱାସ୍ଥ୍ୟ ବିଷୟରେ ମଧ୍ୟ ବୁଝିଲେଣି । ସେମାନେ ପୂର୍ବଭଳି ବେଜୁଣୀ ଗୁରୁମାଈ ଉପରେ ସମ୍ପୂର୍ଣ୍ଣ ଭାବେ ଆସ୍ଥା ନରଖି ଡାକ୍ତର ଓ ଔଷଧପତ୍ର ଉପରେ ଭରସା କଲେଣି । ପରିଷ୍କାର ପରିଚ୍ଛନ୍ନତା ଦିଗରୁ ମଧ୍ୟ ଆଖିଦୃଶିଆ ଭାବରେ ବଦଳିଛି । ଏବେ ଗାଁରେ ସାକ୍ଷରତା ମଧ୍ୟ ବଢ଼ିଛି । ଗାଁର ପ୍ରାୟ ସମସ୍ତ ବାପା ସନ୍ତକ କରିବା ଶିଖିଲେଣି । ଅଧାରୁ ଅଧିକ ମା' ମଧ୍ୟ ଦସ୍ତଖତ ଦେଇ ଶିଖିଲେଣି ।

ଗାଁରୁ ୪ଜଣ ଝିଅ ଓ ୫ ଜଣ ପୁଅ ସରକାରୀ ସ୍କୁଲ୍‌ରେ ପଢୁଛନ୍ତି । ଗାଁରେ ୨ଟି ଇନ୍ଦିରାଆବାସ ଘର, ୫ ଜଣଙ୍କୁ ବାର୍ଦ୍ଧକ୍ୟ ଭତ୍ତା ମିଳିଛି । ମାତୃ ମଙ୍ଗଳ ଯୋଜନାରେ ୩ ଜଣ ମାଆ ପ୍ରସୂତୀ ସାହାଯ୍ୟ ପାଇବାରେ ସକ୍ଷମ ହୋଇଛନ୍ତି ।

ଗାଁଲୋକେ ୫ ଏକର ଗ୍ରାମଜଙ୍ଗଲ ରଖିଛନ୍ତି । ଏଥିପାଇଁ ଜଙ୍ଗଲ ସୁରକ୍ଷା କମିଟି ଗଢ଼ାଯାଇଛି । ବର୍ତ୍ତମାନ ଲୋକମାନେ କିଛି କିଛି ଓଡ଼ିଆରେ ମଧ୍ୟ କଥାବାର୍ତ୍ତା କରି ପାରୁଛନ୍ତି । ମୁଁ ମଧ୍ୟ ସେହି ଗାଁରେ ରହିବା ଭିତରେ ଭଲ ଭାବରେ କୁଇଭାଷା ଶିଖିପାରିଲି । ଲୋକଙ୍କ ସାଙ୍ଗରେ ମିଶି ସେମାନଙ୍କର ସମସ୍ୟାସବୁକୁ ଚିହ୍ନଟ କରିଛି ଓ ସମାଧାନ ପାଇଁ ଅନେକ ପ୍ରକାରର ବାଟ ଖୋଜିଛି ଏବଂ ସମାଧାନ ମଧ୍ୟ କରିଛି । ମୁଁ କେମିତି ଆମ ଗରିବ ଆଦିବାସୀ ହରିଜନ ଭାଇଭଉଣୀଙ୍କ ସାଙ୍ଗରେ ରହି ସେମାନଙ୍କ ସୁଖଦୁଃଖରେ ସାମିଲ୍ ହୋଇପାରିବି, ସେଥିପାଇଁ ସବୁବେଳେ ଚେଷ୍ଟା କରିଆସିଛି ଓ ଭବିଷ୍ୟତରେ କରିପାରିବି ବୋଲି ଭଗବାନଙ୍କୁ ପ୍ରାର୍ଥନା କରୁଛି । ଏହା ହିଁ ହେବ ମୋ ଜୀବନର ଶ୍ରେଷ୍ଠ କାର୍ଯ୍ୟ ଓ ମୋର ଶେଷ ନିଷ୍ପତ୍ତି ।

ଖଟ ନାୟକ



# ଗୁରୁଭାଇ କେମିତି ହେବ ?

ଗୁରୁଭାଇ ପଢ଼ାଇବାରେ ଅବହେଳା ନକରି ଆଗ୍ରହର ସହିତ ସବୁବେଳେ ଆଗେଇଯିବା ଉଚିତ । ମୁଁ ମୋ ଶିକ୍ଷାପ୍ରଣାଳୀ ବିଷୟରେ କିଛି କହିବାକୁ ଚାହୁଁଛି । ପିଲ୍ଲାମାନେ ସ୍କୁଲ୍‌କୁ ଆସିବା ପରେ ସେମାନେ ପ୍ରାର୍ଥନା କରନ୍ତି । ତା'ପରେ ଦୁଇ ତିନି ମିନିଟ୍ ସେମାନେ 'ଓଁ' ଉଚ୍ଚାରଣ କରନ୍ତି । ଏହାଦ୍ୱାରା ସେମାନଙ୍କ ଭିତରେ ଏକାଗ୍ରତା ଆସେ । ଆହୁରି ମଧ୍ୟ ଏପରି କରିବା ଦ୍ୱାରା ଜଣାପଡିଯାଏ ଯେ କେଉଁ ପିଲାର ଏକାଗ୍ରତା ଆସୁନାହିଁ । ତାକୁ କିପରି ସମାଧାନ କରାଯିବ, ତା'ର ଉପାୟ ବାହାର କରିବା ଦରକାର । କେଉଁ ପିଲା କେତେବେଳେ କ'ଣ ଚାହୁଁଚି, ତାକୁ ସେତେବେଳେ ସେହି ପ୍ରକାରର ଶିକ୍ଷା ଦିଆଯିବା ଉଚିତ । ସେଥିପାଇଁ ଗୁରୁଭାଇର କୌଶଳ ଓ ପ୍ରଣାଳୀଗୁଡିକର ପ୍ରଧାନ ଭୂମିକା ରହିଛି । ଧରାଯାଉ ଗୋଟିଏ ପିଲା 'ଅ'କୁ ଠିକ୍ ଭାବରେ ଶୀଘ୍ର ଶିଖିପାରୁନି । ତାକୁ ତିନୋଟି ଅଣ୍ଡା ବା ଶୁନ୍ ଦ୍ୱାରା ଶିଖାଯାଇ ପାରେ । ପିଲାମାନଙ୍କ ଶିଖିବା ପାଇଁ କେମିତି ସହଜ ହେବ, ତାହା ଗୁରୁଭାଇମାନେ ସେମାନଙ୍କ ଚାରିପାଖରେ ଥିବା ପରିବେଶରୁ ଆହରଣ କରିପାରିବେ । ପିଲାମାନେ ଅନେକ ସମୟରେ ବିଭିନ୍ନ ପ୍ରକାର ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ସେମାନେ ଖେଳିବୁଲି ଆସି ହାତଗୋଡ଼ ନଧୋଇ ଖାଇବସନ୍ତି ଓ ସେମିତି ଅପରିଷ୍କାର ଭାବରେ ଶୁଅନ୍ତି । କେତେକ ପିଲା ଅଛନ୍ତି, ଗାଧୋଇବାକୁ ମଧ୍ୟ ଇଚ୍ଛା କରନ୍ତି ନାହିଁ । ପିଲାମାନେ କିପରି ସବୁବେଳେ ସଫାସୁତୁରା ରହିବେ, ପରିଷ୍କାର ରହିବେ, ମୁଣ୍ଡ କୁଣ୍ଡାଇବେ, ନଖ କାଟିବେ, ମୁଁ ଏସବୁ ଉପରେ ସବୁବେଳେ ନଜର ରଖେ । ଏହା ଗୁରୁର ପ୍ରଧାନ ଦାୟିତ୍ୱ ହେବା ଦରକାର ।

**ପିଲାମାନଙ୍କ ଉପରେ ସ୍ନେହ:**

ପିଲାମାନଙ୍କର ଚରିତ୍ର ହେଉଛି ଚଗଲାମି କରିବା । ଅନେକ ପିଲା ଶ୍ରେଣୀରେ ଚୁପ୍‌ଚାପ୍ ବସି ପାଠ ପଢ଼ିବାକୁ ମନ କରନ୍ତି ନାହିଁ । ଶ୍ରେଣୀରେ ବସି କିଏ ସ୍ଲେଟ୍‌କୁ

ଫୋପାଡୁଥିବ ତ କିଏ ଖାତା ଚଗୁଥିବ । ଏସବୁ ଭିତରେ ଗୁରୁ ସେମାନଙ୍କର ମନକୁ ସ୍ଥିର କରିବାକୁ ଚେଷ୍ଟା କରେ । ଗପ, ଗୀତ ଓ ନାଚ ଏପରି ପରିସ୍ଥିତିରେ ଭଲ କାମ ଦିଏ । ପାଠ ଆଡକୁ ସେମାନଙ୍କ ମନକୁ ଭୁଲାଇ ଦେଇ ଟାଣି ଆଣିବାକୁ ଏସବୁ ଗୋଟିଏ ଗୋଟିଏ ସୁନ୍ଦର ମାଧ୍ୟମ । ପିଲାମାନେ ଯେତେ ଯାହା ଦୁଷ୍ଟାମୀ କଲେ ମଧ୍ୟ ଗୁରୁଭାଇ ନରାଗି ଧୈର୍ଯ୍ୟର ସହିତ ସେମାନଙ୍କ ମନକୁ ଭୁଲାଇ ପାଠ ଆଡକୁ ଆକର୍ଷିତ କରିବା ଉଚିତ । ସେମାନଙ୍କୁ ଅକ୍ଷର ସେଟ୍ ଖେଳିବାକୁ ଦେବା ଉଚିତ ।

**ପିଲାମାନେ କିପରି ଭାଷା ଶିକ୍ଷା କରିବେ ?**

ପିଲାମାନେ ନିଜ ମାତୃଭାଷାରେ ଅଧିକ କଥାବାର୍ତ୍ତା କରନ୍ତି । ନିଜ ଭାଷାକୁ ସେମାନେ ଅଧିକ ଭଲ ପାଆନ୍ତି । ତେଣୁ ଓଡ଼ିଆ ଭାଷାରେ କହିବା ବା ପଢ଼ିବା ପାଇଁ ସେମାନଙ୍କୁ କଷ୍ଟ ହୁଏ । ଏହିଭଳି ପରିସ୍ଥିତିରେ ପିଲାମାନଙ୍କୁ ଗୁରୁ ପ୍ରତିଦିନ ଓଡ଼ିଆରେ ପାଞ୍ଚ/ଛଅ ଧାଡି ଲେଖିବାକୁ କହିବେ । ଭୁଲ୍ ହେଲେ ବାରମ୍ବାର ପଢ଼ିବାକୁ କହିବେ ଓ ଠିକ୍ ହେବା ପର୍ଯ୍ୟନ୍ତ ତାକୁ ବାରମ୍ବାର ପଢ଼ିବାକୁ ଓ ଲେଖିବାକୁ କହିବେ । ଉଚ୍ଚାରଣକୁ ମଧ୍ୟ ଦୃଷ୍ଟି ଦେବାକୁ ପଡିବ । କାରଣ ଆଦିବାସୀ ଅଞ୍ଚଳର ପିଲାମାନଙ୍କୁ ଠିକ୍ ଭାବରେ ଉଚ୍ଚାରଣ କରିବାକୁ କଷ୍ଟ ହୁଏ । ସେମାନଙ୍କର ଏହି ଉଚ୍ଚାରଣକୁ ସହଜରେ ଶିଖାଇବା ପାଇଁ ସରଳ ଗପ କହି ଓ ଗୀତ ଗାଇଲେ ଭଲ ହୁଏ । ସେମାନଙ୍କୁ ଶ୍ରେଣୀରେ ଠିଆ କରାଇ ଯେକୌଣସି ବିଷୟରେ ପାଞ୍ଚ ମିନିଟ୍ କହିବା ପାଇଁ ଦିଆଯାଇପାରେ । ଏହାଦ୍ଵାରା ସେମାନଙ୍କର କହିବା ଶକ୍ତି ବଢ଼ିବା ସାଙ୍ଗରେ ମନ ଭିତରେ ଥିବା ଡର ମଧ୍ୟ ଛାଡିଯାଏ । ସେମାନଙ୍କର ଭୁଲ୍‌ଗୁଡିକୁ ଗୁରୁଭାଇ ସାଙ୍ଗେ ସାଙ୍ଗେ ଠିକ୍ କରିବାର ଅଛି; ନଚେତ୍ ସେମାନେ ବାରମ୍ବାର ଭୁଲ୍ କିରବାର ସମ୍ଭାବନା ରହିଛି । ତେଣୁ ଗୁରୁଭାଇଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପିଲାମାନଙ୍କ ପାଇଁ ପଢ଼ିବା ଯେମିତି ଗୁରୁତ୍ୱପୂର୍ଣ୍ଣ, ଲେଖିବା ତା'ଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କୁ ହସ୍ତାକ୍ଷର ଲେଖାଇବା ଉଚିତ । ପ୍ରଥମ ଶ୍ରେଣୀରେ ଅକ୍ଷର ଶିଖୁଥିବା ପିଲାଙ୍କୁ ଚିତ୍ରର ଅକ୍ଷର ମାଧ୍ୟମରେ ଶିକ୍ଷା ଦେଲେ ସେମାନେ ଖୁବ୍ ଶୀଘ୍ର ଶିଖିପାରନ୍ତି ।

**ମୋ ଶିକ୍ଷାକେନ୍ଦ୍ରରେ ପାଠପଢ଼ା:**

ମୋ ଶିକ୍ଷାକେନନ୍ଦ୍ରର ପ୍ରାୟ ସମସ୍ତ ପିଲା ଠିକ୍ ସମୟରେ ସ୍କୁଲକୁ ଆସିଥାନ୍ତି । ଯଦି କୌଣସି ଅସୁବିଧା ବଶତଃ କୌଣସି ପିଲା ସ୍କୁଲ୍‌କୁ ଆସିନାହିଁ, ତେବେ ତାକୁ ଆଣିବା ପାଇଁ ଶ୍ରେଣୀର ମିନିଟର ବା ମୁଁ ସେହି ପିଲାର ଘରକୁ ଯାଉ ଓ ତାକୁ

ଡାକିଆଣୁ । ସମସ୍ତେ ଆସିବା ପରେ ପ୍ରାର୍ଥନା ହୁଏ । ମୁଁ ମଧ୍ୟ ପିଲାଙ୍କ ସହ ମିଶି ପ୍ରାର୍ଥନା କରେ । ତା'ପରେ ପାଠ ସହିତ ଖେଳ, ନାଚ, ଗୀତ କରାଏ । ରାତିରେ ପଢ଼ିବା ଛଡ଼ା ସକାଳେ ମଧ୍ୟ ପିଲାମାନେ ପଢ଼ିଆସନ୍ତି । ସକାଳେ ୭ଟାରୁ ମୁଁ ୯.୩୦ମି. ପର୍ଯ୍ୟନ୍ତ ପଢ଼ାଏ । ଡି.ପି.ଇ.ପି.ଦ୍ୱାରା ଖୋଲାଯାଇଥିବା ସ୍କୁଲ୍‌ରେ ପଢ଼ିବା ପାଇଁ ପିଲାଏ ଯାଆନ୍ତି । ମୋ ସ୍କୁଲ୍‌ରେ ପ୍ରଥମେ ୩୮ଜଣ ପିଲା ଥିଲେ; କିନ୍ତୁ ବର୍ତ୍ତମାନ ୨୨ ପିଲା ଅଛନ୍ତି । ୧୦ ଜଣ ପିଲାଙ୍କୁ ସରକାରୀ ସ୍କୁଲ୍‌ରେ ନାମ ଲେଖାଇ ଦେଇଛି । ୪ଜଣ ଝିଅ ବିବାହ ହୋଇଗଲେ । ୨ ଜଣ ଝିଅଙ୍କୁ ବୟସ ବେଶି ହେବାରୁ ସେମାନଙ୍କ ବାପା ମାଁ' ସ୍କୁଲକୁ ପଠାଇଲେ ନାହିଁ ।

**ତିନି ବର୍ଷ ଭିତରେ ଗାଁରେ ସାକ୍ଷରତା:**

ଆଜିକୁ ତିନିବର୍ଷ ହେଲା ସିଂଗରଖଡକ୍ ଗାଁରେ ଅଗ୍ରଗାମୀର ସ୍କୁଲ୍ ହୋଇଛି । ଏହି ତିନିବର୍ଷ ଭିତରେ ଗାଁରେ ସାକ୍ଷରତା ହାର ୯୫ ପ୍ରତିଶତ ହୋଇପାରିଛି । ଅଗ୍ରଗାମୀ ସ୍କୁଲ୍ ନହେବା ପୂର୍ବରୁ ମାତ୍ର ୭ଜଣ ପୁରୁଷ ଓ ଜଣେ ମହିଳା ଦସ୍ତଖତ କରିପାରୁଥିଲେ । ବର୍ତ୍ତମାନ ୫୫ଜଣ ପୁରୁଷ ଓ ୪୦ଜଣ ମହିଳା ସାକ୍ଷର ହୋଇପାରିଛନ୍ତି । ଲୋକମାନେ ଡ଼ି.ପି.ଇ.ପି. ସ୍କୁଲଠାରୁ ଆମ ସ୍କୁଲ୍‌କୁ ବେଶି ଧ୍ୟାନ ଦେଉଛନ୍ତି । ଏହି ସିଙ୍ଗରଖଡକ୍ ଗାଁରେ ବାସ କରୁଥିବା ୬୨ଘରର ଆଦିବାସୀ, ହରିଜନ ଓ ଗୌଡ ଜାତିର ଲୋକେ ଅଗ୍ରଗାମୀ ସ୍କୁଲ୍‌କୁ ସବୁଠାରୁ ବେଶୀ ଭଲ ପାଆନ୍ତି । କାରଣ ଏହା ହେବା ଫଳରେ ସେମାନେ ହିଁ ଦସ୍ତଖତ କରିପାରୁଛନ୍ତି ବା ବହିଖଣ୍ଡେ ପଢ଼ି ପାରୁଛନ୍ତି । ସେମାନେ ଏହି ସ୍କୁଲକୁ କେମିତି ସବୁଦିନ ପାଇଁ ବଞ୍ଚାଇ ରଖିବେ, ସେହି ଚେଷ୍ଟାରେ ଅଛନ୍ତି ।

ଦାନ ସିଂ ମାଝୀ

ନବସୃଜନ ଶିକ୍ଷାକେନ୍ଦ୍ର, ସିଙ୍ଗରଖଡ଼କ

□□□

# ମୋ ଶିକ୍ଷାକେନ୍ଦ୍ର କଥା

ମୁଁ ଜଣେ ଆଦିବାସୀ ଲୋକ । **ଆମ ଘର ଗୋରଖପୁର ପଞ୍ଚାୟତରେ** ଥିବା ବଡ଼ମାରିଭଟା ଗାଁରେ । ଆମ ଗାଁରେ ପ୍ରାୟ ୪୦୦ ଘର ରହିଛି । ୧୯୮୮ ମସିହାରେ ମୁଁ ଦଶମ ଶ୍ରେଣୀ ପାସ୍ କରିବା ପରେ କାଶୀପୁର ଜୁନିୟର୍ କଳାବିଦ୍ୟାଳୟରେ ନାମ ଲେଖାଇଥିଲି । କିନ୍ତୁ ଆର୍ଥିକ ପରିସ୍ଥିତି ଠିକ୍ ନଥିବାରୁ ବାର୍ଷିକ ପରୀକ୍ଷା ଦେଇ ପାରିଲି ନାହିଁ । ମୋତେ ଶିକ୍ଷାକର୍ମୀ ନାମରେ ମାସିକ ୪୦୦ ଟଙ୍କା ବେତନରେ ସରକାରୀ ଚାକିରି ମିଳିଥିଲା । କିନ୍ତୁ ମୁଁ କିଛି ଦିନ କାମ କରିବା ପରେ ଭଲ ନ ଲାଗିବାରୁ ତାକୁ ଛାଡିଦେଲି । ସେହି କାମ ଛାଡିଦେବା ପରେ ମୋତେ ଆଉ କାମଧନ୍ଦା ମଳିନଥିଲା । ଏମିତି ପ୍ରାୟ ୫ ବର୍ଷପରେ ଅଗ୍ରଗାମୀ ତରଫରୁ ଶିକ୍ଷକ ନିଯୁକ୍ତି କରୁଥିବା ଜାଣି ମୁଁ ଦରଖାସ୍ତ ଦେଇଥିଲି । କିଛି ଦିନପରେ ସାକ୍ଷାତକାର ପାଇଁ ମୋତେ ଡକାଗଲା ଓ ମୁଁ ସେଥିରେ ପାସ୍ କରିବା ପରେ ତଳକଞ୍ଚାକଣା ବୋଲି ଗୋଟିଏ ଗାଁରେ ଶିକ୍ଷକ ଭାବରେ ନିଯୁକ୍ତି ମିଳିଲା ।

ଏହି ତଳକଞ୍ଚାକଣା ଆମ ପଞ୍ଚାୟତର ଶେଷମୁଣ୍ଡରେ ଥିବା ଏକ ଗାଁ । ଗାଁର ଚାରିପାଖରେ ଡଙ୍ଗର ଓ ଜଙ୍ଗଲ ଘେରି ରହିଛି । ଗାଁକୁ ଯିବା ଆସିବା ପାଇଁ କୌଣସି ରାସ୍ତା ନାହିଁ କିମ୍ବା ସରକାରଙ୍କ ତରଫରୁ ହେଉଥିବା କୌଣସି ଜନମଙ୍ଗଳ କାର୍ଯ୍ୟକ୍ରମ ଏହି ଗାଁକୁ ପହଞ୍ଚି ପାରିନାହିଁ । ଏଭଳି ପରିସ୍ଥିତିରେ ମୋତେ ଗାଁରେ ରହିବାକୁ ହେଲା । ମୋର ଶାରୀରିକ ଅକ୍ଷମତା ହେତୁ ସେହି ଗାଁକୁ ଯିବା ଆସିବା କରିବାରେ ମୋତେ ପ୍ରଥମେ ବହୁତ କଷ୍ଟ ହେଲା; ତଥାପି ମୁଁ ଡରି ନଯାଇ ସବୁ ସମସ୍ୟାର ମୁକାବିଲା କରିବା ପାଇଁ ଅଣ୍ଟା ଭିଡ଼ିଲି । କାରଣ ଶିକ୍ଷକତା କରିବା ପାଇଁ ମୁଁ ପାଠ ପଢ଼ିବା ବେଳୁ ମୋର ଆଗ୍ରହ । ପ୍ରଥମେ ଏହି ତଳକଞ୍ଚାକଣା ଗାଁରେ ସର୍ଭେ କରିବା ପାଇଁ ଏକୁଟିଆ ୧୦/୧୨ କି.ମି. ଚାଲି ଚାଲି ଯାଇ ପହଞ୍ଚିଲି । ଲୋକମାନେ ମୋତେ ଦେଖି ମୋ

ସାଙ୍ଗରେ କଥା ହେଲେନାହିଁ । ଜଣେ ୪୦ବର୍ଷର ବାପାଙ୍କୁ କହିଲି, "ତୁମ ଗାଁରେ ଅଗ୍ରଗାମୀ ସ୍କୁଲ୍ କରିବା ପାଇଁ ଚାହୁଁଛି । ମୁଁ ଗୁରୁଭାଇ ହିସାବରେ ତୁମ ଗାଁରେ ରହିବି ।" ଏହାପରେ ମୁଁ ଗାଁରେ ଗୋଟିଏ ସଭା ଡାକି ଶିକ୍ଷା, ସ୍ୱାସ୍ଥ୍ୟ, ଗାଁ ପରିବେଶ, ସରକାରୀ କାର୍ଯ୍ୟକ୍ରମ ଇତ୍ୟାଦି ବିଷୟରେ କହିଲି । ଲୋକମାନେ ବହୁତ ଖୁସି ହେଲେ । ଏହାପରେ ମୁଁ ଘରସଂଖ୍ୟା, ଲୋକସଂଖ୍ୟା, ପିଲାସଂଖ୍ୟା, ସ୍କୁଲ୍‌ରେ ପଢୁଥିବା ପିଲାସଂଖ୍ୟା, କୁଟୁମ୍ବ ପାଣ୍ଠି ଇତ୍ୟାଦି ବିଷୟରେ ସର୍ଭେ କଲି । ସର୍ଭେ ତାଲିକା ଅନୁସାରେ ଘରସଂଖ୍ୟା ୩୫, ସ୍କୁଲ୍‌ରେ ନାମ ଲେଖାଇବା ଭଳି ପିଲା ୩୦ ଜଣ, ସରକାରୀ ସ୍କୁଲ୍‌ରେ ପଢୁଥିବା ପିଲା ୩ଜଣ, ପାଠ ପଢ଼ି ଛାଡି ଦେଇଥିବା ପିଲା ୨ଜଣ ଓ ଦସ୍ତଖତ କରି ପାରୁଥିବା ଲୋକ ୫ ଜଣ ଥିଲେ । ଗାଁରେ କୁଟୁମ୍ବପାଣ୍ଠି ଆଦୌ ନଥିଲା । ସରକାରୀ ଯୋଜନା ଭାବରେ କେବଳ ଗୋଟିଏ ନଳକୂଅ ହେବା ଛଡା ଆଉ କିଛି ହୋଇନାହିଁ । ଖାଉଟି କାର୍ଡ଼ କେବଳ ୯ଜଣ ଲୋକଙ୍କର ଥିଲା ଓ ବାର୍ଦ୍ଧକ୍ୟ ଭତ୍ତା କେବଳ ୩ଜଣ ପାଉଥିଲେ । ମୁଁ ଲୋକମାନଙ୍କୁ ଏହି ସମସ୍ୟା ବିଷୟରେ ବୁଝାଇ କହିଲି, ସେମାନେ ବର୍ତ୍ତମାନ ଏକାଠି ହୁଅନ୍ତୁ ଓ ସରକାରଙ୍କୁ ଜଣାନ୍ତୁ । ମୁଁ ମଧ୍ୟ ସେମାନଙ୍କ ସାଙ୍ଗରେ ଅଛି । କିନ୍ତୁ ସବୁର ମୂଳକଥା ହେଉଛି ଶିକ୍ଷା । ଆଗେ ସମସ୍ତ ପାଠ ପଢ଼ିବା; ତା'ପରେ ଆମେ ଅନେକ କଥା ଜାଣିପାରିବା । ଏଥିପାଇଁ ଆମକୁ ଶିକ୍ଷାକମିଟି ଗଠନ କରିବାକୁ ପଡ଼ିବ । ଏହାପରେ ଗୋଟିଏ ଦିନ ବୈଠକ କରି ଶିକ୍ଷାକମିଟି ଗଠନ କରାଯାଇ ସ୍କୁଲ୍‌ଘର କରିବା ପାଇଁ ନିଷ୍ପତ୍ତି ନିଆଗଲା । ୪ଜଣ ବାପା ଓ ୨ଜଣ ମାଆଙ୍କୁ ନେଇ ଶିକ୍ଷାକମିଟି ଗଢ଼ାଗଲା । ଏହି ବୈଠକ ସରିବା ପରେ ଲୋକମାନେ ମୋତେ ଡାକି ଖାଇବାକୁ ଦେଲେ ଓ ଗପଟିଏ ଶୁଣାଇବାକୁ କହିଲେ । ମୁଁ ଶିବପୁରାଣର ଗୋଟିଏ ଅଧ୍ୟାୟ ଗପ ମାଧ୍ୟମରେ କହିଲି ଓ ଗୋଟିଏ ପିଣ୍ଡାରେ ଶୋଇଲି । ମୁଁ ଧୀରେ ଧୀରେ ପିଲା ଓ ଲୋକମାନଙ୍କ ସହିତ ମିଶିଗଲି ।

**ପାଠପଢ଼ା ଆରମ୍ଭ:**

ମୁଁ ପିଲାମାନଙ୍କୁ ପ୍ରଥମେ ସିଧା ଅକ୍ଷର ବା ସଂଖ୍ୟା ନ ଶିଖାଇ ସ୍ଥାନୀୟ ଆଦିବାସୀ ଭାଷାରେ ସେମାନଙ୍କ ଚାରିପାଖରେ ଥିବା ଗୃହପାଳିତ ପଶୁ, ପକ୍ଷୀ, ନଦୀ, ନାଳ, ଡଙ୍ଗରମାନଙ୍କର ନାମ କହି, ଗୀତ ଗାଇ ସେମାନଙ୍କର ମନଖୁସି କଲି । ଏମିତି ସପ୍ତାହ/ଦୁଇ ସପ୍ତାହେ ଯିବା ପରେ କେତେକ ଲୋକ ମୋର ଏହିଭଳି ପାଠ ପଢ଼ାଇବା

ଶୈଳୀକୁ ପସନ୍ଦ କରିପାରିଲେ ନାହିଁ । ସେମାନେ ଭାବିଲେ ଯେ ଏମିତି ଗୀତ, ନାଚ କଲେ କ'ଣ ପିଲା ପାଠ ପଢ଼ିବେ ! କେତେ ଜଣ ବାପା ମୋତେ ସିଧା ଆସି ମଧ୍ୟ ପଚାରିଲେ, "ତୁମେ ଅ, ଆ ଇତ୍ୟାଦି ନଶିଖାଇ କେମିତି ପାଠ ପଢ଼ାଉଛ ?" ମୁଁ ସେମାନଙ୍କୁ ବୁଝାଇଲି, "ଏମିତି ପଢ଼ାଇଲେ ପିଲାମାନେ ଏକାଥରେ ଅକ୍ଷର, ଶବ୍ଦ ଓ ଶବ୍ଦର ଅର୍ଥ ଜାଣିପାରିବେ । ଏକାବେଳକେ ଅକ୍ଷର ଆରମ୍ଭ କଲେ ପିଲାମାନେ ଆଉ ଶିଖିବାକୁ ଆଗ୍ରହ ପ୍ରକାଶ କରିବେ ନାହିଁ ।" ବାପାମାନେ ଯାହାହେଉ, କ'ଣ ବୁଝିଲେ କେଜାଣି, କହିଲେ, "ତୁମେ ଯେମିତି ପଛେ ପାଠ ପଢ଼ାଅ; ପିଲାମାନେ ପାଠ ଜାଣିବା ଦରକାର । ଆମେ ବର୍ଷିପରେ ଦେଖିବୁ ।" ମୁଁ ମଧ୍ୟ ସ୍ଥିରନିଶ୍ଚିତ ହୋଇପାରୁ ନଥାଏ ଯେ ଏହି ପଦ୍ଧତିଟି ପିଲାମାନଙ୍କ ପାଇଁ କେତେ ପରିମାଣରେ ଉପଯୋଗୀ ହୋଇପାରିବ । କାରଣ ଏଭଳି ଭାବେ ଆମ ଶିକ୍ଷକମାନେ ଆମକୁ କେବେ ପଢ଼ାଇନାହାନ୍ତି କି ଏଥିପୂର୍ବରୁ ମୁଁ ମଧ୍ୟ କେବେ କାହାକୁ ପଢ଼ାଇ ନାହିଁ । କିନ୍ତୁ ମୁଁ ଧୈର୍ଯ୍ୟ ହରାଇଲି ନାହିଁ । ଏମିତି ଭାବରେ ପଢ଼ାଇବା ପରେ ମୁଁ ଦେଖିଲି ଯେ ପିଲାମାନେ ୧୫ ଦିନ ଯିବା ପରେ ମଧ୍ୟ ମୁଁ କହିଥିବା ଶବ୍ଦସବୁ ମନେ ରଖି ପାରୁଛନ୍ତି ଓ ପଚାରିଲେ କହିପାରୁଛନ୍ତି । ତା'ପରେ ମୁଁ ଧୀରେ ଧୀରେ ସେମାନେ ଜାଣିଥିବା ଶବ୍ଦସବୁକୁ ଅକ୍ଷରର ରୂପ ଦେଇ ସ୍ଲେଟ୍‌ରେ ଲେଖିଦେଲି; ଟିକିଏ ବଡ଼ ପିଲାମାନେ ଲେଖିବାକୁ ମଧ୍ୟ ଆରମ୍ଭ କରିଦେଲେ । ମୋର ଏମିତି ପାଠ ପଢ଼ାଇବା ଓ ପିଲାମାନଙ୍କର ଲେଖିବା ଦେଖି ବାପାମାନେ ମିଶି ସ୍କୁଲ୍ ତିଆରି କରିବାରେ ଲାଗି ପଡି ମିଶି ସ୍କୁଲ୍ ତିଆରି କଲୁ ଓ ମୁଁ ରହିବା ପାଇଁ ମଧ୍ୟ ସେମାନେ ଘରଟିଏ ତିଆରି କରିଦେଲେ ।

ମୁଁ ପ୍ରଥମେ ପ୍ରଥମେ ପିଲାମାନଙ୍କୁ ବହୁତ ସମୟ ଯାଏଁ ବସାଉନଥିଲି; କେବେ କେମିତି ଯଦି ବସାଇ ଦେଉଥିଲି, ପିଲାମାନେ ତା' ଆରଦିନ ଆସୁ ନଥିଲେ; ମୋତେ ସେଦିନ ଘର ଘର ଯାଇ ଡାକି ଆଣିବାକୁ ପଡୁଥିଲା । ଏମିତି ଚାଲିଲା ପରେ ଅଫିସ୍ ତରଫରୁ ଶିକ୍ଷାସାମଗ୍ରୀ, ସ୍ଲେଟ୍, ଖଡି, ବହି ଦିଆଗଲା । ବର୍ଷେ ଏପରି ପଢ଼ାଇବା ପରେ ପ୍ରାୟ ସବୁ ପିଲା ପଢ଼ିପାରିଲେ ଓ ଅକ୍ଷର ଲେଖିପାରିଲେ । ୨/୩ ଜଣ ପିଲା ମିଶାଣ, ଫେଡାଣ, ଗୁଣନ ମଧ୍ୟ ଶିଖିପାରିଲେ । ୧୯୯୯ ମସିହାରେ ୩ଟି ପିଲାଙ୍କୁ ମୁଁ ସରକାରୀ ସ୍କୁଲ୍‌ରେ ଭର୍ତ୍ତି କରାଇଲି । ସେହ ପିଲାମାନେ ସରକାରୀ ସ୍କୁଲ୍‌ରେ ପଢ଼ିବା ଦେଖି ଅନ୍ୟ ପିଲାମାନେ ମଧ୍ୟ ଏଥିପାଇଁ ମନ ବଳାଇଲେ ।

**ତିନିବର୍ଷ ଭିତରେ ପାଠପଢ଼ା:**

ଗତ ତିନିବର୍ଷ ହେଲାଣି ମୋ ସ୍କୁଲ୍ ଭଲ ଚାଲିଛି । ପିଲାମାନେ ପ୍ରତ୍ୟେକ ଦିନ ଦି'ଓଳି ସ୍କୁଲ୍ ଆସୁଛନ୍ତି । ମୋଟ ଛାତ୍ରଛାତ୍ରୀ ସଂଖ୍ୟା ୨୫ଜଣ । ପିଲାମାନେ ନିଜେ ନିଜେ ଆସି ଘଣ୍ଟାମାରି ପ୍ରାର୍ଥନା କରନ୍ତି; ମୋତେ କହିବାକୁ ପଡେ ନାହିଁ । ମୁଁ ପ୍ରଥମେ ପ୍ରଥମେ ପିଲାମାନଙ୍କୁ ବହୁତ ପ୍ରଶ୍ନ ପଚାରୁଥିଲି ଓ ଉତ୍ତର କହି ଦେଉଥିଲି । ବର୍ତ୍ତମାନ ପିଲାମାନେ ନିଜେ ପ୍ରଶ୍ନ ପଚାରୁଛନ୍ତି । ସେମାନେ ଗପ କହୁଛନ୍ତି, ଗୀତ ଗାଉଛନ୍ତି, ନାଚ କରୁଛନ୍ତି । ନୂଆ ଲୋକ ଗାଁକୁ ଆସିଲେ ମଧ ପିଲାମାନେ ଡରି ନଯାଇ ତାଙ୍କ ସହିତ କଥାବାର୍ତ୍ତା କରୁଛନ୍ତି । ଏଣୁ ମୁଁ ଭାବୁଚି, ନବସୃଜନ ଶିକ୍ଷା ପିଲାମାନଙ୍କ ପାଇଁ ଉପଯୁକ୍ତ ଶିକ୍ଷା ଅଟେ । ବର୍ତ୍ତମାନ ମୋ ସ୍କୁଲ୍‌ରୁ ଯାଇ ୧୫ ଜଣ ପିଲା ସରକାରୀ ସ୍କୁଲ୍ ପଢୁଛନ୍ତି ଓ ଗାଁରେ ପ୍ରାୟ ୫୦ଜଣ ଲୋକ ସାକ୍ଷର ହୋଇ ପାରିଛନ୍ତି ।

**କୁଟୁମ୍ବପାଣ୍ଠି:**

ବର୍ତ୍ତମାନ ଗାଁରେ ୫୦ପୁଟି ଶସ୍ୟ କୁଟୁମ୍ବପାଣ୍ଠିରେ ଅଛି । ଏହାଦ୍ୱାରା ଲୋକେ ଆଗପରି ସାହୁକାରର ଦ୍ୱାରସ୍ଥ ନହୋଇ ଅସୁବିଧା ବେଳେ କାମରେ ଲଗାଇ ପାରୁଛନ୍ତି ।

**ଅର୍ଥପାଣ୍ଠି:**

ଆମ ଶିକ୍ଷାକେନ୍ଦ୍ରକୁ ଅଗ୍ରଗାମୀ ତରଫରୁ ୧୫,୦୦୦ଟଙ୍କା ଦିଆଯାଇଥିଲା । ଏହାକୁ ଋଣ ଦେବା ପାଇଁ ନିଷ୍ପତ୍ତି ନିଆଯାଇ କମ୍ ସୁଧରେ ଦିଆଯାଇଥିଲା । ସେଥିପାଇଁ ବେଶୀ ଟଙ୍କା ବଢ଼ି ପାରିନାହିଁ । ବର୍ତ୍ତମାନ ୧୬,୦୦୦ ଟଙ୍କା ହୋଇଛି ।

**ସରକାରୀ କାର୍ଯ୍ୟକ୍ରମ:**

ମୁଁ ଗ୍ରାମରେ ଗୁରୁଭାଇ ଭାବେ ରହିବା ଭିତରେ କିଛି କିଛି ସରକାରୀ କାର୍ଯ୍ୟକ୍ରମ ହୋଇପାରିଛି । ଗାଁରେ ଗୋଟିଏ ନଳକୂଅ, ଗୋଟିଏ ପାଣିମୁଣ୍ଡା, ୯ଜଣଙ୍କୁ ବାର୍ଦ୍ଧକ୍ୟ ଭତ୍ତା, ୮ଜଣଙ୍କୁ ବି.ପି.ଏଲ୍. କାର୍ଡ କରାଇ ଦେଇପାରିଛି ।

**ଗାଁର ପରିବେଶ:**

ପ୍ରଥମେ ପ୍ରଥମେ ଗାଁର ପରିବେଶକୁ ବହୁତ ଘୃଣା କରୁଥିଲି । କାରଣ ରାସ୍ତାଘାଟସବୁ ବହୁତ ଅପରିଷ୍କାର ଥିଲା । ଲୋକଙ୍କର ଗୃହପାଳିତ ଘୁଷୁରିସବୁ ରାସ୍ତାକଡ଼ର କାଦୁଅସବୁକୁ ଆହୁରି ଆବର୍ଜନାମୟ କରି ଦେଉଥିଲେ । ଏହାକୁ ସୁଧାରିବା ପାଇଁ ମୁଁ

ପ୍ରତି ମାସିକ ଗ୍ରାମ୍ୟ ବୈଠକରେ ପରିବେଶ ପରିଚ୍ଛନ୍ନତା ଓ ସ୍ୱାସ୍ଥ୍ୟ ବିଷୟରେ ଲୋକଙ୍କୁ ସହିତ ମିଶି ରାସ୍ତାଘାଟ ଇତ୍ୟାଦି ସଫା କରିବାରେ ଲାଗିଲୁ । ବର୍ତ୍ତମାନ ଗାଁରେ ଆଗଭଳି ମଦ ମଧ ରନ୍ଧା ହେଉନାହିଁ କି ଲୋକେ ଆଉ ମଦ ପିଉନାହାନ୍ତି । ପର୍ବପର୍ବାଣୀ ହେଲେ କିଛି ଲୋକ ପିଉଛନ୍ତି । ଜ୍ୱର, ଝାଡ଼ା ଇତ୍ୟାଦି ହେଲେ ଲୋକେ ଆଗପରି ଦିଶାରୀ, ଗୁଣିଆ ନକରି ଡାକ୍ତରୀ ଔଷଧପତ୍ର କରୁଛନ୍ତି ଓ ଭଲ ହେଉଛନ୍ତି । ଗାଁରେ ଅଙ୍ଗନୱାଡ଼ି ଖାଦ୍ୟ ମଧ ଠିକ୍ ଭାବରେ ଦିଆଯାଉଛି । ଏହିପରି ଭାବେ ମୁଁ ମୋ ଗାଁ ଓ ଶିକ୍ଷାକେନ୍ଦ୍ର ସହ ଆଗକୁ ଆଗେଇଚାଲିଛି ।

ଅଖିଳ ନାଏକ

ନବସୃଜନ ଶିକ୍ଷାକେନ୍ଦ୍ର, ତଳକଣ୍ଟାକଣା



# ଶିକ୍ଷକ ଜୀବନର ପ୍ରଥମ ଅନୁଭୂତି

ମୁଁ ମାଟ୍ରିକ୍ ଫେଲ୍ ହେବାପରେ ଘରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ ଦ୍ୱିତୀୟ ଥର ପାଇଁ ପରୀକ୍ଷା ଦେଇପାରିଲି ନାହିଁ । ଠିକ୍ ଏହି ସମୟରେ 'ମୋଡ୍' ସଂସ୍ଥା ଦ୍ୱାରା ଖୋଲାଯାଇଥିବା ନବସୃଜନ ଶିକ୍ଷାକେନ୍ଦ୍ରରେ ଶିକ୍ଷୟିତ୍ରୀ ହେବା ପାଇଁ ନିଯୁକ୍ତି ଦିଆଯାଉଛି ବୋଲି ଶୁଣିଲି ଓ ଆବେଦନ କରିବା ପରେ ଇଣ୍ଟରଭ୍ୟୁ ଦେଲି । ଇଣ୍ଟରଭ୍ୟୁରେ ପାସ୍ କରିବା ପରେ ମୁଁ ନବସୃଜନ ଶିକ୍ଷାକେନ୍ଦ୍ର, ଦାତୁମ୍‌ଗୁଡ଼ାରେ ନିଯୁକ୍ତି ପାଇଲି । ନିଯୁକ୍ତି ପାଇଲି ସିନା, ମାତ୍ର ସ୍କୁଲ୍ କେମିତି ଚଳାଇବାକୁ ହେବ, ତାହା ମୁଁ ଆଦୌ ଜାଣି ନଥିଲି । ତେଣୁ ମୁଁ ଆଉ ଗୋଟିଏ ସ୍କୁଲ୍‌ର ଗୁରୁଭଉଣୀ ପାଖରେ ପାଞ୍ଚ ଦିନ ଖଣ୍ଡେ ରହି ଅନୁଧ୍ୟାନ କଲି । ଗୁରୁଭଉଣୀ କେମିତି ଶିକ୍ଷା ଦେଉଛନ୍ତି, ଏତେ ପିଲାଙ୍କୁ କେମିତି ସମ୍ଭାଳୁଛନ୍ତି, ତାହା ନିଜେ ଅନୁଭବ କଲି । ତା'ପରେ ସେହି ଗୁରୁଭଉଣୀ ମୋତେ ମୁଁ ନିଯୁକ୍ତି ପାଇଥିବା ଗାଁକୁ ନେଇଗଲେ । ଚିତ୍ରକୋଣ୍ଡାର ନାଁ ଶୁଣିଥିଲି; କିନ୍ତୁ ସେହି ଅଞ୍ଚଳର ଗାଁଗୁଡିକ ଦେଖି ନଥିଲି ।

ଗାଁରେ ପହଞ୍ଚିବା ପରେ ପ୍ରଥମେ ନାୟକଙ୍କୁ ଡାକିଲୁ । ନାୟକ ସମସ୍ତ ଗ୍ରାମବାସୀଙ୍କୁ ଡାକି ଆଣିଲେ । ସମସ୍ତେ ବସି ବୈଠକ କଲୁ । ଉପସ୍ଥିତ ଥିବା ଗ୍ରାମବାସୀଙ୍କ ସହିତ ପ୍ରଥମେ ପରିଚୟ ଆଦାନପ୍ରଦାନ ହେଲା । ଗାଁର ଲୋକମାନଙ୍କୁ ନବସୃଜନ ଶିକ୍ଷା ବିଷୟରେ ବୁଝାଇଲି । ସେଦିନ ରାତିରେ ଜଣେ ଗାଁଲୋକଙ୍କ ଘରେ ରହିଲୁ । ସକାଳ ହେବାରୁ ମୋ ସାଙ୍ଗରେ ଆସିଥିବା ଗୁରୁ ଭଉଣୀ ମୋତେ ଛାଡି ତାଙ୍କ ଶିକ୍ଷାକେନ୍ଦ୍ରକୁ ଚାଲିଗଲେ । ମୁଁ ଆଗରୁ କେବେ ଘର ଛାଡ଼ି ବାହାରେ ଏକଲା ରହି ନଥିଲି । ପୁଣି ଆମ ଗାଁ ଠାରୁ ଏହି ଗାଁଟି ପୂରା ଅଲଗା ମନେ ହେଉଥିଲା ଓ ସବୁ ନୂଆ ନୂଆ ଲାଗୁଥିଲା । ଏହି ଗାଁର ଲୋକଙ୍କ ସହିତ କିମିତି ମିଶିବି, କେମିତି ରହିବି, ଏ ଚିନ୍ତା ମୁଁ କରୁଥାଏ । ମୋ ମନରେ ଲାଜ ବି ରହିଥାଏ । ଦଶ ବାର ଦିନ ଗଲାପରେ ପୁଣି

ଥରେ ଗାଁ ଲୋକଙ୍କୁ ଡାକି ବୈଠକ କଲି । ଏହାପରେ ସବୁକିଛି ସହଜ ହୋଇଗଲା । ଗାଁରେ ସବୁ ବାପା ମା' ମୋ ସାଙ୍ଗରେ ମିଶିଗଲେ । କିନ୍ତୁ ମୁଁ ଶିକ୍ଷକ ହେବା ପାଇଁ କୌଣସି ତାଲିମ୍ ନେଇ ନଥିବାରୁ ପାଠ ପଢ଼ାଇବା ପାଇଁ ଅଡୁଆ ଅଡୁଆ ଲାଗୁଥାଏ । ମୁଁ ପ୍ରଥମେ ତେଣୁ ଗୀତ ଗାଇଲି ଓ ଗପ କହିଲି । ପିଲାମାନେ ଧୀରେ ଧୀରେ ମୋ ସହିତ ମିଶିବାରେ ଲାଗିଲେ । ଆଜିକୁ ୧୦ମାସରୁ ଅଧିକ ହେଲାଣି ମୁଁ ପାଠ ପଢ଼ାଇଛି । ଏହି ସମୟ ଭିତରେ ମୁଁ ଅନେକ କଥା ପିଲାମାନଙ୍କୁ ଓ ଅନ୍ୟମାନଙ୍କୁ ଶିଖାଇଛି ଓ ନିଜେ ମଧ୍ୟ ଶିଖିପାରିଛି । ମୁଁ ପ୍ରଥମେ ଭାବୁଥିଲି ଯେ ଏହି ସ୍କୁଲ୍ ମଧ୍ୟ ସରକାରୀ ସ୍କୁଲ୍ ପରି ହୋଇଥିବ ବୋଲି । କିନ୍ତୁ ସରକାରୀ ସ୍କୁଲ୍ ଠାରୁ ଏହ ପୂରା ଅଲଗା । ଏହି ସ୍କୁଲ୍ ସକାଳେ ଓ ରାତିରେ ହୁଏ । ମୁଖ୍ୟତଃ ଏଥିରେ ପଢୁଥିବା ପିଲାମାନେ ଦିନବେଳେ କାମ କରିବା ସହିତ ପାଠ ମଧ୍ୟ ପଢ଼ନ୍ତି । ପାଠ ପଢ଼ାଇବା ବ୍ୟତୀତ ଗାଁରେ କୁଟୁମ୍ବପାଣ୍ଠି, ସ୍ୱୟଂ ସହାୟକ ଦଳ ଗଠନ କରିଛି । ମୁଁ ଗାଁର ସବୁ ସମସ୍ୟା ବୁଝନ୍ତି । ମୁଁ ବର୍ତ୍ତମାନ ନିଜ ଗାଁଠୁ ବଳି ଏହି ଗାଁକୁ ଅଧିକ ନିଜର ବୋଲି ଭାବି ନେଇଛି । ଏହି ଆଦିବାସୀ ଅଞ୍ଚଳରେ ରହି କିପରି ଅଶିକ୍ଷିତମାନଙ୍କୁ ଶିକ୍ଷିତ କରାଇବି ଓ ଏହି ଗାଁର ଉନ୍ନତି ପାଇଁ କିଛି କରିପାରିବି, ସେହି ଆଶାରେ ମୁଁ ଦାତୁମ୍‌ଗୁଡ଼ା ଗ୍ରାମରେ ଗୁରୁଭଉଣୀ ରୂପେ କାମ କରୁଛି ।

କୁନି କିର୍ସାନି

ନବସୃଜନ ଶିକ୍ଷାକେନ୍ଦ୍ର, ଦାତୁମ୍‌ଗୁଡ଼ା



# ମୋ ଦୁଇବର୍ଷର ଅନୁଭୂତି

ଆମ ଗାଆଁ ଦଡୁଗୁଡ଼ା କୋରାପୁଟ ଜିଲ୍ଲାର ମୁଜାଙ୍ଗ ପଞ୍ଚାୟତ ଅନ୍ତର୍ଗତ ଅଟେ । ଏହି ଗାଆଁରେ ପ୍ରାୟ ୩୪ ଘର ପରିବାର ବସବାସ କରନ୍ତି । ଏହି ଗାଆଁ ଚାରିଆଡେ ପାହାଡ଼ପର୍ବତ ଘେରି ରହିଛି । ଏହି ଗ୍ରାମରେ ଗତ ଦୁଇ ବର୍ଷ ହେଲା ଅଗ୍ରଗାମୀ ସହାୟତାରେ ହୋଇଥିବା ନବସୃଜନ ଶିକ୍ଷାକେନ୍ଦ୍ରରେ ମୁଁ ଗୁରୁଭାଇ ଭାବରେ କାମ କରୁଛି ।

ଗତ ଦୁଇ ବର୍ଷ ଭିତରେ ଏହି ଗାଁକୁ ଦେଖିଲେ ଗାଁର ପରିବର୍ତ୍ତନ କଥା ଯେ କୌଣସି ଲୋକର ଆଖିରେ ପଡିବ ବୋଲି ମୁଁ ଭାବୁଛି । କାରଣ ଏହି ଦଡୁଗୁଡା ଗାଁରେ ଖୁବ୍ ପରିବର୍ତ୍ତନ ଆସିଛି । ଦୁଇବର୍ଷ ପୂର୍ବେ ଅଧିକାଂଶ ଲୋକ ନିରକ୍ଷର ଥିଲେ । ମା'ମାନେ ତ ଆଦୌ ପାଠ ପଢ଼ି ନଥିଲେ । ବର୍ତ୍ତମାନ ଅନେକ ଲୋକ ଦସ୍ତଖତ କରିବା ସହିତ ବହି ପଢ଼ି ପାରୁଛନ୍ତି । ଗାଆଁକୁ ଆଗେ ସରକାରୀ ଲୋକ ଆସିଲେ ଲୋକମାନେ ଭଲଭାବେ କଥା କହିପାରୁ ନଥିଲେ; ସେମାନଙ୍କୁ ଡରିଯାଇ ଘରେ ଲୁଚୁଥିଲେ । କିନ୍ତୁ ଆଜିକାଲି ସେମାନଙ୍କ ସାମ୍ନାରେ ନିଜ ନିଜର ସମସ୍ୟାସବୁକୁ ଉପସ୍ଥାପିତ କରିପାରୁଛନ୍ତି ।

ଏହି ଗାଆଁରେ ଡାକ୍ତରଖାନା ନଥିବାରୁ ଲୋକମାନେ ବହୁତ ଅସୁବିଧା ଭୋଗ କରନ୍ତି । ଗାଆଁଠାରୁ ୪/୫ କି.ମି. ଦୂରରେ ଡାକ୍ତରଖାନା ଅବସ୍ଥିତ । କୌଣସି ବେମାର ହେଲେ ପୋଡ଼ାଗଡ଼ ନଚେତ ଦାମନଯୋଡ଼ି ଡାକ୍ତରଖାନାକୁ ନେବାକୁ ପଡେ । ଅନେକ ସମୟରେ ଲୋକେ ପଇସାପତ୍ର ଅଭାବରୁ ମୃତ୍ୟୁବରଣ କରନ୍ତି । ପାଖରେ ଏ.ଏନ୍.ଏମ୍.ଥିଲେ ମଧ୍ୟ ଏ ଗାଁକୁ ଖୁବ୍ କମ୍ ଆସନ୍ତି; ଯାହା ଫଳରେ ଲୋକେ ଉପଯୁକ୍ତ ସ୍ୱାସ୍ଥ୍ୟସେବା ପାଇବାରେ ଅସୁବିଧା ହୁଏ ।

ଏହି ଗାଁର ସବୁଲୋକ ଚାଷୀ ଅଟନ୍ତି, ଯଦିଓ ସମସ୍ତଙ୍କର ନିଜର ଜମିବାଡ଼ି

ନାହିଁ । ତେଣୁ ଅନେକ ଲୋକ ଦାମନ୍‌ଯୋଡ଼ିକୁ କୁଲିକାମ କରିବାକୁ ଯାଆନ୍ତି । ଲୋକଙ୍କ ପାଇଁ ସବୁବେଳେ ଆୟ କରିବାର ପନ୍ଥା ଅଭାବ । ତେଣୁ ଲୋକମାନେ ସବୁବେଳେ ଅସୁବିଧାରେ ଚଳନ୍ତି ।

ଦଡୁଗୁଡ଼ା ଗାଁର ଲୋକମାନେ ପାଖ ଜଙ୍ଗଲକୁ ସୁରକ୍ଷା କରିଛନ୍ତି । ଏଥିପାଇଁ ଏକ ଜଙ୍ଗଲ ସୁରକ୍ଷା କମିଟି ଗଠନ କରାଯାଇଛି ।

ଚିଙ୍ଗୁଡୁ ଭୋଇ
ନବସୃଜନ ଶିକ୍ଷାକେନ୍ଦ୍ର, ଦଡୁଗୁଡ଼ା



# ମୋ ଅନୁଭୂତିରୁ କେଇପଦ

ଆଦିବାସୀ ଅଧ୍ୟୁଷିତ ବଣପାହାଡ଼ ଘେରା ନବରଙ୍ଗପୁର ଜିଲ୍ଲା ଶିକ୍ଷା, ସଭ୍ୟତା କ୍ଷେତ୍ରରେ ଯେ ଖୁବ୍ ପଛରେ ପଡିରହିଛି, ଏକଥା ସମସ୍ତେ ଜାଣୁଥିଲେ ମଧ୍ୟ ଅନୁଭବୀ ହିଁ ଅଧିକ କିଛି ଜାଣିପାରିବ- ଏଥିରେ ସନ୍ଦେହ ନାହିଁ । ଭାରତ ସ୍ୱାଧୀନତା ଲାଭ କରିବାର ୫୨ବର୍ଷ ବିତିଯାଇଥିଲେ ମଧ୍ୟ ଉକ୍ତ ଅଞ୍ଚଳର ଅନେକ ନିରୀହ ଆଦିବାସୀ ପରିବାର ସେମାନଙ୍କ ଅଧିକାରରୁ ବଞ୍ଚିତ ହୋଇ ରହିଛନ୍ତି । ସରକାରଙ୍କର ସୁଦୂରପ୍ରସାରୀ ଯୋଜନା ଏମାନଙ୍କ ପାଖରେ ପହଞ୍ଚି ପାରେନାହିଁ । ଯାହା କହିଲେ 'ହଇ ଆଜ୍ଞା' କରି ଚୁପ୍ ରହିବା ସ୍ୱାଭବ ଏମାନଙ୍କର । ଜଙ୍ଗଲ ଏମାନଙ୍କ ପାଇଁ ଜୀବିକାର ମାଧ୍ୟମ । ଏମାନଙ୍କ ପାଖରେ ଥିବା ଡଙ୍ଗର ଜମି ମଧ୍ୟ ଚାଷ ପାଇଁ ଅନୁପଯୁକ୍ତ । ଉକ୍ତ ଟାଙ୍ଗରା ଭୂଇଁରେ ବର୍ଷା ମଧ୍ୟ ଠିକ୍ ଭାବରେ ହୁଏ ନାହିଁ । ଗ୍ରୀଷ୍ମଋତୁରେ ପ୍ରଚଣ୍ଡ ଖରା ଓ ଶୀତଋତୁରେ ହାଡ଼ଭଙ୍ଗା ଶୀତ ସାଙ୍ଗକୁ ମ୍ୟାଲେରିଆ ମଶାମାନଙ୍କର ବାସସ୍ଥଳୀ ଏଇ ନବରଙ୍ଗପୁର ଜିଲ୍ଲା । ଉକ୍ତ ଜିଲ୍ଲାରେ ମୋର ଦୁଇବର୍ଷର ଅନୁଭୂତି ମୁଁ ଲେଖୁଛି ।

ଏହି ଆଦିବାସୀ ଅଞ୍ଚଳର ଲୋକଙ୍କ ସଂସ୍ପର୍ଶରେ ମୁଁ ଗତ ମାର୍ଚ୍ଚମାସ ୧୩ତାରିଖ ୨୦୦୦ ମସିହାରେ ଆସିଲି ଭାରତ ସରକାରଙ୍କ ସହାୟତାରେ ଅଗ୍ରଗାମୀ ଦ୍ୱାରା ପରିଚାଳିତ ଏକ ଆବାସିକ ଆଦିବାସୀ ବାଳିକା ବିଦ୍ୟାଳୟର ପରିଚାଳନା ଦାୟିତ୍ୱ ନେଇ ।

ଯେଉଁଦିନ ମୁଁ ଏହି ସ୍କୁଲ୍‌ରେ ପାଦ ଦେଲି, କୁନି କୁନି ଆଦିବାସୀ ପିଲାମାନଙ୍କ କଥାବାର୍ତ୍ତା ବୁଝିବାରେ ମୋତେ ବହୁତ କଷ୍ଟ ହେଉଥିଲା; ତଥାପି ସେମାନଙ୍କ ସହିତ ମିଶିବାକୁ ଚେଷ୍ଟା କଲି । ପ୍ରଥମ ଦେଖାରେ ହିଁ ସେମାନେ ମୋତେ ବହୁତ ଭଲ ପାଇଲେ; କାରଣ ମୁଁ ସେମାନଙ୍କ ପାଇଁ ଥିଲି ଜଣେ 'ନୂଆଦିଦି' । ୧ମରୁ ୫ମଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢୁଥିବା ୫୦ ଜଣ ଝିଅପିଲାଙ୍କର ଭାଷା, ବେଶପୋଷାକ ଓ ଚାଲିଚଳନର ଭାର ନେବାକୁ ମୋତେ ପଡିଲା । ଦୀର୍ଘ ଦୁଇମାସ ପରେ ଯାଇ ମୁଁ ସେମାନଙ୍କର କଥା

ସ୍ପଷ୍ଟ ଭାବେ ବୁଝିପାରିଲି ଓ ବହି ବଦଳରେ ପାଠ୍ୟ ବିଷୟବସ୍ତୁଗୁଡ଼ିକୁ ଗପ କିମ୍ବା ମଜାକଥା ଆକାରରେ ସେମାନଙ୍କୁ ବୁଝାଇଲି । ପ୍ରକୃତରେ ମୁଁ ଯେତେବେଳେ ଏହି ସ୍କୁଲ୍‌ରେ ପାଦଦେଲି, ସେତେବେଳେ ଏହି ସ୍କୁଲ୍ ପରିବେଶ ଦୃଷ୍ଟିରୁ ସ୍ୱାସ୍ଥ୍ୟକର ବୋଲି ମୁଁ ଚିନ୍ତା କରି ପାରୁନଥିଲି । ପ୍ରଥମେ ମୋର ସହକର୍ମୀ ଶିକ୍ଷୟିତ୍ରୀମାନଙ୍କ ଠାରୁ ଏକ ସୁସ୍ଥ ପରିବେଶ ଗଠନ ପାଇଁ ସହଯୋଗ ଚାହିଁଥିଲି । ଏଥିପାଇଁ ଅନେକ ପରାମର୍ଶ ଏବଂ ପରିଶ୍ରମ କରିବାକୁ ପଡ଼ିଥିଲା । ଖୁବ୍ ଛୋଟ ଛୋଟ ପିଲାମାନେ ଶିକ୍ଷାକୁ କିଭଳି ସହଜରେ ଗ୍ରହଣ କରିପାରିବେ, ସେଥିପାଇଁ ବହୁତ ଚିନ୍ତା କରି ଗୋଟିଏ ଗୋଟିଏ ନୂତନ କୌଶଳ ସେମାନଙ୍କ ଉପରେ ପ୍ରୟୋଗ କଲି । ମୋର ସହକର୍ମୀମାନେ ମଧ୍ୟ ପିଲାମାନଙ୍କୁ ପଢ଼ାଇବାରେ କିଛି ଅସୁବିଧା ଅନୁଭବ କଲେ ମୋ ଠାରୁ ପରାମର୍ଶ ମାଗନ୍ତି । ସମସ୍ତଙ୍କ ମଧ୍ୟରେ ଦାୟିତ୍ୱ ବଣ୍ଟାଗଲା ଏବଂ ତାହା ମଧ୍ୟ ଠିକ୍ ଭାବରେ ପାଳିତ ହେଉଛି କି ନାହିଁ, ତଦାରଖ କରିବା ଦାୟିତ୍ୱ ମୋର । ତେଣୁ ଆମ ସମସ୍ତଙ୍କର ମିଳିତ ସହଯୋଗରେ ପିଲାମାନଙ୍କର ଭାଷା, ଚାଲିଚଳନ, ବ୍ୟବହାର, ଶିକ୍ଷା, ବେଶପୋଷାକ, ପରିଷ୍କାର ପରିଚ୍ଛନ୍ନତା ଇତ୍ୟାଦିରେ ଅପେକ୍ଷାକୃତ ଉନ୍ନତି ଲକ୍ଷ୍ୟ କଲି ।

ପିଲାମାନଙ୍କର ଅଗ୍ରଗତି ଦିଗରେ ସେମାନଙ୍କର ଅଭିଭାବକମାନଙ୍କ ସହିତ ସମ୍ପର୍କରେ ମୁଁ ଅଧିକ ଗୁରୁତ୍ୱ ଦିଏ । ପ୍ରତ୍ୟେକ ଅଭିଭାବକ ସହ ମୁଁ ଯେପରି ଖୁବ୍ ନିକଟତର ହୋଇପାରିବି, ସେଥିପାଇଁ ସେମାନଙ୍କ ସାଙ୍ଗରେ ଆଲୋଚନା କଲି । ସେଥିପାଇଁ ଯେତେ କାର୍ଯ୍ୟବ୍ୟସ୍ତ ଥିଲେ ମଧ୍ୟ ପ୍ରତିମାସରେ ଅଭିଭାବକମାନଙ୍କର ଏକ ବୈଠକ କରୁ, ଯେଉଁଠି ଆମେ ଛାତ୍ରୀ, ଶିକ୍ଷୟିତ୍ରୀ ଏବଂ ଅଭିଭାବକ ଏକାଠି ବସି ସମସ୍ତଙ୍କର ସୁବିଧା ଅସୁବିଧା, ପିଲାମାନଙ୍କର ପାଠରେ ଆଗ୍ରହ ଏବଂ ଅଗ୍ରଗତି ସହିତ ନାରୀଶିକ୍ଷାର ଗୁରୁତ୍ୱ, ଜଙ୍ଗଲସୁରକ୍ଷା, ଶୋଷଣମୁକ୍ତ ସମାଜ ଗଠନ, ମଦନିବାରଣ, ପରିଷ୍କାର ପରିଚ୍ଛନ୍ନତା ଉପରେ ଆଲୋଚନା କରୁ । ଫଳରେ ଏହାଦ୍ୱାରା ସେମାନେ ଅନେକ କଥା ଜାଣିବା ସହିତ ଆଉ ଗୋଟିଏ ଲାଭ ମଧ୍ୟ ହେଲା । ପୂର୍ବରୁ ସେମାନେ ନିଜ ମନଇଚ୍ଛା ପିଲାମାନଙ୍କୁ ଘରକୁ ନେଉଥିଲେ ଓ ମନଇଚ୍ଛା ଆଣି ଛାଡୁଥିଲେ, ଯାହାଦ୍ୱାରା ପିଲାଙ୍କ ପାଠପଢ଼ାରେ ବ୍ୟାଘାତ ଘଟୁଥିଲା । ପିଲାମାନେ ନିଜେ ମଧ୍ୟ ଲୁଚି ପଳାଉଥିଲେ । ମାତ୍ର ପ୍ରତିମାସରେ ସେମାନଙ୍କ ବାପା ମା'ମାନେ ଆସୁଥିବାରୁ ଏହା ବନ୍ଦ ହୋଇଯାଇଛି ।

ଗତ ୧୯୯୯-୨୦୦୦ ମସିହା ଶିକ୍ଷାବର୍ଷରେ ଉକ୍ତ ବିଦ୍ୟାଳୟରୁ ୨ଟି ପିଲା ସମାଇ ମାଝୀ ଓ ଦିନାମଣି ମୁଦୁଲି ସୁନାବେଡ଼ା ଆଦର୍ଶ ବିଦ୍ୟାଳୟର ୫ମଶ୍ରେଣୀ ପ୍ରବେଶିକା ପରୀକ୍ଷାରେ ଅବିଭକ୍ତ କୋରାପୁଟ ଜିଲ୍ଲାରେ ସର୍ବାଧିକ ନମ୍ବର ରଖି ନାମ ଲେଖାଇଥିଲେ । ୨୦୦୦-୨୦୦୧ ମସିହାରେ ମଧ୍ୟ ତଦନୁରୂପ ଭାବେ ୬ଜଣ ପିଲା ନିଶିନାହାଣ୍ଡି ଆଦର୍ଶ ବିଦ୍ୟାଳୟରେ ହୋଇଥିବା ପରୀକ୍ଷାରେ ସର୍ବାଧିକ ୭୮% ରଖି ଉତ୍ତୀର୍ଣ୍ଣ ହୋଇଥିଲେ । ଚଳିତ ବର୍ଷ ୩ଜଣ ବାଳିକା ୫ମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଆସନ୍ତା ଜୁନ୍‌ମାସରେ ଥିବା ଆଦର୍ଶ ବିଦ୍ୟାଳୟର ପ୍ରବେଶିକା ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଛନ୍ତି । ପ୍ରଥମ କରି ସେମାନଙ୍କ ଅଞ୍ଚଳରୁ ବାହାର କୁ ଶିକ୍ଷାଲାଭ କରିବାକୁ ଯାଉଥିବା ଏହି ପିଲାମାନେ ଯେତିକି ଉତ୍‌ଫୁଲ୍ଲିତ, ସେମାନଙ୍କ ଅଭିଭାବକ ଓ ଗାଁଲୋକମାନେ ଆଜି ସେତିକି ଗର୍ବିତ । ସତେ କ'ଣ ତାଙ୍କ ଗାଁରେ ସେମାନଙ୍କ ଦ୍ୱାରା କିଛି ପରିବର୍ତ୍ତନ ହୋଇପାରିବ ! ଏହି ପିଲାମାନଙ୍କୁ ପଚାରିଲେ କହନ୍ତି, 'ଆମେ ଡାକ୍ତର ହେବୁ, ଆମ ଗାଁ ଅଞ୍ଚଳରେ ରୋଗୀସେବା କରିବୁ; ଶିକ୍ଷୟିତ୍ରୀ ହୋଇ ଗାଁରେ ନିରକ୍ଷରତା ଦୂର କରିବୁ; ସମାଜସେବୀ ହୋଇ ଲୋକଙ୍କ ସେବା କରିବୁ ।'

ଉକ୍ତ ସ୍କୁଲ୍ ଅଧୀନରେ ୨ଟି ଗାଁରେ ଦୁଇଟି ପୌଢ଼ ଶିକ୍ଷାକେନ୍ଦ୍ର ଖୋଲାଯାଇଛି । ସେହି କେନ୍ଦ୍ରରେ ସେମାନେ ଲେଖାପଢ଼ା ସହିତ ହିସାବ ମଧ୍ୟ କରିବା ଶିଖୁଛନ୍ତି । ହାତୀପୋକନା ଗାଁରେ ଫୁଲମାଇ ସାନ୍ତା ନାମ୍ନୀ ଜଣେ ୪୫ ବର୍ଷୀୟା ମାଆ ବର୍ତ୍ତମାନ ଅକ୍ଷର ଚିହ୍ନି ଖବରକାଗଜ ପଢ଼ି ପାରୁଛି । ସବୁକାମରେ ଆଗକୁ ବାହାରୁଛି । ସେହି ଗାଁର ଅନ୍ୟ ବାପାମା'ମାନେ ମଧ୍ୟ ପଢ଼ି ପାରିଲେଣି । ଏହି କେନ୍ଦ୍ରଗୁଡ଼ିକ ଦ୍ୱାରା ସେମାନେ ମଦର ଅପକାରିତା, ସାହୁକାରୀ ଶୋଷଣ, ଜଙ୍ଗଲ ସୁରକ୍ଷା ଇତ୍ୟାଦି ବିଷୟରେ ମଧ୍ୟ ସେଚତନ ହୋଇ ପାରୁଛନ୍ତି ।

କିନ୍ତୁ ଏତିକିରେ ଯେ ସବୁକିଛି ହୋଇଗଲା ବୋଲି ଭାବିବା ଆଦୌ ଠିକ୍ ନୁହେଁ । ଏମାନଙ୍କର ବିକାଶ ପାଇଁ ସାମୂହିକ ସ୍ତରରେ ପ୍ରଚେଷ୍ଟା ଦରକାର । ଶିକ୍ଷା ରୂପକ ଆଲୋକ ଯେପର୍ଯ୍ୟନ୍ତ ଏମାନଙ୍କ ନିକଟରେ ପହଞ୍ଚି ପାରିନାହିଁ, ସେମାନଙ୍କର ଦାରିଦ୍ର୍ୟର ଅନ୍ଧକାର ମଧ୍ୟ ଦୂର ହୋଇପାରିବ ନାହିଁ । ଶିକ୍ଷା, ସ୍ୱାସ୍ଥ୍ୟ, ସାମାଜିକ-ଅର୍ଥନୈତିକ ତଥା ରାଜନୈତିକ ପରିବର୍ତ୍ତନ ପାଇଁ ସରକାର ଯେଉଁ ଯୋଜନା କରିଚାଲିଛନ୍ତି, ତାହା ସେମାନଙ୍କ ପାଖରେ କେତେମାତ୍ରାରେ ପହଞ୍ଚିପାରୁଛି, ତାହା

ମଧ୍ୟ ଅନୁସନ୍ଧାନ କରି ଜାଣିବା ଦରକାର । ଏହା ସେମାନଙ୍କ ପାଇଁ ମାନବିକ ଅଧିକାରର ପ୍ରଶ୍ନ । ତେଣୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ପ୍ରକୃତରେ ବଣରେ ଫୁଟି ବଣରେ ଝଡିପଡୁଥିବା ଏହି ବଣମଲ୍ଲୀମାନେ ଯେତେବେଳେ ନିଜର ବାସନାକୁ ଲୋକଙ୍କ ପାଖରେ ପହଞ୍ଚାଇବାରେ ସକ୍ଷମ ହୁଅନ୍ତି, ସେତେବେଳେ ମୋତେ କେତେ ଯେ ଆନନ୍ଦ ଲାଗେ, ତାହା ମୁଁ ବର୍ଣ୍ଣନା କରିପାରିବି ନାହିଁ ।

ଗାୟତ୍ରୀ ବେହେରା
ପ୍ରଧାନ ଶିକ୍ଷୟିତ୍ରୀ
ଆବାସିକ ବାଳିକା ଶିକ୍ଷାୟତନ, ଗୌଡଗୁଡ଼ା

□□□

# ମୋର ଶିକ୍ଷକ ଜୀବନର ଟିକିଏ ଅନୁଭୂତି

ଗାଆଁଟିର ନାମ ହୁଡ଼େର । ଏହା କାଶୀପୁର ଠାରୁ ୩୫ କି.ମି. ଦୂରରେ ଅଛି । ଗାଆଁର ଚାରିଆଡ଼େ ଜଙ୍ଗଲ ବାଉଁଶ ବଣ ଓ ବିଭିନ୍ନ ପ୍ରକାରର ଗଛ ଲତାରେ ପରିପୂର୍ଣ୍ଣ । ଯେତେବେଳେ ମୁଁ ଶିକ୍ଷକତା କରିବା ପାଇଁ ସେ ଗାଆଁକୁ ଯିବାକଥା ଜାଣିଲି ସେତେବେଳେ ପ୍ରଥମେ ଗାଆଁଟିକୁ ଯାଇ ଦେଖି ଆସିଲି । ମୁଁ ଭାବିଥିଲି ଏହି ଗାଆଁରେ ରହିବାକୁ ବଡ଼ ଅସୁବିଧା ହେବ । ଯେଉଁଦିନ ଗାଆଁର ଲୋକମାନଙ୍କ ସହ କଥାବାର୍ତ୍ତା ହେଲି ସେଦିନ ମୁଁ ଏହି ଗାଆଁକୁ କାହିଁକି ଆସିଛି କହିବାରୁ ସେମାନ ବହୁତ ଖୁସି ହୋଇ ଗଲେ । କାରଣ ଏହି ଗାଆଁରେ ପିଲାମାନେ ପଢ଼ିବାର କିଛି ସୁଯୋଗ ନଥିଲା । ସେମାନଙ୍କୁ କହିଲି, ତୁମ ଗାଆଁରେ ପିଲାମାନେ ପଢ଼ିବା ପାଇଁ ଘରଟିଏ କରିଦେଲେ ଏବଂ ମୋ ପାଇଁ ରହିବା ପାଇଁ ଘରଟିଏ ଦେଲେ ତୁମ ଗାଆଁରେ ରହି ପଢ଼ାଇବି । ତା'ର ତିନି ଦିନ ଭିତରେ ସେମାନେ ଏକ ଘର ଠିକ୍ କରିଦେଲେ । ମୁଁ ଅଗ୍ରଗାମୀ ଧୋବାସିଲ ଉପକେନ୍ଦ୍ର ଠାରୁ ସ୍ଲେଟ୍, ଖଡି ଓ ଲଣ୍ଠନ ନେଇ ଆସି ସ୍କୁଲ ଆରମ୍ଭ କରିଦେଲି । ପିଲାମାନଙ୍କୁ ପଢ଼ିବା ପାଇଁ ଡାକିଲି କିନ୍ତୁ ମାତ୍ର ୭ଜଣ ପିଲା ପଢ଼ିବାକୁ ଆସିଲେ । ଅନ୍ୟ ପିଲାମାନେ ମୋତେ ଭୟ କରି ପ୍ରଥମେ ମୋ ପାଖକୁ ଆସିଲେ ନାହିଁ ।

ପ୍ରଥମ ପିଲାମାନଙ୍କ ସହ ଗପ, ଗୀତ ମାଧ୍ୟମରେ ପାଠପଢ଼ା ଆରମ୍ଭ କଲି । ଦୁଇ ତିନି ଦିନ ଗଲାପରେ ଆସ୍ତେ ଆସ୍ତେ ଅନ୍ୟ ପିଲାମାନେ ଦେଖିବାକୁ ଆସିଲେ । ସେମାନଙ୍କୁ ଡାକିଲି କିନ୍ତୁ ତିନି ଜଣ ପିଲାଙ୍କ ବ୍ୟତୀତ ଅନ୍ୟ ପିଲାମାନେ ଧାଇଁ ପଳାଇଲେ । ମୋ ମନ ଭିତରେ ଘାଣ୍ଟି ହେଉଥାଏ ଯେ ସବୁ ପିଲାମାନଙ୍କୁ କିପରି ଶିକ୍ଷା କେନ୍ଦ୍ରକୁ ଆଣିବି ? ଏହା ପରେ ଆମ ଶିକ୍ଷକମାନଙ୍କର ଏକ ତାଲିମ ଡକା ହେଲା । ମୁଁ ଗାଆଁ ଲୋକମାନଙ୍କୁ କହି ତାଲିମ ପାଇଁ କାଶୀପୁର ଗଲି ।

ତାଲିମ୍ ପରେ ପିଲାଙ୍କୁ ପଢ଼ାଇବା ପାଇଁ ମୋ ଭିତରେ ନୂଆ ନୂଆ ଧାରଣା ହେଲା । ପ୍ରଥମେ ପିଲାମାନଙ୍କୁ ଶବ୍ଦ ମାଧ୍ୟମରେ ପଢ଼ାଇଲେ ସେମାନେ ଶୀଘ୍ର ପଢ଼ିପାରିବେ । କିନ୍ତୁ ମୋ ଭିତରେ ପ୍ରଶ୍ନ ଆସୁଥାଏ ଯେ କେବଳ ଶବ୍ଦ ମାଧ୍ୟମରେ ସେମାନଙ୍କୁ ପାଠ ପଢ଼ାଇହେବ କି ? ତଥାପି ମୋ ଭିତରେ ସାହସ ଆସୁଥାଏ ଏବଂ ତାଲିମରେ କୁହାଯାଇଥିବା କଥା ସବୁ ମନେ ପଡୁଥାଏ । ପିଲା ଯଦି ପାଠ ବୁଝିପାରୁ ନାହିଁ, କଦାପି ବିରକ୍ତ ହେବା ନାହିଁ କିମ୍ବା ରାଗିଯିବ ନାହିଁ । ପିଲାମାନେ କିପରି ଖୁସିରେ ପଢ଼ିବେ ସେଥିପାଇଁ ଗୀତ, ଗପ ଓ ନାଚ ମାଧ୍ୟମରେ ଆରମ୍ଭ କଲି । ଆସ୍ତେ ଆସ୍ତେ ସବୁ ପିଲା ପଢ଼ିବା ପାଇଁ ଆସିଲେ । କିନ୍ତୁ ବଡ଼ ବଡ଼ ଝିଅମାନେ ଲାଜରେ ପଢ଼ିବାକୁ ଆସିଲେ ନାହିଁ ।

ମୁଁ ଗୋଟିଏ ଉପାୟ ପାଞ୍ଚିଲି ମୋ ସାନ ଭଉଣୀ ସୁମିତ୍ରା ସରକାରୀ ସ୍କୁଲରେ ୫ମ ଶ୍ରେଣୀରେ ପଢ଼େ ତାକୁ ଡ଼ାକି ଆଣିଲି । ସେ ପିଲାମାନଙ୍କୁ ଗୀତ ଶୁଣାଇଲା ଏବଂ ସବୁ ପିଲାମାନେ ତା'ସହ ଏକାଠି ଗୀତ ଗାଇଲେ । ସେହି ଗାଆଁର ଅନ୍ୟ ଝିଅମାନେ ଭଉଣୀ ସୁମିତ୍ରାକୁ ଦେଖିବାକୁ ଆସିଲେ । ମୁଁ ସେମାନଙ୍କୁ କହିଲି ତୁମ ପରି ସୁମିତ୍ରା ଜଣେ ଝିଅ । ସେ ଆମ ଗାଆଁ ଠାରୁ ୨ କିଲୋମିଟର ଦୂରରେ ଥିବା ସ୍କୁଲରେ ପାଠ ପଢୁଛି । ଏବଂ ସବୁଦିନ ନିୟମିତ ସ୍କୁଲ୍‌କୁ ଯାଉଛି । ତୁମ୍ଭେମାନେ କାହିଁକି ପଢ଼ିବା ପାଇଁ ଆସୁନାହଁ ? ସେମାନଙ୍କ ପାଖରେ ମୋ ଭଉଣୀ ଦୁଇ ଦିନ ରହିଲା । ତା'ପରେ ସବୁ ବଡ଼ ବଡ଼ ଝିଅମାନେ ନିୟମିତ ସ୍କୁଲକୁ ଆସିଲେ ।

ପିଲାମାନଙ୍କୁ ତାଙ୍କ ନାମରୁ ଆରମ୍ଭ କରି ସେମାନେ ଜାଣିଥିବା ଓ ଦେଖୁଥିବା ବିଭିନ୍ନ ଜିନିଷକୁ ନେଇ ଶବ୍ଦ ଶିଖାଇଲି । ଯେତେ ଶବ୍ଦ ଶିଖାଉଥାଏ ତାହା ସବୁ ଗୋଟିଏ ଖାତାରେ ଲେଖି ରଖୁଥାଏ । କଳା ପଟାରେ ଯେତେବେଳେ ଶବ୍ଦ ଲେଖିଦିଏ, ତାହା ସବୁ ପିଲାମାନେ ଦେଖି ଦେଖି ଲେଖନ୍ତି । ଦେଖି ଦେଖି ଲେଖୁଥିଲେ ମଧ୍ୟ ସେମାନଙ୍କର ଭୁଲ ହେଉଥାଏ । ବାରମ୍ବାର ଭୁଲ ଲେଖି ଆଣିବାରୁ ମୋ ଭିତରେ ବହୁତ ବିରକ୍ତ ଲାଗୁଥାଏ । ତାଲିମ କଥା ମନେ ପକାଇ ଧୈର୍ଯ୍ୟ ଧରି ପିଲାଙ୍କ ଲେଖା ସବୁ ଠିକ୍ କରିଦେଉ ଥାଏ । ସେମାନଙ୍କୁ ଉତ୍ସାହ ଦେଉଥାଏ । ପିଲାମାନେ ଖୁସିରେ ପୁଣି ଲେଖି ଆଣୁ ଥାଆନ୍ତି ।

ଥରେ ମୋର ଖାତାରେ ଏକ ଚିତ୍ର ଆଙ୍କିଥିଲି ତା' ପାଖରେ ମୋ' ନାମ ଇଂରାଜୀରେ ଲେଖୁଥିଲି । ଆମ ଶିକ୍ଷାକେନ୍ଦ୍ରର ଜଣେ ପିଲା ତାର ନାମ ଜୟସିଂ, ସେ

ପଚାରିଲା ଗୁରୁ ଏଇଟା କ'ଣ ଲେଖାଯାଇଛି ? ମୁଁ କହିଲି ଏଇଟା ମୋର ନାମ ଇଂରାଜୀରେ ଲେଖାଯାଇଛି । ତା'ପରେ ସେ ଏହା ଦେଖି ଦେଖି ମୋର ନାମକୁ ତା'ର ସ୍ଲେଟରେ ଲେଖି ମତେ ଦେଖାଇଲା ଏବଂ କହିଲା ଏଇଟା ପରା ତୁମର ନାମ ତେବେ ମୋର ନାମ ଇଂରାଜୀରେ ଲେଖିଦିଅ । ସ୍ଲେଟ୍‌ରେ ତା'ର ନାମ ଇଂରାଜୀରେ ଲେଖି ଦେଇଥିଲି । ସେହିଦିନ ସଂଧ୍ୟାରେ ସେ ନିଜର ନାମ ଇଂରାଜୀରେ ଲେଖି ସମସ୍ତ ପିଲାଙ୍କୁ ଦେଖାଇ ଥିଲା ଏବଂ କହିଥିଲା ଏଇଟା ମୋର ନାମ ଇଂରାଜୀରେ ଲେଖା ଯାଇଛି । ସବୁ ପିଲା ଲେଖିବେ ବୋଲି ଜିଦ୍ ଧରିଲେ । ତା'ପରେ ସବୁ ପିଲା ନିଜର ନାମ, ଗ୍ରାମପଞ୍ଚାୟତ, ବ୍ଲକ ଏବଂ ନିଜ ପରିବାର ଲୋକଙ୍କ ନାମ ସବୁ ଲେଖିବା ଜାଣିଗଲେ । ଏସବୁ ପାଇଁ ମୋ ଭିତରେ ପିଲାଙ୍କୁ ପଢ଼ାଇବାକୁ ଆଗ୍ରହ ବଢ଼ିଗଲା । ଏବେ ଅଧିକାଂଶ ପିଲା ବହି ପଢ଼ିପାରୁଛନ୍ତି ଏବଂ ଯେ କୌଣସି ବହି ପାଇଲେ ମଧ୍ୟ ପଢ଼ିବା ପାଇଁ ଚେଷ୍ଟା କରୁଛନ୍ତି ।

ଆମର ଶିକ୍ଷା କମିଟି ମୋତେ ବହୁତ ସାହାଯ୍ୟ କରନ୍ତି । ଯଦି କୌଣସି କାରଣରୁ ଜଣେ ପିଲା ଆସି ନଥିବେ ତେବେ ସେମାନେ ଡ଼ାକି ଆଣନ୍ତି । ଶିକ୍ଷା କମିଟିର ଦୁଇ ତିନି ଜଣ ସବୁଦିନ ଶିକ୍ଷାକେନ୍ଦ୍ରକୁ ଆସି ମୋର ସୁବିଧା ଓ ଅସୁବିଧା କଥା ବୁଝନ୍ତି । ମୁଁ ପିଲାମାନଙ୍କର ଅତି ପ୍ରିୟ ସାଙ୍ଗ ହୋଇଯାଇଛି । ପିଲାମାନଙ୍କ ସହ ଖେଳେ, ବୁଲିଯାଏ, ଗାଧୋଇ ଯାଏ, ବଣକୁ କାଠ ପାଇଁ ଯାଏ । ମୁଁ ପିଲାମାନଙ୍କୁ ବହୁତ ଭଲପାଏ ଏବଂ ପିଲାମାନେ ମୋତେ ବହୁତ ଭଲପାଆନ୍ତି । ଗାଆଁ ଲୋକମାନେ ମୋତେ ବହୁତ ଭଲ ପାଆନ୍ତି ।

ତେଣୁ ଆମ ଶିକ୍ଷାକେନ୍ଦ୍ରରେ ପାଠପଢ଼ା ପାଇଁ ନିର୍ଦ୍ଦିଷ୍ଟ ସମୟ ନଥାଏ, କେଉଁଦିନ ରାତି ୧୧ ତ କେଉଁଦିନ ରାତି ୧୨ ହୋଇଯାଏ । ସବୁଦିନ ରାତିରେ ପାଠ ପଢ଼ା ପରେ ୧ରୁ ୨ଘଣ୍ଟା ନାଚ ଗୀତରେ କଟିଯାଏ । ପାଠ ପଢ଼ା ମଝିରେ ଖାଇବା ଛୁଟି କରେ । ମୋର ୬ମାସ ଭିତରେ ବଡ଼ ଅଭିଜ୍ଞତା ହୋଇଛି ଯେ ଭୟ ଦେଖାଇଲେ ପିଲାଙ୍କ ମନରେ ଗୋଟିଏ କଳଙ୍କ ଲାଗିଲା ପରି ଦାଗ ରହିଯାଏ । ସେହି ଦାଗ ଲିଭାଇବାକୁ ବହୁତ କଷ୍ଟ ଲାଗେ, ସେ ଦାଗ କେବେ ଛାଡ଼େ ନାହିଁ । ପିଲାର ଭବିଷ୍ୟତକୁ ନଷ୍ଟ କରିଦିଏ ଏବଂ ଅନ୍ଧାର କରିଦିଏ ।

ମୁଁ ଯେତେବେଳେ ପ୍ରାଥମିକ ବିଦ୍ୟାଳୟରେ ପଢୁଥିଲି ସେତେବେଳେ ଶିକ୍ଷକମାନେ ମୋତେ ବହୁତ ଭଲ ପାଉଥିଲେ । ଆମେ ପିଲାମାନେ ଶିକ୍ଷକଙ୍କ ବହୁତ

ଭଲ ପାଉଥିଲୁ । କିନ୍ତୁ ଉଚ୍ଚ ବିଦ୍ୟାଳୟରେ ପଢ଼ିଲା ବେଳେ ଶିକ୍ଷକମାନଙ୍କ ପାଖରୁ ଏତେ ସ୍ନେହ ଓ ଶ୍ରଦ୍ଧା ମିଳିଲା ନାହିଁ, ସେମାନଙ୍କର ମାଡ଼ ଓ ଗାଳି ମୋତେ ବହୁତ ଭୟଭୀତ କରିଥିଲା । ମୋତେ ଯେତେବେଳେ ପିଲାଙ୍କୁ ପଢ଼ାଇବାର ଏକ ସୁଯୋଗ ମିଳିଛି, ସେଥିପାଇଁ କିପରି ପିଲାମାନଙ୍କୁ ମାଡ଼ ନଦେଇ ସ୍ନେହ ଓ ଶ୍ରଦ୍ଧା ସହକାରେ ପଢ଼ାଇ ହେବ ସେମିତି ପ୍ରୟୋଗ କରୁଛି । ଆମ ଗାଆଁ ବହିରୁ ପ୍ରଥମେ ଦୁଇ ମାସ ପିଲାଙ୍କୁ ପଢ଼ାଇଲି । ଏବେ ଅଗ୍ରଦୂତ, ଇଏ ବି ସଂସାର, ବନବାସୀ ପାଇଁ ବଣୁଆ ନୀତି, କୁଟୁମ୍ବ ପାଣ୍ଠି ବହିମାନ ପିଲାମାନେ ପଢୁଛନ୍ତି । ମୁଁ ସେମାନଙ୍କୁ କିପରି ବେଶି ପଢ଼ାଇ ପାରିବି ଚେଷ୍ଟା କରୁଛି । ଭବିଷ୍ୟତରେ ଏହି ଗାଆଁ କିପରି ଭଲ ବାଟକୁ ଆସି ପାରିବ ମୋର ସ୍ୱପ୍ନ ଅଛି ।

ଜଗା ମାଝୀ(ଗୁରୁଭାଇ)
ନବସୃଜନ ଶିକ୍ଷାକେନ୍ଦ୍ର, ହୁଡ଼େର



# ମୋର ଅନୁଭୂତି

ମୁଁ ଜଣେ ଗୁରୁ ଭାଇ । ମୋର ଶିକ୍ଷାକେନ୍ଦ୍ରର ନାମ ବରଡ଼ା ଯୋଡ଼ି । ଏହା ନବରଙ୍ଗପୁର ଜିଲ୍ଲାର ତେନ୍ତୁଳିଖୁଣ୍ଟି ବ୍ଲକ୍‌ରେ ଅବସ୍ଥିତ । ମୁଁ ଯେତେବେଳେ ଗୁରୁଭାଇ ଭାବେ ଆସିଲି ଗାଆଁ ଲୋକମାନଙ୍କ କଥା ବୁଝିବା ପାଇଁ ଅସୁବିଧା ହେଲା । ଲୋକମାନଙ୍କ ସହ ମିଟିଂ କଲି, ସେମାନଙ୍କ ସହ ପରିଚିତ ହୋଇଗଲି । ତା'ପରେ ମୋତେ କୁଇ ଭାଷା ଶିଖିବାକୁ ପଡିଲା । ତାଙ୍କର ଭାଷାରେ ପଢ଼ାଇବାରୁ ପିଲାମାନେ ଆଗ୍ରହ ସହ ପଢ଼ିବାକୁ ଆସିଲେ । ଗାଆଁର ଛରିଜଣ ମାଆ ଓ ତିନି ଜଣ ବାପାଙ୍କୁ ନେଇ ଗାଆଁ ଶିକ୍ଷା କମିଟି ଗଠନ ହେଲା । ସକାଳେ ଓ ସଂଧ୍ୟାରେ ପିଲାମାନଙ୍କୁ ପଢ଼ାଏ । ଅନ୍ୟ ସମୟରେ ଗାଆଁର ଯୁବକ ଓ ମହିଳାମାନଙ୍କୁ ଲେଖିବା ଏବଂ ପଢ଼ାଇବା ପାଇଁ ଡାକେ । ପିଲାମାନଙ୍କ ସହ ଡଙ୍ଗରକୁ ଜାଳେଣି କାଠ ଆଣିବା ପାଇଁ ଯାଏ । ପିଲାମାନଙ୍କ ସହ ଏକାଠି ବୁଲିବା ଓ ଖେଳିବା ଦ୍ୱାରା ସେମାନଙ୍କ ଭିତରୁ ଭୟ ଦୂର ହୋଇପାରିଛି ।

ବହୁତ କମ୍ ଦିନ ମଧ୍ୟରେ ଲୋକମାନଙ୍କର ପ୍ରିୟପାତ୍ର ହୋଇଗଲି, ଗାଆଁର ଜଣେ ସଦସ୍ୟ ହୋଇଗଲି । ମୋର ସୁବିଧା ଓ ଅସୁବିଧାରେ ସେମାନେ ସାହାଯ୍ୟ କଲେ ଏବଂ ମୁଁ ଲୋକମାନଙ୍କୁ ସାହାଯ୍ୟ କଲି । ଏବେ କୌଣସି ଲୋକ ଜ୍ୱରରେ ପଡିଲେ ତାଙ୍କ ପାଇଁ ଔଷଧ ଆଣି ଦେଉଛି । ଅତ୍ୟଧିକ ଜ୍ୱର ହେଲେ ତାଙ୍କୁ ଡାକ୍ତରଖାନା ନେବାକୁ ପଡୁଛି । ଗାଆଁରେ ଝାଡ଼ାବାନ୍ତି, ମ୍ୟାଲେରିଆ, କାଛୁକୁଣ୍ଡିଆ ଆଦି ରୋଗ ଆସିଲେ ସାଙ୍ଗେ ସାଙ୍ଗେ ଡାକ୍ତରଖାନାରୁ ଔଷଧ ଆଣି ମୋ ପାଖରେ ରଖୁଛି ଏବଂ ଲୋକମାନଙ୍କର ଅସୁବିଧା ବେଳେ ଦେଉଛି । ଲୋକମାନେ କିପରି ଗ୍ରାମସଭା ଓ ପଲ୍ଲୀସଭାରେ ଯୋଗଦେବେ ବହୁତ ବୁଝାଉଛି । ଲୋକମାନଙ୍କ ସହ ମିଶି ପଞ୍ଚାୟତରେ ହେଉଥିବା ବୈଠକମାନଙ୍କୁ ଯାଉଛି । ପଲ୍ଲୀସଭା କିପରି ଠିକ୍ ଭାବେ ହେବ ସେମାନଙ୍କ ବୈଠକରେ ମୁଁ ଯୋଗ ଦେଉଛି ।

ପିଲାମାନଙ୍କୁ ନେଇ ପ୍ରତି ସପ୍ତାହରେ ନଦୀ, ଝରଣା, ଜଙ୍ଗଲ ବୁଲାଇ ନେଉଛି । ସେମାନଙ୍କ ସହ ନାନା କଥାବାର୍ତ୍ତା ମାଧ୍ୟମରେ ନଦୀରୁ ହିଁ ପାଠ ପଢ଼ା ଆରମ୍ଭ କରୁଛି । ନଦୀରେ କିଏ ସବୁ ରହନ୍ତି, ସେମାନେ କ'ଣ ଖାଆନ୍ତି । ପିଲାମାନେ ତାହାସବୁ କହିଥାଆନ୍ତି । ଜଙ୍ଗଲ ଦେଖୁଥିବା ବିଭିନ୍ନ ଗଛ ପତ୍ର ବିଷୟରେ ପିଲାମାନଙ୍କୁ ପ୍ରଶ୍ନ କରି ସେ ବିଷୟରେ ବୁଝାଏ । କୌଣସି ପିଲା ଗଛର ନାମ ଭୁଲ୍ କରି କହିଲା ତେବେ ସେ କିପରି ତାକୁ ଠିକ୍ କରି ଜାଣିବ ଅନ୍ୟ ପିଲାଙ୍କୁ ପ୍ରଶ୍ନ କରି ପଚାରେ । ଏହାଦ୍ୱାରା ପିଲାମାନେ ଜାଣିଥିବା ଶବ୍ଦରୁ ଆରମ୍ଭ କରି ଅନେକ କଥା ଶିଖିଥାନ୍ତି । ଯେତେବେଳେ ଡ଼ଙ୍ଗର ଉପରେ ସବୁ ପିଲା ବୁଲୁଥିଲେ, ସେତେବେଳେ ମୁଁ ତାଙ୍କ ସାଙ୍ଗେ ସାଙ୍ଗେ ଥିଲି । ସେଠାରେ ମଝିରେ ମଝିରେ ମୁଁ ପିଲାମାନଙ୍କୁ ପଚାରେ ତୁମ୍ଭେମାନେ କ'ଣ କ'ଣ ସବୁ ଦେଖୁଛ ? ପିଲାମାନେ ବଢ଼ିଆ ଉତ୍ତର ସବୁ ଦେଉଥିଲେ । କିଏ କହୁଥିଲା ଛୋଟ ଛୋଟ ଗାଈ, ବଳଦ ପଡ଼ିଆରେ ଚରୁଛନ୍ତି, କିଏ କହୁଥିଲା ଛୋଟ ଛୋଟ ମଣିଷ ସବୁ ସେ ରାସ୍ତାରେ ଯାଉଛନ୍ତି, କିଏ କହୁଥିଲା ଜମିଗୁଡ଼ାକ କେତେ ସୁନ୍ଦର ଦେଖାଯାଉଛି ଏବଂ କେତେ କେତେ ଗଛ ଲତା ଓ ଡ଼ଙ୍ଗର ସବୁ ଲମ୍ବି ଯାଇଛି । ପିଲାମାନେ ଯାହାସବୁ କହୁଥିଲେ ତାହା ସଂଧ୍ୟାରେ ଆସି ପୁଣି ପଚାରୁ ଥିଲି । ସେଥିରୁହିଁ ପଢ଼ା ଆରମ୍ଭ ହେଉଥିଲା ।

ଆମେ ଯେତେବେଳେ ପ୍ରତି ମାସରେ ପଞ୍ଚାୟତର ପିଲାମାନେ ଏକାଠି ହେଉ ସେତେବେଳେ ସବୁ ଶିକ୍ଷାକେନ୍ଦ୍ର ବିଷୟରେ ଆଲୋଚନା ହୁଏ । ମାସ ସାରା କିଏ କ'ଣ ସବୁ କରିଛନ୍ତି ଆଲୋଚନା ହୁଏ । କେଉଁଠି ପିଲମାନେ ଗାଆଁ ସଫେଇ କରିଛନ୍ତି ତ ପୁଣି କେଉଁଠି ପିଲାମାନେ ହାଟ ବୁଲି ଯାଇଛନ୍ତି । ଏହାସହ ପିଲାମାନେ ନିଜେ କ'ଣ ସବୁ କରିଛନ୍ତି କହନ୍ତି । ପିଲାମାନଙ୍କର ଏକାଠି ହେବାଟା ସେମାନଙ୍କ ଆଗକୁ ଯିବାରେ ବହୁତ ସାହାଯ୍ୟ କରିବ ।

କର୍ଣ୍ଣାଥ ମାଝୀ(ଗୁରୁଭାଇ)
ନବସୃଜନ ଶିକ୍ଷାକେନ୍ଦ୍ର, ବରଡ଼ାଯୋଡି



# ମୋର ଅନୁଭୂତି ସମ୍ବନ୍ଧେ

ମୁଁ ସାନଚେକନା ଗ୍ରାମରେ ନବସୃଜନ ଶିକ୍ଷାକେନ୍ଦ୍ରର ଶିକ୍ଷକ ଭାବେ ୨୦୦୨ ମସିହା ଡିସେମ୍ବର ମାସରୁ ପଢ଼ାଇଲି । ସେତେବେଳେ ପିଲାମାନେ ଓଡ଼ିଆ ଭାଷା କେହି ବୁଝି ପାରୁନଥିଲେ । ସାନ ପିଲାମାନେ ଭୟରେ ଆସୁ ନଥିଲେ । ଗାଆଁ ଲୋକଙ୍କ ସହ ଏକ ବୈଠକ କରିବା ପରେ ବାପା ମାଆମାନେ ସବୁ ପିଲାଙ୍କୁ ନିୟମିତ ପଠାଇଲେ । ଏହାପରେ ମୁଁ ଏକ ଅସୁବିଧାର ସମ୍ମୁଖୀନ ହେଲି । ପିଲାମାନେ ଓଡ଼ିଆ ଭାଷା ଜାଣି ନାହାନ୍ତି, ସେମାନଙ୍କୁ ତାଙ୍କ ଭାଷାରେ ପଢ଼ାଇଲି ଯାହାଦ୍ୱାରା କି ପିଲାମାନେ କିଛି ଶିଖିପାରିବେ, କିନ୍ତୁ ଗାଆଁ ଲୋକଙ୍କ ଜିଦ୍ ପିଲାମାନଙ୍କୁ ଓଡ଼ିଆରେ ପଢ଼ାଅ । ଏହାପରେ ମୁଁ ପିଲାମାନଙ୍କୁ ପ୍ରଥମେ ଓଡ଼ିଆରେ ଡାକିଲି । ତାପରେ ଓଡ଼ିଆରେ କଥାବାର୍ତ୍ତା ହେଲି । ଏହି ଗାଆଁରେ ଲୋକମାନେ କେବଳ ପେଙ୍ଗ ଭାଷାରେ କଥାବାର୍ତ୍ତା ହୁଅନ୍ତି । ଯାହା ସବୁ କଥାବାର୍ତ୍ତା କରେ ପିଲାମାନଙ୍କୁ ତାଙ୍କ ନିଜ ଭାଷାରେ ବୁଝାଇ ଦିଏ ।

ପାଠ ପଢ଼ା ସମୟରେ ପିଲାମାନଙ୍କୁ ପେଙ୍ଗ ଭାଷାରେ ଶବ୍ଦକୁ ଓଡ଼ିଆରେ ଲେଖିବା ଶିଖାଏ । ଏବଂ ଓଡ଼ିଆରେ ବୁଝାଏ । ଏବେ ପିଲାମାନଙ୍କୁ ଓଡ଼ିଆ ଭାଷା ବୁଝିବାକୁ ସହଜ ହେଲାଣି, ପିଲାମାନେ ଓଡ଼ିଆ ଭାଷାରେ ଆଗ୍ରହରେ କଥାବାର୍ତ୍ତା କରୁଛନ୍ତି । କଥା କହିବାବେଳେ ଅଧିକାଂଶ ବାକ୍ୟରେ ଯେଉଁ ଶବ୍ଦ ଓଡ଼ିଆରେ ଆସୁନାହିଁ ସେଠି ପେଙ୍ଗ ଶବ୍ଦ ଲଗାଇ କହୁଛନ୍ତି । ମୋ ଶିକ୍ଷାକେନ୍ଦ୍ରରେ ପିଲାମାନେ ଗୀତ ଗାଇବା ପାଇଁ ଲାଜ କରୁଥିଲେ । ତେଣୁ ମୁଁ ଏକ ଉପାୟ ଚିନ୍ତା କରି ସେମାନଙ୍କୁ ଦଳ ଦଳ କରି ଦେଲି । ଗୋଟିଏ ଗୋଟିଏ ଦଳ ଗାଇବା ପାଇଁ କହିଥିଲି । ପ୍ରଥମରେ ସେମାନେ ନିଜ ଭାଷାରେ ଗୀତ ଗାଇ ଥିଲେ । ତା'ପରେ ସେମାନଙ୍କୁ ମୁଁ ଅନ୍ୟ ଗୀତ ସବୁ ଶିଖାଇ ଥିଲି । ଦେଖିଲି ଏହାର ବହୁତ ଫଳ ହେଲା । ପିଲାମାନଙ୍କର ଗୀତ ଗାଇବା ମଧ୍ୟ ଅଭ୍ୟାସ ହୋଇ ଗଲା ।

ଏହି ଗାଆଁର କୌଣସି ଜଣେ ହେଲେ ପିଲା ସରକାରୀ ସ୍କୁଲରେ ପଢ଼ିନାହାନ୍ତି । ମୁଁ ଏବର୍ଷ ଯେମିତି ହେଲେ କେତେଜଣ ପିଲାଙ୍କୁ ନେଇ ଆଶ୍ରମ ବିଦ୍ୟାଳୟରେ ଛାଡ଼ିବି ବୋଲି ଚିନ୍ତା କଲି । ଆମ ଶିକ୍ଷାକେନ୍ଦ୍ରର ଜଣେ ଛାତ୍ର ଶ୍ରୀ ଗୁରୁ ମାଝୀଙ୍କର ପାଠ ପଢ଼ିବା ପାଇଁ ବହୁତ ଆଗ୍ରହ ଦେଖିଲି, କିନ୍ତୁ ତାଙ୍କର ବାପା ମାଆ ବହୁତ ଗରିବ । ପିଲାଟିକୁ ବାହାରେ ନେଇ ପଢ଼ାଇବା ତାଙ୍କର ସକ୍ଷମ ନାହିଁ । ମୁଁ ବହୁତ ଚେଷ୍ଟା କଲି ପିଲାଟି କିପରି ସରକାରୀ ସ୍କୁଲରେ ପଢ଼ିବା ପାଇଁ । ଷ୍ଟାଣ୍ଡାର୍ଡ଼ ହୋଇଗଲେ ଆଶ୍ରମରେ ନେଇ ପଢ଼ାଇବି । ସେ ମଧ ନିଜେ ବହୁତ ଆଗ୍ରହ ସହ ପଢ଼ିଲେ । ମୋ ପାଖେ ପାଖେ ସବୁବେଳେ ରହି ସକାଳେ ସଂଧ୍ୟାରେ ଏବଂ ଖରାବେଳେ ଆସି ପଢ଼ାପଢ଼ି କଲେ । ସେ ନିଜେ ବହୁତ ଚେଷ୍ଟା କରି ୩ୟ ଶ୍ରେଣୀ ଷ୍ଟାଣ୍ଡାର୍ଡ଼ କରି ପାରିଲେ । ମତେ ବହୁତ ଖୁସି ମଧ ଲାଗିଲା । ତାଙ୍କୁ ଗୋରଖପୁର ଆଶ୍ରମ ବିଦ୍ୟାଳୟରେ ପଢ଼ାଇବା ପାଇଁ ମୁଁ ଉଦ୍ୟମ କଲି । ଘରର ଅଭାବ ଓ ଅନାଟନ ପାଇଁ ସେ ଗୋରଖପୁର ଯାଇ ନାମ ଲେଖାଇବାକୁ ବସ ଖର୍ଚ୍ଚ ନଥାଏ । ତେଣୁ ତାଙ୍କୁ ନେଇ ମୃଗା ମେସିନ୍‌ରେ କାମ କରୁଥିବା ଲୋକମାନଙ୍କ ସହ ସାମିଲ କରାଇଲି । ସେଠାରେ ସେ ୧୦ଦିନ କାମ କରି ୧୫୦ଟଙ୍କା ରୋଜଗାର କରି ଆଣିଲେ । ତା'ପରେ ତାଙ୍କୁ ଧରି ନେଇ ଗୋରଖପୁର ଠାରେ ପହଞ୍ଚିଲି । ସେଠାରେ ୪ର୍ଥ ଶ୍ରେଣୀ ପାଇଁ ମାତ୍ର ୩୦ଟି ସିଟ୍ କିନ୍ତୁ ୧୨୦ଜଣ ପିଲା ପରୀକ୍ଷା ଦେବା ପାଇଁ ଆସିଥିଲେ । ମୋର ବିଶ୍ୱାସ ହେଉନଥାଏ ଯେ ମୋର ପିଲାଟି ଏଥିରେ ଉତ୍ତୀର୍ଣ୍ଣ ହୋଇ ୪ର୍ଥରେ ନାମ ଲେଖାଇବ । ପରୀକ୍ଷା ହେଲା ସେଥିରେ ମୋର ଛାତ୍ର ଗୁରୁମାଝୀ ଉତ୍ତୀର୍ଣ୍ଣ ହୋଇ ୪ର୍ଥରେ ନାମ ଲେଖାଇବା ପାଇଁ ସ୍ଥିର ହେଲା । ମୁଁ ବହୁତ ଖୁସୀ ହୋଇଥିଲି । ୪ର୍ଥ ଶ୍ରେଣୀରେ ତାଙ୍କର ନାମ ଲେଖାଇ ମୋ ଶିକ୍ଷାକେନ୍ଦ୍ରକୁ ଫେରି ଆସିଲି । ଏହାଶୁଣି ଗାଆଁ ଲୋକମାନେ ବହୁତ ଖୁସୀ ହୋଇଥିଲେ । ଜଣେ ଶିକ୍ଷକ ପିଲାମାନଙ୍କ ପାଇଁ ଅଧିକ ସମୟ ଦେଇ ପାରିଲେ ପିଲାଙ୍କୁ ଆଗକୁ ଯିବାରେ ନିଶ୍ଚୟ ସାହାଯ୍ୟ କରି ପାରିବେ ।

ରାମଚନ୍ଦ୍ର ଭାତ୍ରା

ନବସୃଜନ ଶିକ୍ଷାକେନ୍ଦ୍ର, ସାନଚେକଣା



# ପରିଚୟ

**ନାମ:** ସୁଖିରାମ ସଗରିଆ

**ବାପା/ମା'ଙ୍କ ନାମ:** ରଘୁନାଥ ସଗରିଆ / ମଙ୍ଗଳି ସଗରିଆ

**ଘର ଠିକଣା:** ପୁରୁଣାଗୁମ୍ମା, ପୋ.ଅ.: କୁଡୁମୁଲୁଗୁମ୍ମା,
ଜିଲ୍ଲା: ମାଲକାନ୍‌ଗିରି

**ବୟସ:** ୨୧ବର୍ଷ

**ରୁଚି:** ଗୀତ ଗାଇବା, ବାଜା ବଜେଇବା

**ଶିକ୍ଷାଗତ ଯୋଗ୍ୟତା:** ଦଶମ ଶ୍ରେଣୀ

**ପଢ଼ିଥିବା ସ୍କୁଲର ନାମ:** ପ୍ରଥମରୁ ସପ୍ତମ କୁଡୁମୁଲୁଗୁମ୍ମା ଉନ୍ନୀତ ମଧ୍ୟ ଇଂରାଜୀ ବିଦ୍ୟାଳୟ ଓ ଅଷ୍ଟମରୁ ଦଶମ ଶ୍ରେଣୀ ସରକାରୀ ଉଚ୍ଚ ବିଦ୍ୟାଳୟ କୁଡୁମୁଲୁଗୁମ୍ମା ।

**ଅନ୍ୟାନ୍ୟ ଦକ୍ଷତା/ତାଲିମ୍:** ଏମ୍.ପି.ଟି. ତାଲିମ୍

**ଶିକ୍ଷାକେନ୍ଦ୍ରର ଠିକଣା:** ନବସୃଜନ ଶିକ୍ଷାକେନ୍ଦ୍ର, ଖୁଜରୀଗୁମ୍ମା, ପୋ: ବାଇଲଗୁମ୍ମା, ଭା: ଚିତ୍ରକୋଣ୍ଡା, ଜି: ମାଲକାନ୍‌ଗିରି

**ଶିକ୍ଷାକେନ୍ଦ୍ରର ସ୍ଥିତି:**

ଏହି ଶିକ୍ଷାକେନ୍ଦ୍ରରେ ମୋଟ ୩୦ଜଣ ଛାତ୍ରଛାତ୍ରୀ ପାଠ ପଢୁଛନ୍ତି । ଶିକ୍ଷାକେନ୍ଦ୍ରଟି ଭଲରେ ଚଳେଇବା ପାଇଁ ସାତ ଜଣିଆ ଶିକ୍ଷା କମିଟି ରଖାଯାଇଛି । ଏହି କମିଟିରେ ତିନି ଜଣ ମା' ଓ ଚାରିଜଣ ବାପା ଅଛନ୍ତି । ମାସକୁ ଥରେ ଶିକ୍ଷାକମିଟି ବୈଠକ ବସି ପିଲାମାନଙ୍କର ଅଭିଭାବକମାନଙ୍କୁ ପ୍ରତିଦିନ ପିଲାଙ୍କୁ ସ୍କୁଲ ପଠେଇବା ପାଇଁ ବୁଝାଉଛନ୍ତି । ପ୍ରତିଦିନ ଜଣେ ଜଣେ ଶିକ୍ଷା କମିଟିର ଯେକୌଣସି ସଭ୍ୟ/ସଭ୍ୟା ସ୍କୁଲ ପରିଦର୍ଶନ କରୁଛନ୍ତି । ଆମେ ଏଠାରେ ସକାଳ ଓ ସଂଧ୍ୟା ଦୁଇଓଳି ସ୍କୁଲ ଚଳାଉଛୁ ।

ପିଲାମାନଙ୍କୁ ଗୀତ, ଗପ, ହସଖୁସିରେ ପାଠ ପଢ଼ାଯାଉଛି । ପିଲାମାନଙ୍କର ଶିଶୁ ପାଣ୍ଠି ଅଛି ।

ଗାଁରେ ଖାଦ୍ୟ ସମସ୍ୟା ଦୂର କରିବା ପାଇଁ କୁଟୁମ୍ବ ପାଣ୍ଠି ମଧ୍ୟ ଚାଲିଛି । ଗାଁର ଲୋକମାନେ ଫସଲ ଅମଳ ସମୟରେ କିଛି କିଛି ଫସଲ ଯଥା; ମାଣ୍ଡିଆ, ଧାନ ପ୍ରଭୃତି ଗୋଟାଇ ରଖିଛନ୍ତି । ବରଷା ମାସ ଆସିଲେ ଆମର ଖାଦ୍ୟ ସରିଯାଉଛି । ଏହାପରେ ଆମେ ସେହି ପାଣ୍ଠିରୁ ନେଇ ଖାଉଛୁ । ଶିକ୍ଷାକେନ୍ଦ୍ରକୁ ସୁପରିଚାଳନା ନିମନ୍ତେ ତଥା ଆତ୍ମନିର୍ଭରଶୀଳ କରିବା ପାଇଁ ଆୟକାରୀ କାର୍ଯ୍ୟକ୍ରମ ଚାଲିଛି । ଏଥିରେ ଦୁଇବର୍ଷ ମଧ୍ୟରେ ଅଠରଶହ ଟଙ୍କା ଲାଭ ହୋଇଛି ।

**କେତେ ବର୍ଷ ହେଲା ଶିକ୍ଷକତା କରୁଛନ୍ତି ?** ୨ ବର୍ଷ ହେବ ।

**ମୁଁ ଶିକ୍ଷକ ହେଲି କାହିଁକି ?**

ପ୍ରକୃତରେ ମୁଁ ଜଣେ ଶିକ୍ଷକ ହେବି ବୋଲି କେବେ ଭାବିନଥିଲି । ଘରେ ଲୋକମାନେ ଟିକିଏ ଶିକ୍ଷିତ ଥିଲେ ପିଲାମାନେ ଯାହା ହେଲେବି ଶିକ୍ଷିତ ହେବେ ଏବେ ଏହା ଭାବିପାରୁଛି । ବାପା ମା' ମୋତେ ଛୋଟ ବେଳରୁ ପାଠ ପଢ଼ାଇବାରୁ ମୁଁ ଦଶମ ଶ୍ରେଣୀ ଯାଏଁ ପାଠ ପଢ଼ି କିଛି ଜ୍ଞାନ ଅର୍ଜନ କଲି । ଦଶମ ଶ୍ରେଣୀ ପାଠପଢ଼ିବା ପରେ ମୁଁ କିଛି କାମ କରିବି ବୋଲି ଭାବୁଥିଲି । ଘରେ କାମଦାମ କରୁଥାଏ, ଶୁଣିଲି ଯେ ଆମ ଅଞ୍ଚଳକୁ 'ମୋଡ଼' ନାମକ ଏକ ସଂସ୍ଥା ଆସିଛି । ସେମାନଙ୍କ ତରଫରୁ ଆମ ଅଞ୍ଚଳର ବିଭିନ୍ନ ଗ୍ରାମରେ 'ନବସୃଜନ ଶିକ୍ଷାକେନ୍ଦ୍ର' ଖୋଲିବାର ଯୋଜନା ଆସୁଛି । ସେଠାରେ ଶିକ୍ଷକ ନିଯୁକ୍ତି ପାଇଁ ଚେଷ୍ଟାକରି ସଫଳ ହେଲି । ମୋ ମତରେ ଛାତ୍ରଛାତ୍ରୀଙ୍କୁ ଶିକ୍ଷାଦେଇ ଭଲ ମଣିଷ କରିବା, ଲୋକଙ୍କୁ ଶିକ୍ଷାପ୍ରତି ସଚେତନ କରିବା, ନିରକ୍ଷରଙ୍କୁ ସାକ୍ଷର କରିବା ପାଇଁ ମୁଁ ଶିକ୍ଷକ ହେଲି ।

**ମୋର ଭବିଷ୍ୟତ ଲକ୍ଷ୍ୟ:**

ମୁଁ ଯେଉଁ ଶିକ୍ଷାକେନ୍ଦ୍ରରେ ଅଛି ସେହି ଶିକ୍ଷାକେନ୍ଦ୍ରର ଛାତ୍ରଛାତ୍ରୀଙ୍କୁ ଭଲରେ ଶିକ୍ଷା ଦେବି । ନିରକ୍ଷର ଲୋକଙ୍କୁ ସାକ୍ଷର କରିବି । ଗାଁର ଉନ୍ନତିମୂଳକ କାମ କରି ମୁଁ ଜଣେ ଭଲ ଗୁରୁଭାଇ ହେବା ପାଇଁ ଲକ୍ଷ୍ୟ ରଖିଛି ।

**ମୋ ବିଷୟରେ ବିଶେଷ ସୂଚନା:**

ମାଲକାନ୍‌ଗିରି ଜିଲ୍ଲାର କୁଡୁମୁଲୁଗୁମ୍ମା ବ୍ଲକର ପୁରୁଣାଗୁମ୍ମା ଗ୍ରାମରେ ମୋର

ଜନ୍ମ । ବାପାଙ୍କ ନାମ ରଘୁନାଥ ସଗରିଆ ଓ ମା'ଙ୍କ ନାମ ମଙ୍ଗଳି ସଗରିଆ । ବହୁତ ଗରିବ ପରିବାରରେ ଜନ୍ମ ହୋଇଥିବାରୁ ଉଚ୍ଚଶିକ୍ଷା ଲାଭ କରିପାରିଲି ନାହିଁ । ପ୍ରଥମରୁ ପଞ୍ଚମଶ୍ରେଣୀ ଯାଏଁ କୁଡୁମୁଲୁଗୁମ୍ମା ଉନ୍ନୀତ ମଧ ଇଂରାଜୀ ବିଦ୍ୟାଳୟରେ ଆଶ୍ରମରେ ରହି ପାଠ ପଢ଼ିଥିଲି । ପଞ୍ଚମ ଶ୍ରେଣୀ ଉତ୍ତୀର୍ଣ୍ଣ ହେଲାପରେ ଷଷ୍ଠ ଶ୍ରେଣୀରେ ପଢ଼ିବା ପାଇଁ ଗୋବିନ୍ଦପାଲ୍ଲୀ ସରକାରୀ ଉଚ୍ଚବିଦ୍ୟାଳୟରେ ନାମ ଲେଖାଇବା ପାଇଁ ଯାଇଥିଲି । ସେଠାରେ ମୋର ଦେହ ଖରାପ ହେବାରୁ ଫେରି ଆସି ପୁଣିଥରେ କୁଡୁମୁଲୁଗୁମ୍ମା ମଧ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇ ଷଷ୍ଠ ଶ୍ରେଣୀରେ ପଢ଼ିଲି । ସପ୍ତମ ଶ୍ରେଣୀ ପାସ୍ କଲାପରେ ସରକାରୀ ଉଚ୍ଚବିଦ୍ୟାଳୟରେ ଅଷ୍ଟମ ଶ୍ରେଣୀଠାରୁ ଦଶମ ଶ୍ରେଣୀ ଯାଏଁ ପଢ଼ିଲି । ଷଷ୍ଠ ଶ୍ରେଣୀରୁ ନିଜ ଘରେ ରହି ୨କି.ମି. ଦୂର ଚାଲି ଚାଲି ଯାଇ ପାଠ ପଢ଼ିଲି । ଦଶମ ଶ୍ରେଣୀ ଫେଲ ହୋଇ ଆର୍ଥିକ ଅସୁବିଧା ହେତୁ ଆଉ ପରୀକ୍ଷା ଦେଇ ପାରିଲି ନାହିଁ । ଘରେ ଚାଷ କାମ କରୁଥିଲି । କୁଡୁମୁଲୁଗୁମ୍ମା ବ୍ଲକ୍ ଅନ୍ତର୍ଗତ ବଡ଼ପଦର, ପାପର୍‌ମେଟ୍‌ଲା ପଞ୍ଚାୟତରେ 'ମୋଡ଼' ସଂସ୍ଥା ତରଫରୁ ସ୍କୁଲ ଖୋଲିବାରୁ ମୁଁ ସେହି ସ୍କୁଲରେ ନିଯୁକ୍ତି ପାଇ ଖଜୁରୀଗୁମ୍ମା ଗ୍ରାମରେ 'ଗୁରୁଭାଇ' ହିସାବରେ ବର୍ତ୍ତମାନ କାମ କରୁଛି ।

**ମୋ ଶିକ୍ଷକ ଜୀବନର ଅନୁଭୂତି:**

'ମୋଡ଼' ସଂସ୍ଥା ତରଫରୁ ଯେତେବେଳେ ଶିକ୍ଷାକେନ୍ଦ୍ରମାନ ଖୋଲାଗଲା । ଶିକ୍ଷକ ନିଯୁକ୍ତି ପାଇଁ ଇଣ୍ଟରଭ୍ୟୁ କରାଗଲା । ଇଣ୍ଟରଭ୍ୟୁରେ ଯୋଗଦେଇ ଗୁରୁଭାଇ ଭାବେ ମୁଁ ନିଯୁକ୍ତି ପାଇଲି । ପ୍ରଥମେ ଗୁରୁଭାଇ ଭାବେ ସାରିଆପଲ୍ଲୀ ଗାଁରେ ରହିଛି । ସେହି ଗାଁରେ ଆଗରୁ ସ୍କୁଲ ଚାଲିଥିଲା । ସେହି ଗାଁର ଜଣେ ଗୁରୁଭାଇ ପାଠ ପଢ଼ାଉଥିଲେ । କୌଣସି କାରଣରୁ ସେହି ଗାଁର ଗୁରୁଭାଇ ସ୍କୁଲ ଛାଡ଼ିଦେବାରୁ ମୋତେ ସେଠାରେ ପାଠ ପଢ଼ାଇବା ପାଇଁ ପଠାଗଲା । ସାରିଆପଲ୍ଲୀ ଗାଁକୁ ଯେତେବେଳେ ଗଲି ପ୍ରଥମେ ଲୋକମାନଙ୍କ ସହ ଚିହ୍ନାପରିଚୟ ହେଲା । ମିଟିଂ କରି କହିଲି ଯେ ମୁଁ ତୁମ ଗାଁକୁ ଗୁରୁଭାଇ ହୋଇ ଆସିଲି; ତୁମ ଗାଁରେ ରହି ପିଲାମାନଙ୍କୁ ପାଠ ପଢ଼ାଇବି । ତା'ପରେ ସେହି ଗାଁରେ ରହି ପିଲାମାନଙ୍କ ବାପା ମା'ଙ୍କୁ ଡାକି ବୁଝାଇସୁଝାଇ ପାଠ ପଢ଼ାଇବା ଆରମ୍ଭ କଲି । ଖାଦ୍ୟ ସମସ୍ୟା ଦୂର କରିବା ପାଇଁ ଲୋକଙ୍କୁ ବୁଝାଇ 'କୁଟୁମ୍ବ ପାଣ୍ଠି' ଗଠନ କରାଇଲି । ଗାଁର ଯୁବକମାନଙ୍କୁ ଠିକ୍ କରି ସେମାନଙ୍କୁ ବୁଝାଇ ଯୁବକସଂଘ ମଧ ଗଠନ କରାଇଥିଲି । ଗାଁ ମଝିରେ ଗୋଟିଏ କୂଅ ଥିଲା । ସେହି କୂଅରେ ବହୁତ

ମଇଳା ଜମି ପାଣି ବହୁତ ଅପରିଷ୍କାର ହୋଇଥିଲା । ଗାଁ ଲୋକଙ୍କୁ ଡ଼ାକି ମିଟିଂ କରି କୂଅ ସଫା କରିବା କଥା ବୁଝାଇଲି । ତା'ପରେ ଯୁବକସଂଘ ପିଲାମାନଙ୍କ ଦ୍ୱାରା କୂଅ ସଫା କରାଇଲି । ଗାଁ ମଝିରେ ଥିବା ରାସ୍ତା ସଫା କରାଇଲି । ଏହି ଗାଁରେ ଛଅ ମାସ ଥିଲା ପରେ ମୋର ପାପର୍‌ମେଟ୍‌ଲା ପଞ୍ଚାୟତର ଖଜୁରୀଗୁମ୍ଫା ଗାଁକୁ ବଦଳି ହେଲା ।

ଏହି ଖଜୁରୀଗୁମ୍ଫା ଗାଁରେ ଆଗରୁ ଜଣେ ଗୁରୁଭାଇ ରହି ଛ'ମାସ ସ୍କୁଲ ପରିଚାଳନା କରିଥିଲେ । ତା'ପରେ ମୁଁ ଯାଇ ସେହି ଗାଁରେ ଲୋକଙ୍କ ସାଙ୍ଗରେ ଚିହ୍ନାପରିଚୟ ହୋଇ ମିଟିଂ କରି ଗାଁରେ ରହିଲି । ସମସ୍ତ ବାପା ମା'ଙ୍କୁ ବୁଝାଇଲି ଯେ ପିଲାମାନଙ୍କୁ ସ୍କୁଲକୁ ଯେମିତି ହେଲେ ପଠାଅ । ମୁଁ ଗଲା ପରେ ଧାନ, ମାଣ୍ଡିଆ ଇତ୍ୟାଦି ଉଠାଇ ଡୁଡିରେ ରଖାଗଲା । ଆୟକାରୀ ପନ୍ଥାରେ ପଇସାକୁ କ'ଣ କଲେ ଲାଭ ହେବ ଲୋକଙ୍କୁ ବୁଝାଇ ବ୍ୟାଙ୍କରୁ ୪୦୦୦ଟଙ୍କା ଉଠାଇ ବ୍ୟବସାୟ କରିବାରୁ ୯୦୦ ଟଙ୍କା ଲାଭ ହେଲା । ଏହାପରେ ଲୋକଙ୍କର ଆଗ୍ରହ ଏଥିପ୍ରତି ବଢ଼ିଗଲା । ସେମାନେ ଏବର୍ଷ ପୁଣି ବ୍ୟାଙ୍କରୁ ୫୦୦୦ଟଙ୍କା ଉଠାଇ ବ୍ୟବସାୟ କରି ୮୦୦ଟଙ୍କା ଲାଭ ପାଇଛନ୍ତି । ଏଥିରେ ମୋତେ ମଧ୍ୟ ବହୁତ ସହଯୋଗ କରିବାକୁ ପଡିଲା ।

ଗାଁରେ ଅଙ୍ଗନବାଡ଼ି ଖାଦ୍ୟ ଠିକ୍‌ରେ ପହଞ୍ଚି ପାରୁନଥିଲା । ଶିଶୁଖାଦ୍ୟ ଯାହା ଆସୁଥିଲା ଅଙ୍ଗନୱାନି ହେଲ୍‌ପର୍ ତାହା ବିକ୍ରି କରି ନିଜେ ଆତ୍ମସାତ୍ କରୁଥିଲା । ଗାଁରେ ମିଟିଂ କରି ଲୋକମାନଙ୍କୁ ଏ ବିଷୟରେ ବୁଝାଇଲି ଓ ଅଙ୍ଗନବାଡ଼ି ଦିଦି ପାଖକୁ ମୁଁ ନିଜେ ଯାଇ ଏବିଷୟ ପଚାରି ବୁଝି ହେଲ୍‌ପର୍‌ଙ୍କୁ ଡାକି ବୈଠକରେ ଖାଦ୍ୟ ବିଷୟରେ ପଚରାଯାଇଥିଲା । କିନ୍ତୁ ସେ ଲୋକଙ୍କ କଥା ମାନିଲା ନାହିଁ । ତେଣୁ ତା' ବଦଳରେ ଅନ୍ୟ ଜଣକୁ ରଖିବା ପାଇଁ ବୈଠକରେ ନିଷ୍ପତ୍ତି ନିଆଗଲା । ସେହି ଗାଁରେ ଜଣେ ଲୋକଙ୍କୁ ସମସ୍ତେ ବାଛିଲେ । ତାଙ୍କ ନାମରେ ଶିଶୁଖାଦ୍ୟ ଦିଆଯାଉ ବୋଲି ଏକ ଦରଖାସ୍ତ ଲେଖାଗଲା । ସି.ଡି.ଏସ୍. ଅଫିସ୍‌କୁ ଦିଆଗଲା । ହେଲ୍‌ପର୍ ବଦଳି କରାଯାଇ ନୂଆ ହେଲ୍‌ପର୍ ହେଲା । ବର୍ତ୍ତମାନ ଗାଁରେ ଶିଶୁଖାଦ୍ୟ ଭଲ ଭାବରେ ପିଲାମାନେ ଯାଇ ପାରୁଛନ୍ତି । ଏମିତି ମୁଁ ଗାଁରେ ଉନ୍ନତିମୂଳକ କାମମାନଙ୍କରେ ଭାଗ ନେଇଛି ଓ ନେବି ବୋଲି ଭାବୁଛି । ଏତିକି ମୋର ଅନୁଭୂତି ।

□□□

# ପରିଚୟ

**ନାମ: ଜୋଛନା ଦାଶ**

**ବାପା/ମାଆଙ୍କ ନାମ:** ବଟକୃଷ୍ଣ ଦାଶ / ଚନ୍ଦ୍ରମଣି ଦାଶ

**ଘର ଠିକଣା: ଗ୍ରା/ପୋ.:** ଟିକିରି, ଭାୟା/ଜିଲ୍ଲା: ରାୟଗଡା (ଓଡ଼ିଶା)

**ବୟସ: ୨୨ ବର୍ଷ**

**ରଚି: ଗୀତ ଗାଇବା**

**ଶିକ୍ଷାଗତ ଯୋଗ୍ୟତା:** ମାଟ୍ରିକ୍ ପାସ୍

**ପଢ଼ିଥିବା ସ୍କୁଲର ନାମ:** ଉଚ୍ଚ ଇଂରାଜୀ ବିଦ୍ୟାଳୟ, ଟିକିରି

**ଅନ୍ୟାନ୍ୟ ଦକ୍ଷତା / ତାଲିମ୍:** ଅଗ୍ରଗାମୀଠାରେ ଶିକ୍ଷକ ତାଲିମ୍ ୪ଥର

**ଶିକ୍ଷାକେନ୍ଦ୍ରର ଠିକଣା:** ନବସୃଜନ ଶିକ୍ଷାକେନ୍ଦ୍ର, ଗ୍ରା: ଭୋଜାପଦର, ପୋ: ମୁଜାଙ୍ଗ, ଭା: ଲକ୍ଷ୍ମୀପୁର, ଜି: କୋରାପୁଟ (ଓଡ଼ିଶା)

**କେତେବର୍ଷ ହେଲା ଶିକ୍ଷକତା କରୁଛନ୍ତି: ୨ ବର୍ଷ**

**ମୁଁ ଶିକ୍ଷକ ହେଲି କାହିଁକି ?**

ମୁଁ ପାଠ ପଢ଼ି ବେକାର ନରହି ଲୋକଙ୍କୁ କିଛି ଶିଖେଇବା ସହ ନିଜେ କିଛି ରୋଜଗାର କରିପାରିବି ବୋଲି ।

**ମୋର ଭବିଷ୍ୟତ ଲକ୍ଷ୍ୟ:**

ମୁଁ ଅନେକ କଥା ଭାବି ଗାଁ ଲୋକଙ୍କ ସଙ୍ଗେ ଆଲୋଚନା କରିଛି । ଏହି ଗାଁରେ ରହି ହିଁ ପିଲାଙ୍କୁ ପଢ଼େଇବା ସହ ଗାଁର ସମସ୍ୟାଗୁଡିକର ସମାଧାନର ପନ୍ଥା ଖୋଜିବୁ ।

ମୋ ବିଷୟରେ ବିଶେଷ ସୂଚନା: ମୁଁ ହେଉଛି ମୋ ବାପା ମା'ଙ୍କ ବଡ଼ ଝିଅ । ଆମ ଗାଁ ହେଉଛି ରାୟଗଡାର ଟିକିରି । ମୁଁ ଆମ ଗାଁରେ ଥିବା ପ୍ରାଥମିକ ଓ ଉଚ୍ଚ ବିଦ୍ୟାଳୟରେ ପାଠ ପଢ଼ିଛି । ଦଶମ ଶ୍ରେଣୀ ପରୀକ୍ଷାରେ ପାସ୍ କରିବା ପରେ ବାପାଙ୍କ ବଦଳି ହେବା ଯୋଗୁଁ ଆମକୁ ପୋଡ଼ାଗଡ଼ ଯିବାକୁ ପଡିଲା । ଏଥିମଧ୍ୟରେ ମୋ ପରୀକ୍ଷା ଫଳ ବାହାରିବାର ବିଳମ୍ବ ହେତୁ ମୁଁ କଲେଜ୍‌ରେ ନାମ ଲେଖାଇ ପାରିଲି ନାହିଁ । ଏତିକିରେ ମୋର ପାଠପଢ଼ାରେ ଡ଼ୋରି ବନ୍ଧା ହେଲା । କିନ୍ତୁ ମୋର ଗୋଟିଏ ଭାଇ ଓ ଗୋଟିଏ ଭଉଣୀ ପୋଡ଼ାଗଡ଼ରୁ କୋରାପୁଟ ଯା'ଆସ କରି କଲେଜ୍‌ରେ ପଢୁଥିଲେ । ମୋତେ ପଢ଼ାଇବା ପାଇଁ ମୋ ବାପାଙ୍କ ଇଚ୍ଛା ଥିଲେ ମଧ୍ୟ ତିନିଜଣ ଏକାଥରକେ ପ୍ରତିଦିନ କୋରାପୁଟ ଯା'ଆସ କରିବା ସମ୍ଭବ ନଥିଲା । ସେତେବେଳେ ମୁଁ ଭାବିଲି ଯେ ହଉ ଠିକ୍ ଅଛି, ମୁଁ ନ ପଢ଼ିଲେ ନାଇଁ, ମୋ ଭାଇଭଉଣୀ ତ ପଢୁଛନ୍ତି । କିନ୍ତୁ ଏବେ ପ୍ରକୃତରେ ମୋତେ ଅନୁତାପ କରିବାକୁ ପଡୁଛି । ମୋ ବାପା ମଧ୍ୟ ମୁଁ ପାଠ ବେଶୀ ପାଠ ନପଢ଼ିଥିବାରୁ ଦୁଃଖିତ । ସେ ଯାହା ହେଉ, ମୁଁ ଏପରି ସମୟରେ ହିଁ ଅଗ୍ରଗାମୀରେ ଯୋଗ ଦେଲି । ପୂର୍ବଅପେକ୍ଷା ମୋର ବିଶେଷ ଉନ୍ନତି ହୋଇଛି ଓ ଅଗ୍ରଗାମୀରେ ଯୋଗ ଦେଇ ମୁଁ ଲେଖାଲେଖି କରିବା ଶିଖିଛି । ଆଗରୁ କେବେ ଗୀତ, ଗପ, ଲେଖିନଥିଲି । ବର୍ତ୍ତମାନ ତାହା କରିବାକୁ ଚେଷ୍ଟା କରୁଛି । ମୁଁ ସଂପୂର୍ଣ୍ଣ ଆଦିବାସୀ ଅଞ୍ଚଳରେ ଜନ୍ମ ହୋଇଥିଲେ ମଧ୍ୟ ମୁଁ ସେମାନଙ୍କ ସହ ମିଶି ନଥିଲି କିମ୍ବା ସେମାନଙ୍କ ବିଷୟରେ କେବେ ଭାବି ପାରିନଥିଲି । କିନ୍ତୁ ବର୍ତ୍ତମାନ ମୁଁ ଏହି ଅଞ୍ଚଳର ଲୋକଙ୍କ ଭାଷା ବୁଝିପାରିବା ସହ ସେମାନଙ୍କ ସହ ପୂରା ମିଶି ଯାଇଛି । ଏହି ଗାଁର ତଥା ପିଲାଙ୍କର ପରିବର୍ତ୍ତନ ଦେଖି ମୁଁ ଆନନ୍ଦିତ । ମୁଁ ପୂର୍ବରୁ କାହାଘରେ ରହିବାକୁ ପସନ୍ଦ କରୁନଥିଲି (ନିଜ ସଂପର୍କୀୟ), କାହା ସହ ମିଶିବାକୁ ପସନ୍ଦ କରୁନଥିଲି । ଜାତିଭେଦ ମଧ୍ୟ ମନରେ ଥିଲା । କିନ୍ତୁ ଅଗ୍ରଗାମୀରେ କାମ କରିବା ପରଠୁ ସେସବୁ ଆଉ ମନ ମଧ୍ୟରେ ଆଦୌ ନାହିଁ । ଏହି ଗାଁର ଲୋକଙ୍କ ସହ ନିଜ ଲୋକ ପରି ରହିଛି । ପୂର୍ବ ଅପେକ୍ଷା ମୋର ଅନୁଭୂତି ବଢ଼ିଛି, ସାହସ ବଢ଼ିଛି ।

**ମୋ ଶିକ୍ଷକ ଜୀବନର ଅନୁଭୂତି:**

ମୁଁ ମାଟ୍ରିକ୍ ପାଶ୍ କଲାପରେ କିଛି ଦିନ ଘରେ ରହିବା ପରେ ଅଗ୍ରଗାମୀର 'ନବସୃଜନ ଶିକ୍ଷାକେନ୍ଦ୍ର'ରେ ଗୁରୁଭଉଣର ଭାବରେ ଏହି ଭେଜାପଦର ଗାଁରେ ନିଯୁକ୍ତି ପାଇଲି । ଏହି ଗାଁକୁ ପୂର୍ବରୁ ମୁଁ କେବେ ଦେଖି ନଥିଲି । ପ୍ରଥମେ ବାପାଙ୍କ ସହ ଆସି

ଗାଁଲୋକଙ୍କ ସହ ବୈଠକ କରି ଫେରିଗଲି । ଆଗରୁ ମଧ୍ୟ ଏହି ଗାଁଲୋକଙ୍କ ସହ ମୋର ଆଦୌ ସମ୍ପର୍କ ନଥିଲା । ସେମାନଙ୍କ ସୁବିଧା ଅସୁବିଧା ବିଷୟରେ ମଧ୍ୟ କେବେ ଭାବି ନଥିଲ । ପରେ ଯେତେବେଳେ ଏହି ଗାଁରେ ମୁଁ ରହିଲି ସେମାନଙ୍କ ସୁବିଧା ଅସୁବିଧା କଥା ବୁଝିଲି ।

ସ୍କୁଲ୍ ଆରମ୍ଭ କରିବା ପରେ ଏହି ପିଲାମାନଙ୍କୁ କିପରି ମୁଁ ପାଠ ପଢ଼େଇବି, ମୋର ଭାରି ଚିନ୍ତା ହେଲା । ମୁଁ ଏହାପୂର୍ବରୁ କୌଣସି ତାଲିମ୍ ପାଇନଥିଲି । ଏହି ଶିକ୍ଷାକେନ୍ଦ୍ରରେ ପଢୁଥିବା ପିଲାଙ୍କ ଭିତରୁ ଜଣକ ଛଡ଼ା ଆଉ କେହି 'ଅକ୍ଷର' କ'ଣ କିଛି ଜାଣି ନଥିଲେ କିମ୍ବା ଦେଖି ନଥିଲେ । ପ୍ରଥମେ ସ୍କୁଲ୍‌ରେ ୩୧ ଜଣ ପିଲା ନାମ ଲେଖେଇଲେ । ଏକାଥରେ ଏତେଗୁଡ଼ା ପିଲାଙ୍କୁ ପଢ଼େଇବାକୁ ଅସୁବିଧା ଲାଗିଲା । କୌଣସି ଝିଅ ମଧ୍ୟ ଆଗରୁ ପଢ଼ି ନଥିଲେ । ଏଠାରେ ୧୩ଜଣ ଝିଅ ଓ ୧୮ଜଣ ପୁଅ ନାମ ଲେଖାଇଥିଲେ । ପ୍ରଥମେ ସେମାନଙ୍କୁ ଅକ୍ଷରସବୁକୁ ଓ ୧ରୁ ୧୦ଯାଏଁ ଶିଖାଇବାକୁ ବହୁତ କଷ୍ଟ ଲାଗିଲା । କାରଣ ଅସଲ କଥା ହେଉଛି ମୁଁ ସେମାନଙ୍କ ଭାଷା ଶିଖି ନଥିଲି । ତେଣୁ ମୁଁ ଧୀରେ ଧୀରେ ପିଲା ଓ ଲୋକଙ୍କ ସହ ମିଶି ସେମାନଙ୍କ ଭାଷାକୁ ଆୟତ୍ତ କରିବାକୁ ଚେଷ୍ଟା କଲି । ପରେ ପରେ ମୋତେ ସବୁକିଛିଇ ସହଜ ଲାଗିଲା ଓ ଖୁସିରେ ରହିଲି ।

ଜଣେ ଶିକ୍ଷକ ହେଲେ ଛାତ୍ରର ମନକୁ ପ୍ରଥମେ ବୁଝିବାକୁ ଚେଷ୍ଟା କରିବା ଉଚିତ । ମୁଁ ପାଠ ପଢୁଥିବା ସମୟରେ ବେଳେବେଳେ ମୋ ସାନଭାଇମାନଙ୍କୁ ପଢ଼ାଉଥିଲି । ଯଦି ସେ କୌଣସି ପ୍ରଶ୍ନର ଉତ୍ତର ଠିକ୍ କହିପାରିଲା ନାହିଁ ମୁଁ ତାକୁ ପିଟି ପକାଉଥିଲି ଓ ମୁଁ ନିଜେ ମଧ୍ୟ ଆଉ ପଢୁ ନଥିଲି । ସେତେବେଳେ ମୁଁ ବୁଝିପାରି ନଥିଲି ଯେ ତାକୁ ନ ମାରି ଠିକ୍ ଉତ୍ତର ବୁଝେଇଦେବା ହିଁ ମୋର କର୍ତ୍ତବ୍ୟ । ସମସ୍ତେ କହନ୍ତି ଛାଟ ନଖାଇଲେ ପାଠ ଆସିବନି; ମାଡ଼ ଖାଇଲେ ହିଁ ପଢ଼ିବାକୁ ମନହେବ । ମୋର କିନ୍ତୁ ସେଥିରେ ଆଦୌ ବିଶ୍ୱାସ ନାହିଁ । ପିଲାଙ୍କୁ ମାଡ଼ ନମାରି, ଡ଼ର ଭୟ ନଦେଖାଇ ସେମାନଙ୍କ ଇଛା ଅନୁସାରେ ପାଠ ପଢ଼ାଇଲେ ସେମାନେ ଆହୁରି ଭଲ ପଢ଼ନ୍ତି ଓ ନୂଆ ନୂଆ କଥା ଶିଖିବାକୁ ଆଗ୍ରହ ପ୍ରକାଶ କରନ୍ତି । ପିଲା ଯଦି କ'ଣ ଗୋଟେ ପଚାରୁଛି ଆମେ ଗୁରୁଭାଇ / ଭଉଣୀମାନେ ସେମାନଙ୍କ ଉପରେ ବିରକ୍ତ ନହୋଇ ସେମାନଙ୍କୁ ଖୁସିରେ ଶିଖେଇବା ଦରକାର । ଅଗ୍ରଗାମୀରେ କାମ କରି ମୁଁ ଏହି କଥାଟିକୁ ଖୁବ୍ ଭଲ ଭାବରେ ଶିଖିପାରିଛି । ଏହି ଗାଁରୁ ମଧ୍ୟ ମୁଁ ଅନେକ କଥା ଶିଖିପାରିଛି । ଅନୁଷ୍ଠାନର

ନିୟମାବଳୀ ମଧ୍ୟ ଭଲ ଲାଗୁଛି । ଯଦି ସମାଜର କିଛି ପରିବର୍ତ୍ତନ ପାଇଁ କାମ କରିବାକୁ ହୁଏ ତେବେ କିଛି ତ୍ୟାଗ ମଧ୍ୟ କରିବାକୁ ପଡ଼ିଥାଏ । ମୁଁ ଶିକ୍ଷକ ହେବା ପରେ ଭାବେ ଆଗ ଅପେକ୍ଷା ବର୍ତ୍ତମାନ ମୋର ଅନେକ ପରିବର୍ତ୍ତନ ହେବା ସହ ଅନେକ ଭଲ କଥା ଶିଖିପାରିଛି ଓ କିଛି ପିଲାଙ୍କୁ ଶିଖେଇ ପାରିଛି । ତେଣୁ ମୁଁ ଆନନ୍ଦିତ । ପ୍ରକୃତରେ ଶିକ୍ଷକ ହେଲେ କିଭଳି ହେବା ଦରକାର ଓ ପିଲାଙ୍କୁ କିପରି ପଢ଼େଇବା ତାହା ଭଲ ଭାବରେ ବୁଝିପାରିଛି । ଯଦି ଆମେ କୌଣସି କଥାକୁ ଖାମ୍‌ଖିଆଲି ଭାବେ ଭାବିବା ତା'ହେଲେ କିଛି କରିପାରିବାନି ।

ଆମେ ଗାଁର ଉନ୍ନତି ପାଇଁ ପିଲାଙ୍କୁ ପାଠ ପଢ଼େଇବା ସହ ଅନ୍ୟାନ୍ୟ ବିଷୟ ମଧ୍ୟ ଶିକ୍ଷାଦେବା । ଯଦି ଆମେ ଅନ୍ୟକୁ ଦେଖି, ଅନ୍ୟମାନେ ଯେମିତି କାମରେ ଅବହେଳା କରୁଛନ୍ତି ଆମେ ସେମିତି କଲେ ଆମ ସମାଜର ଉନ୍ନତି ହେବ କି ? କଦାପି ନୁହେଁ । ଏକଥା ଯଦି ସମସ୍ତେ ଭାବନ୍ତେ ସତରେ ଆମ ଦେଶ ସୁନାରେ ପରିଣତ ହୋଇଯାଆନ୍ତା । ଲୋକେ ଏତେ ଦୁଃଖ ଦାରିଦ୍ର୍ୟରେ ସଢ଼ନ୍ତେ ନାହିଁ । ବର୍ତ୍ତମାନ ଲୋକେ କେବଳ ନିଜର ସ୍ୱାର୍ଥ ହାସଲ ପାଇଁ ବ୍ୟସ୍ତ । ପଡ଼ୋଶୀ କଥା କିଏ ଭାବିବ ? ସେପରି କଲେ ଆମ ଅସୁବିଧା ବେଳେ କିଏ ଆମ ପାଇଁ ଆଗେଇ ଆସିବ । ତା'ବୋଲି କ'ଣ ଆମେ ନିଜର ସୁବିଧା ଅସୁବିଧା ନଦେଖି ଦେଶସେବାରେ ଲାଗିପାରିବା କି ? ତା'ତ ନୁହେଁ; ତଥାପି ଆମେ ଯେତିକି କରିବା କଥା ତାହା ନିଶ୍ଚିତ କରିବା ଉଚିତ । ଏଠାରେ ମୁଁ ଗୋଟେ କଥା ଲେଖିବାକୁ ଚାହେଁ । ମୋ ଶିକ୍ଷାକେନ୍ଦ୍ରଠାରୁ ଆଠ କି.ମି. ଦୂରରେ ସାପ୍ତାହିକ ହାଟ ହୁଏ । ସମସ୍ତେ ସାପ୍ତାହିକ ହାଟ କରିବାକୁ ଯାଆନ୍ତି । ମୁଁ ମଧ୍ୟ ଯାଏ । ହାଟ କରି ଫେରିଆସେ । ମୋତେ କେତେଜଣ କହନ୍ତି ଆଜି ତମର ସାପ୍ତାହିକ ଛୁଟି । ଆଜି ଏଠାରେ ରହିଯା' । ମୁଁ ମନା କଲେ ସେମାନେ କହନ୍ତି ତୁ ଜଣେ ଏକା ଚାକିରି କରିଛୁ ନା ଆହୁରି କିଏ କରିଛନ୍ତି । ଅନ୍ୟମାନେ ତ ଡରୁନାହାନ୍ତି, ତୋତେ କାହିଁକି ଏତେ ଡ଼ର ଲାଗୁଛି ? ମୁଁ କ'ଣ ଡରିକି ରହେନି ନା ମୋତେ ବୁଲିବାକୁ ମନ ନାହିଁ । ମୋତେ କାମ ନଥିଲେ ବେକାର ବୁଲିବାକୁ ଭଲ ଲାଗେ ନାହିଁ ଏବଂ ମୁଁ ନଥିବା ସମୟରେ ପରିଦର୍ଶନରେ କିଏ ଆସିବେ, ଗୁରୁଭଉଣୀ ନାହିଁ ବୋଲି କହି ପରିଦର୍ଶନ ଖାତାରେ ଯେଉଁ କେତେ ଧାଡ଼ି ଲେଖିବେ ସେ କେତୋଟି ଧାଡି ମୁଁ ଖାତାରେ ଦେଖିବାକୁ ଚାହେଁନା । ସେ ଯାହା ହେଉ ମୁଁ ଗୁରୁଭଉଣୀ ହେବାପରେ ଏ ଅଞ୍ଚଳର କିଛି ପରିବର୍ତ୍ତନ କରିପାରିଥିବାରୁ ଆନନ୍ଦିତ ହେବା ସହ ଯାହାଦ୍ୱାରା ଏହା ସମ୍ଭବ ହୋଇପାରିଲା ସେହି

'ଅଗ୍ରଗାମୀ'କୁ ମୋର ଅଶେଷ ଧନ୍ୟବାଦ । ଏହି ଅନୁଷ୍ଠାନ ତରଫରୁ ଶିକ୍ଷୟିତ୍ରୀ ଭାବେ ନିଯୁକ୍ତି ପାଇବା ପରେ ମୁଁ ଭଲ ଚିତ୍ର କରିବା ଓ କିଛି ଲେଖାଲେଖି କରିବା ମଧ୍ୟ ଶିଖିପାରିଛି । ବିଭିନ୍ନ ଅଞ୍ଚଳର କଥା, ସମସ୍ୟା ମଧ୍ୟ ଜାଣିପାରିଛି । ଆହୁରି ଶିଖିବି ବୋଲି ମଧ୍ୟ ଆଶା ରଖିଛି ।

ପ୍ରଥମେ ଯେତେବେଳେ ମୁଁ ଏହି ଗାଁକୁ ଆସିଲି ରହିବାକୁ ଆଦୌ ଭଲ ଲାଗୁ ନଥିଲା । ବିରକ୍ତ ଲାଗୁଥିଲା ଓ ଘରକୁ ଗଲେ ଆସିବାକୁ ମନ ହେଉନଥିଲା । କିନ୍ତୁ ଗାଁର ଲୋକମାନଙ୍କ ସହ ମିଶିଯିବା ପରେ ବହୁତ ଭଲ ଲାଗୁଛି । ଏମାନଙ୍କ ଜୀବନ ପ୍ରକୃତରେ କେତେ ଛନ୍ଦ କପଟଶୂନ୍ୟ ! ଘରକୁ ଗଲେ ମଧ୍ୟ ମୁଁ ପାଞ୍ଚ ଛଅ ଦିନରୁ ବେଶୀ ରହିପାରେନା ଓ ଏଠାକୁ ଆସିବା ପାଇଁ ତରତର ହୁଏ । ଏ ଗାଁ ବ୍ୟତୀତ ଅନ୍ୟକୁଆଡେ ଗଲେ ମତେ ଭଲ ଲାଗେନା ରହିବାକୁ । ମୋ ଶିକ୍ଷାକେନ୍ଦ୍ରର ପିଲାମାନେ ବର୍ତ୍ତମାନ ଆଗ ଅପେକ୍ଷା ବହୁତ ସୁନ୍ଦର ଭାବେ ମିଳାମିଶା ଓ କଥାବାର୍ତ୍ତା କରୁଛନ୍ତି । ଯେକୌଣସି ଆଡେ ଗଲେ ମୋ ସହ ଯାଆନ୍ତି । ପିଲାମାନଙ୍କ ସହ ମଧ୍ୟ ମୁଁ କେମିତି ବେଶୀ ସମୟ କଟାଇପାରିବି, ସେଥିପାଇଁ ସବୁବେଳେ ଚେଷ୍ଟା କରେ । ମୁଁ ଅନେକ ସମୟରେ ଅନୁମାନ କରିଛି ଯେ ପିଲାମାନେ ଖେଳ, ଗୀତ ଓ ପରିଭ୍ରମଣକୁ ବେଶି ପସନ୍ଦ କରୁଛନ୍ତି । ତେଣୁ ମୋତେ ସେ ଅନୁସାରେ ପଢ଼େଇବାକୁ ପଡୁଛି । ପିଲାମାନେ ଅନ୍ୟ ସ୍କୁଲ୍‌କୁ ପରିଦର୍ଶନ ପାଇଁ ମୋ ସହ ଯାଆନ୍ତି । ପରିଦର୍ଶନରେ ପିଲାମାନଙ୍କ ଅନୁଭୂତି ଓ ଅଭିଜ୍ଞତା ବହୁତ ବଢ଼େ ।



# ପରିଚୟ

ନାମ: ବିଶ୍ୱମ୍ବର ପ୍ରଧାନ

ବାପା/ମାଆଙ୍କ ନାମ: ଆସ୍ୱିତ ପ୍ରଧାନ / ବୁଧବାରୀ ପ୍ରଧାନ

ଘର ଠିକଣା: ଗ୍ରା: କାଙ୍ଗାନେଡ଼ା, ପୋ.- ମିଣିଆ, ଭାୟା: ଗୁମାଗଡ଼,

ଜିଲ୍ଲା: କନ୍ଧମାଳ (ଓଡ଼ିଶା)

ବୟସ: ୨୭ ବର୍ଷ

ରୁଚି: ବାଜା ବଜେଇବା, ଗୀତ, ନାଚ

ଶିକ୍ଷାଗତ ଯୋଗ୍ୟତା: ମାଟ୍ରିକ୍ ପାସ୍

ପଢ଼ିଥିବା ସ୍କୁଲର ନାମ: ଦିନାରସିଂ ଉଚ୍ଚ ଇଂରାଜୀ ବିଦ୍ୟାଳୟ, ବଙ୍ଗଡ଼ା

ଅନ୍ୟାନ୍ୟ ଦକ୍ଷତା/ତାଲିମ୍: ରାଜମିସ୍ତ୍ରୀ, ଆଦିବାସୀ ନେତୃତ୍ୱ ତାଲିମ୍, ଯୋଗାଯୋଗ ଓ ଓକିଲାତି ତାଲିମ୍, ଶିକ୍ଷକ ତାଲିମ୍

ଶିକ୍ଷାକେନ୍ଦ୍ରର ଠିକଣା: ନବସୃଜନ ଶିକ୍ଷାକେନ୍ଦ୍ର, ଗ୍ରା: ରାଙ୍ଗାମାଲା, ପୋ: ମିଣିଆ, ଭା: ଗୁମାଗଡ଼, ଜି: କନ୍ଧମାଳ (ଓଡ଼ିଶା)

ଶିକ୍ଷାକେନ୍ଦ୍ରର ସ୍ଥିତି: ପିଲାସଂଖ୍ୟା : ୨୮, ପୁଅ: ୧୩, ଝିଅ: ୧୫, ସ୍କୁଲ ଘର ମାଟିକାନ୍ଥ ଛପର, ବର୍ତ୍ତମାନ ଭଲ ଅଛି, ସରକାରୀ ସ୍କୁଲ୍‌ଠାରୁ ଦୂରତା ୩କି.ମି.

କେତେବର୍ଷ ହେଲା ଶିକ୍ଷକତା କରୁଛନ୍ତି: ୨ ବର୍ଷ

ମୁଁ ଶିକ୍ଷକ ହେଲି କାହିଁକି ?

ମୁଁ ରାଜମିସ୍ତ୍ରୀ କାମ କରିବା ସଂଗେ ସଂଗେ କୀର୍ତ୍ତନ ମାଷ୍ଟ୍ର ଥିଲି । ମୋତେ ଲୋକଙ୍କୁ ସତ୍ ମାର୍ଗରେ ନେବାକୁ ବିଶେଷ ଭଲ ଲାଗେ । ଯେତେବେଳେ ଅଗ୍ରଗାମୀ

ଦ୍ୱାରା ସ୍କୁଲ୍ ଖୋଲାହେଲା, ମୁଁ ଶିକ୍ଷକ ହୋଇ ପିଲାଙ୍କୁ କିଛି ଶିକ୍ଷା ଦେଇ ପାରିଲେ ଅନେକ ପିଲା ଠିକ୍ ମାର୍ଗରେ ପହଞ୍ଚିବେ ବୋଲି ଭାବିଲି ।

**ମୋର ଭବିଷ୍ୟତ ଲକ୍ଷ୍ୟ:**

ମୋର ଶିକ୍ଷାଗତ ଯୋଗ୍ୟତା କମ୍ । ତେଣୁ ମୁଁ ସରକାରୀ ଶିକ୍ଷକ ହୋଇ ପାରିବି ନାହିଁ । କିନ୍ତୁ ଆମ ଅଞ୍ଚଳର ଲୋକଙ୍କ ପାଇଁ ସଂଗଠନ ମାଧ୍ୟମରେ କିଛି କାମ କରିପାରିବି ।

**ମୋ ବିଷୟରେ ବିଶେଷ ସୂଚନା:**

ମୁଁ ଅଗ୍ରଗାମୀ ମିଣିଆ ପ୍ରକଳ୍ପର ରାଙ୍ଗାମାଲା ଗ୍ରାମରେ ଶିକ୍ଷକତା କରେ । ସେଇଠି ଶିକ୍ଷାକେନ୍ଦ୍ରର ଗୋଟିଏ ପଟେ ମୋତେ ଗାଆଁଲୋକ ରହିବା ପାଇଁ ମଧ୍ୟ ଘରଟିଏ କରିଦେଇଛନ୍ତି । ସେଇଠି ରହି ମୁଁ ଖାଲି ପିଲାଙ୍କୁ ପଢ଼ାଏ ନାହିଁ; ପାଠ ପଢ଼ାଇବା ସଙ୍ଗେ ସଙ୍ଗେ ଗାଆଁରେ ପାଣ୍ଠି ବଢ଼େଇବା, ମାଆମାନଙ୍କ ସଂଗଠନ ଏବଂ ଅନ୍ୟାନ୍ୟ ସରକାରୀ ଉନ୍ନୟନମୂଳକ କାର୍ଯ୍ୟକ୍ରମ ତଥା ନିଶାନିବାରଣ, ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମ ଉପରେ ମଧ୍ୟ କିଛି ପଦକ୍ଷେପ ନେଇଥାଏ ।

**ମୋର ଶିକ୍ଷକ ଜୀବନର ଅନୁଭୂତି:**

ପ୍ରତ୍ୟେକ ବିଷୟରେ ପ୍ରଥମେ ଶିକ୍ଷକ ପିଲାମାନଙ୍କ ମନରେ ଆଗ୍ରହ ଜନ୍ମାଇବା ଦରକାର । ପିଲା ଶିକ୍ଷାକେନ୍ଦ୍ରକୁ ଆସିଲେ କେତେକ ପିଲା ଘୁମାଇ ପଡ଼ିଥାଆନ୍ତି । ଆଉ କେତେକ ବଡ଼ପିଲା ଜୋର୍‌ରେ ପାଟି ମଧ୍ୟ କରନ୍ତି । ତେଣୁ ଆମ ଶିକ୍ଷାକେନ୍ଦ୍ରରେ ଅନେକ ପ୍ରକାରର ପିଲା ଥାଆନ୍ତି । ସେମାନଙ୍କ ମନକୁ ଏକାଗ୍ର କରିବା ପାଇଁ ମୁଁ ପ୍ରଥମେ ପ୍ରାର୍ଥନା କରିବାକୁ କହେ ଓ ନିଜେ ମଧ୍ୟ ସେମାନଙ୍କ ସାଙ୍ଗରେ ପ୍ରାର୍ଥନା କରେ । ପ୍ରାର୍ଥନା ଶେଷରେ ପିଲାଙ୍କୁ କିଛି ସମୟ ଚୁପ୍ ହୋଇ ବସିବା ପାଇଁ କହେ । ମୁଁ ଦେଖେ ତଥାପି କେତେ ଜଣ ପିଲା ଫୁସ୍‌ଫାସ୍ ହେଉଛନ୍ତି, କେତେକ ଖୁଲି ଖୁଲି ହୋଇ ହସୁଛନ୍ତି ଓ କେତେଜଣ ପୂରାପୂରି ନିରବରେ ବସିଛନ୍ତି । କିଛି ସମୟ ପରେ ପାଟିତୁଣ୍ଡ ଆରମ୍ଭ ହୋଇଯାଏ । ମୁଁ ସେ ସମୟରେ ପିଲାମାନେ ଏକାବେଳେକେ ଆଶ୍ଚର୍ଯ୍ୟ ହୋଇଯିବା ଭଳି କିଛି ଗୋଟିଏ ଖେଳ ଆରମ୍ଭ କରିଦିଏ । ଖେଳ ଏପରି ହୋଇଥିବ ଯେମିତି ସବୁ ପିଲା ପୂରା ଚୁପ୍ ହୋଇ ଖେଳ ଦେଖିବାରେ ମଜିଯିବେ । ଏହାପରେ ଗୀତ ଗାଇବା ଓ ଗପ କହିବା ଆରମ୍ଭ ହୋଇଯାଏ । ପିଲାଙ୍କୁ ଏପରି

ଖୁସିରେ ରଖିପାରିଲେ ସେମାନେ ବାପାମା'ଙ୍କ ଠାରୁ ମଧ୍ୟ ଆହୁରି ବେଶୀ ଶିକ୍ଷକଙ୍କୁ ଭଲ ପାଆନ୍ତି । ମୁଁ ଏସବୁ ଜାଣି ମଧ୍ୟ ବେଳେବେଳେ ସବୁ ପିଲାଙ୍କୁ ସମାନ ଭାବରେ ସମୟ ଦେଇ ପାରେ ନାହିଁ । ତଥାପି ପିଲାଙ୍କୁ ପାଠ ପଢ଼ାଇବା ଛଡ଼ା ସେମାନଙ୍କୁ କାଠି ନାଚ ଶିଖାଇବା, ଜଙ୍ଗଲରେ ବଣଭୋଜି କରିବାକୁ ନେବା, ଜଙ୍ଗଲର ବିଭିନ୍ନ ଗଛ ଓ ଜୀବଜନ୍ତୁଙ୍କୁ ଚିହ୍ନାଇବା ଇତ୍ୟାଦି ସାମୂହିକ କାମ କରିଥାଏ । ଶିକ୍ଷକତା କରିବା ପୂର୍ବରୁ ମୋର କିଛି ବଦ୍‌ଗୁଣ ଥିଲା । ସେସବୁକୁ ମୁଁ ବର୍ତ୍ତମାନ ପୂରାପୂରି ଛାଡିଦେଇଛି । କାରଣ ମୁଁ ପିଲାଙ୍କୁ ଡରେ । ପିଲାଙ୍କ ପାଖରେ ମୁଁ ସଦାସର୍ବଦା ସତର୍କ ହୋଇ ରହେ, ଯେମିତି ସେମାନେ ମୋର କିଛି ଭୁଲ୍ ନଦେଖନ୍ତି ! ମୁଁ ପିଲାଙ୍କୁ ପଢ଼େଇବା ପାଇଁ ଭଲ ପାଏ; ଆନନ୍ଦ ପାଏ । ମୋତେ ମୋ କାମ ପାଇଁ ଯେଉଁ ପ୍ରାପ୍ୟ ମିଳେ ତାହା ଯଥେଷ୍ଟ ନୁହେଁ । ମୁଁ ଅନ୍ୟ ଉପାୟ ନପାଇ ଶିକ୍ଷକତା କରିନାହିଁ । ମୁଁ ମୋ ଖୁସିରେ ଶିକ୍ଷକ ହୋଇଛି । ମୁଁ ଜାଣିଥିବା ବିଷୟ ଅନ୍ୟମାନେ ଜାଣିଲେ ମୋ ଜାଣିବାଟା ସାର୍ଥକ ହୋଇପାରିବ ବୋଲି ମୁଁ ଭାବେ । ଦୁନିଆରେ ଅନେକ ପନ୍ଥା ଅଛି; କିନ୍ତୁ ସେସବୁ 'ଶିକ୍ଷକତା' ତୁଳନାରେ ଅନେକ ପରିମାଣରେ ସୀମିତ ବୋଲି ମୋର ମନେହୁଏ । କାରଣ ଶିକ୍ଷକ ଜୀବନରେ ଅନେକ କଥା ନିଜେ ଶିଖି ଅନ୍ୟକୁ ଶିଖାଇବା ପାଇଁ ସୁଯୋଗ ମିଳିଥାଏ ।

ମୁଁ ଶିକ୍ଷକତା କରିବା ଭିତରେ କରିଛି କ'ଣ ଓ ପାଇଛି କ'ଣ ? ସେ ବିଷୟରେ ଏବେ କିଛି କହୁଛି । ମୁଁ ଅଗ୍ରଗାମୀ ଦ୍ୱାରା ନାନା ପ୍ରକାରର ତାଲିମ୍ ପାଇ ମାଆ ବାପାଙ୍କ ସଂଗଠନ ଗଢ଼ିଛି । ମାଆମାନେ ସଂଗଠନ ଗଢ଼ିବା ଦ୍ୱାରା ମଦର ପ୍ରଭାବ ଅନେକ ପରିମାଣରେ କମିଛି । ୯୮ ମସିହାରେ 'ଆରୋହଣ' ପତ୍ରିକା ଓ ଅଗ୍ରଗାମୀର ବାର୍ଷିକ ବିବରଣୀରେ ରାଙ୍ଗାମାଲା ମାଆମାନଙ୍କ କାହାଣୀ ବାହାରିଥିଲା । କିଛି ଲୋକ ମୋର କାର୍ଯ୍ୟକଳାପ ଦେଖି ମୋତେ କହିଲେ ଉଗ୍ରବାଦୀ ନେତା । କେତେକ ଟାଉଟର୍ କହିଲେ ଏଇ ଖ୍ରୀଷ୍ଟିୟାନ୍ ସଂସ୍ଥା, ଜଙ୍ଗଲ ନେଇଯିବ । ଏପରି କହି କିଛି ଲୋକ କେତେ ଲୋକଙ୍କୁ ମୋତେ ମାରିବା ପାଇଁ ଧମକାଇଲେ । କିନ୍ତୁ ସୌଭାଗ୍ୟର ବିଷୟ ଶେଷରେ ସେମାନେ ବୁଝିଗଲେ । ପ୍ରତ୍ୟେକ ବର୍ଷ ପରି ଏ ବର୍ଷ ମଧ୍ୟ ଯେତେବେଳ ଗ୍ରାମସଭା ହେଲା । ଦେଖାଗଲା ପଲ୍ଲୀସଭାରେ ଯେଉଁ ଲୋକଙ୍କର ନାମ ରଖାଯାଇଥିଲା ଗ୍ରାମସଭାରେ ସେମାନଙ୍କ ନାଁ ନ ବାହାରି ଅଲଗା ନାଆଁ ବାହାରିଲା । ସେତେବେଳେ ମାଆମାନେ ଏବଂ ଗାଆଁଲୋକ ପାଟି କରିଥିଲେ । ଯିଏ ସେମିତି କରିଥିଲା ସେ ଲାଜ ପାଇଲା । ଅଗ୍ରଗାମୀ ଯେଉଁ ଗାଆଁରେ ସ୍କୁଲ୍ କରିଛି ସେ

ଗାଆଁଲୋକମାନେ ଅଧିକ ଟାଉଟର୍ ବୋଲି କିଛି ଲୋକ କହିଲେ । ଏପରି କେତେ ଛୋଟବଡ଼ ସମସ୍ୟା ଦେଖାଦେଇଛି । କିନ୍ତୁ ମୁଁ ସେଥିକି ଡରୁନାହିଁ । ମୋର ଲେଖିବା ତାତ୍ପର୍ଯ୍ୟ ଏହିକି ଆମେ ମଧ୍ୟ ବେଳେବେଳେ ଆମର ଲକ୍ଷ୍ୟକୁ ଭୁଲିଯାଉଛୁ । ସେହି ମୁଷ୍ଟିମେୟ ଟାଉଟର୍‌ମାନେ ଆମ ପଛରେ ସଦାସର୍ବଦା ଲାଗିଛନ୍ତି । ସେମାନଙ୍କ ଉଦ୍ଦେଶ୍ୟ ହେଉଛି ଟାଉଟରି କରି ଲୋକଙ୍କୁ ଡ଼ରେଇ ଅନ୍ୟାୟ ଅତ୍ୟାଚାର କରିବା ଓ ସେମାନଙ୍କୁ ଯିଏ ଅଟକାଇବାକୁ ଚାହିଁବ ତା'ର ବିପକ୍ଷରେ ଯିବା । ସେଥିପାଇଁ ଆମକୁ ସବୁବେଳେ ପହରା ଦେବାକୁ ପଡ଼ିବ । ଆମେ ଯେଉଁ ଗାଆଁରେ ରହିଛୁ ସେଇଠି ପାଠ ପଢ଼ାଇବା ବ୍ୟତୀତ ଲୋକମାନଙ୍କୁ ସବୁ ବିଷୟରେ ସଚେତନ କରିବା ମଧ୍ୟ ଆମର କର୍ତ୍ତବ୍ୟ ।

ଏଥର ଆମର ଆୟକାରୀ କାର୍ଯ୍ୟକ୍ରମ ବିଷୟରେ ମୋ ଅଭିଜ୍ଞତାରୁ କିଛି ଲେଖୁଛି । ପ୍ରଥମେ ଏହି କାର୍ଯ୍ୟକ୍ରମଟିକୁ ଗାଆଁର ସମସ୍ତେ ଖୁବ୍ ଆଗ୍ରହ ସହକାରେ ଆରମ୍ଭ କଲେ । ଯେଉଁ ଗାଆଁରେ କମିଟି ସଭ୍ୟ/ସଭ୍ୟାମାନେ ଠିକ୍ ଅଛନ୍ତି, ସେହି ଗାଆଁରେ ଏହି କାର୍ଯ୍ୟକ୍ରମ ନିଶ୍ଚିତ ଭାବରେ ଠିକ୍‌ରେ ଚାଲିବ । କିନ୍ତୁ ବେଳେବେଳେ ଦେଖାଯାଉଛି ଏଥିପାଇଁ ଦିଆଯାଇଥିବା ଟଙ୍କାରେ ହେରଫେର୍ ହେଉଛି । କିନ୍ତୁ ପାସ୍‌ବୁକ୍‌ରେ ଟଙ୍କା ରହିଲେ ଅସୁବିଧା । ଗାଁଲୋକଙ୍କୁ ବ୍ୟବସାୟ ପାଇଁ ଦେଲେ ମଧ୍ୟ ଅସୁବିଧା । କାରଣ ଯଦି ଟଙ୍କାଟା ଟାଉଟର୍ ହାତରେ ପଡିଗଲା, ତେବେ ତା'କୁ ଏ ବିଷୟରେ କହିଲେ ମଧ୍ୟ ଅପ୍ରିୟ ହେବାକୁ ପଡୁଛି । ତେଣୁ ମୋ ମତରେ ପ୍ରଶ୍ନ ଉଠେ ଏହି କାର୍ଯ୍ୟକ୍ରମଟିକୁ ଆମେ କିପରି ସଫଳ କରିପାରିବା ? ଏପରି ସମସ୍ୟା ବୋଧେ ଅନେକ ଗୁରୁଭାଇ ସାମ୍ନା କରୁଥିବେ । ମାଛ ଖାଇ ଜାଣିଲେ ସୁନ୍ଦର; କିନ୍ତୁ ଖାଇଲା ବେଳେ ଯେମିତି କଣ୍ଟା ନଲାଗେ ! ଗାଆଁଲୋକ୍ ଠିକ୍‌ରେ ବୁଝି ପ୍ରଥମେ ସ୍କୁଲ୍ ଆରମ୍ଭ କରିଛନ୍ତି । କିନ୍ତୁ ବର୍ତ୍ତମାନ କେତେକ ଗାଆଁର ଲୋକ ନୀରବ ରହୁଛନ୍ତି । ଏହାର କାରଣ ଆମେ ସମସ୍ତେ ଗୁରୁଭାଇ ଖୋଜିବା ଦରକାର; ନହେଲେ ଆମର ଶିକ୍ଷା କାର୍ଯ୍ୟକ୍ରମର ବାଧା ଆସିପାରେ । ଆମେ ଯଦି ଏଥିପ୍ରତି ଆଗରୁ ସାବଧାନ ହେବାନାହିଁ, ତେବେ ଦିନେ ନା ଦିନେ ଆମକୁ ଏହି ଟାଉଟର୍‌ମାନଙ୍କ ହାବୁଡ଼ରେ ପଡ଼ିବାକୁ ହେବ । ଆଗରୁ ଗାଆଁର ଅବସ୍ଥା ଯେମିତି ଥିଲା, ପୁଣିଥରେ ସେଇ ଅବସ୍ଥା ହୋଇଯିବ । 'ଯେଉଁ ରାଣ୍ଡକୁ ସେଇ ଦୁଃଖ' ଭଳି ଅବସ୍ଥା ହେବ । ତେଣୁ ସବୁ ଭାଇ ଓ ଭଉଣୀଙ୍କୁ ମୁଁ ଏ ବିଷୟ ଲେଖି ଜଣାଇଲି ।

□□□

# ପରିଚୟ

**ନାମ:** କୁମାରୀ ରୁକ୍ମିଣୀ ମାଡ଼ି

**ପିତାଙ୍କ ନାମ:** ସମାରୁ ମାଡ଼ି

**ମାତାଙ୍କ ନାମ:** ଲଛମା ମାଡ଼ି

**ଘର ଠିକଣା:** ସିରିପେଟା, ପୋଷ୍ଟ: କୁଡୁମୁଲୁଗୁମା, ଭାୟା: ବୈପାରିଗୁଡ଼ା,

**ବ୍ଲକ୍:** କୁଡୁମୁଲୁଗୁମା, ଜିଲ୍ଲା: ମାଲ୍‌କାନ୍‌ଗିରି

**ବୟସ:** ୧୯ବର୍ଷ

**ଶିକ୍ଷାଗତ ଯୋଗ୍ୟତା:** ନବମ ଶ୍ରେଣୀ

**ରୁଚି:** ପଢ଼ିବା ଓ ପଢ଼ାଇବା ପାଇଁ ଭଲ ଲାଗେ ।

**ପଢ଼ିଥିବା ସ୍କୁଲ୍‌ର ନାମ:** ୧ମରୁ ୭ମ ଶ୍ରେଣୀ ଯାଏଁ ଗାଁର ମଧ ଇଂରାଜୀ ବିଦ୍ୟାଳୟରେ ପଢ଼ିଥିଲି । ଏହାପରେ ଆପନମାଳାର ଉଚ୍ଚ ବିଦ୍ୟାଳୟରେ ପଢ଼ିଥିଲି ।

**ଅନ୍ୟାନ୍ୟ ଦକ୍ଷତା / ତାଲିମ୍:** ମୁଁ ଘରେ ଥିବାବେଳେ କୌଣସି ତାଲିମ ଗ୍ରହଣ କରିନାହିଁ ।

**ଶିକ୍ଷାକେନ୍ଦ୍ରର ଠିକଣା:** ନବସୃଜନ ଶିକ୍ଷାକେନ୍ଦ୍ର, ସାରିଆପଲ୍ଲୀ, ପୋ: ବଡ଼ପଦର, ଭା: ଚିତ୍ରକୋଣ୍ଡା, ଜିଲ୍ଲା: ମାଲ୍‌କାନ୍‌ଗିରି, ବ୍ଲକ୍: କୁଡୁମୁଲୁଗୁମ୍ମା ।

**ଶିକ୍ଷାକେନ୍ଦ୍ରର ସ୍ଥିତି:** ଆମ ଗାଁରେ 'ନବସୃଜନ ଶିକ୍ଷାକେନ୍ଦ୍ର' ଚାଲୁ ହେବା ଆଜିକୁ ୨ବର୍ଷ ହୋଇଗଲାଣି । ଶିକ୍ଷାକେନ୍ଦ୍ରର ମୋଟ ଛାତ୍ରଛାତ୍ରୀ ସଂଖା: ୩୫, ଛାତ୍ର ସଂଖ୍ୟା ୧୮ ଓ ଛାତ୍ରୀ ସଂଖ୍ୟା: ୧୭ । ଏମାନଙ୍କ ମଧ୍ୟରୁ ସକାଳେ ୧୭/୧୮ ଜଣ ଓ ରାତିରେ ୨୮/୨୯ ଜଣ ଛାତ୍ରଛାତ୍ରୀ ସ୍କୁଲ୍‌କୁ ପଢ଼ିବାକୁ ଆସିଥାନ୍ତି । ତୃତୀୟ ଶ୍ରେଣୀ ପିଲାମାନେ ତୃତୀୟ ଶ୍ରେଣୀର ଗଣିତ, ବିଜ୍ଞାନ, ସାମାଜିକ, ପରିବେଶ, ସାହିତ୍ୟ, ସରଳ ଇଂରାଜୀ

ଶିକ୍ଷା, ଶବ୍ଦ ଗଠନ ଏବଂ ୨୦ ଖନ୍ଦା ପର୍ଯ୍ୟନ୍ତ ପଣିକିଆ, ମିଶାଣ, ଫେଡ଼ାଣ, ଗୁଣନ, ହରଣ, ପୂର୍ବବର୍ତ୍ତୀ, ପରବର୍ତ୍ତୀ ସ୍ଥାନୀୟମାନ ବିଷୟରେ ଜାଣି ପାରୁଛନ୍ତି । ଦ୍ୱିତୀୟ ଶ୍ରେଣୀ ପିଲାମାନେ ଆମ ପାଠ ବହି, ଆମର ବହି, 'ଆ'କାର ଠାରୁ 'ଏ'କାର ପର୍ଯ୍ୟନ୍ତ ଓ ସାଧାରଣ ମିଶାଣ, ଫେଡ଼ାଣ ଶିଖୁଛନ୍ତି । ଶିକ୍ଷାକେନ୍ଦ୍ରରେ ପିଲାମାନଙ୍କ ସଞ୍ଚୟ ପାଇଁ 'ଶିଶୁପାଣ୍ଠି' କରାଯାଇଛି । ମାସକୁ ୧ଟଙ୍କା କିମ୍ବା ୨ଟଙ୍କା ଲେଖାଏଁ ଜମାକରି ସେହିପଇସାରେ କୌଣସି ଜିନିଷ କିଣି ବ୍ୟବସାୟ କରି ଅଧିକ ଟଙ୍କା ବଢ଼ାଇବା ପାଇଁ ଚେଷ୍ଟା କରିବେ । ଏହା କରିବା ଦ୍ୱାରା ପିଲାମାନେ ନିଜେ ନିଜେ ସଞ୍ଚୟ କରି ରଖିବା ପାଇଁ ଶିଖିବେ ।

ସ୍କୁଲ୍‌ର ଦାୟିତ୍ୱ ବୁଝିବା ପାଇଁ ୭ଜଣଙ୍କୁ ନେଇ ଶିକ୍ଷାକମିଟି ରଖାଯାଇଛି । ସେମାନେ ପ୍ରତି ସପ୍ତାହରେ ସ୍କୁଲ୍‌କୁ ଆସି ସ୍କୁଲ୍‌ର ଭଲମନ୍ଦ ବୁଝନ୍ତି । ସ୍କୁଲ୍‌କୁ କେତେଜଣ ପିଲା ପ୍ରତିଦିନ ଆସୁଛନ୍ତି, କେଉଁମାନେ ଆସୁନାହାନ୍ତି, କାହିଁକି ଆସୁନାହାନ୍ତି ଇତ୍ୟାଦି ବିଷୟରେ ପଚାରନ୍ତି । ସ୍କୁଲ୍ ଘର ଭାଙ୍ଗିଗଲେ ବା କୌଣସି ଅସୁବିଧା ହେଲେ ଗାଁ ଲୋକଙ୍କୁ କହି ଘର ସଜାଡିବା ବା ସୁବିଧା କରି ଦିଅନ୍ତି । ଶିକ୍ଷାକମିଟିର ସଭ୍ୟସଭ୍ୟାମାନେ ସ୍କୁଲ୍ ପରିଦର୍ଶନରେ ଆସିବା ଛଡ଼ା ଗାଁଲୋକାମାନେ ମଧ୍ୟ ସ୍କୁଲ୍‌କୁ ଦେଖିଆସନ୍ତି । ଗାଁ ଲୋକମାନେ ଅଧିକାଂଶ ନିରକ୍ଷର ହୋଇଥିବାରୁ ମୁଁ ସେମାନଙ୍କୁ ଦସ୍ତଖତ ଶିଖିବା ପାଇଁ ସିଲଟରେ ନାଁ ଲେଖିଦେଉଛି । ଅନେକ ମା'ବାପା ବର୍ତ୍ତମାନ ଦସ୍ତଖତ କରିବ ଶିଖିଗଲେଣି । ପିଲାମାନଙ୍କୁ ଗୀତ, ଗପ, ନାଚ, ଖେଳ ଇତ୍ୟାଦି ମାଧ୍ୟମରେ ପାଠ ପଢ଼ାଇଛି । ଯାହାଫଳରେ ସେମାନେ ଆଗ୍ରହର ସହିତ ପଢ଼ିବାକୁ ଆସୁଛନ୍ତି ।

**କେତେ ବର୍ଷ ହେଲା ଶିକ୍ଷକତା କରୁଛନ୍ତି: ଦେଢ଼ ବର୍ଷରୁ ଅଧିକ ।**

ଆମ ଏ ଚିତ୍ରକୋଣ୍ଡା ଅଞ୍ଚଳଟି ବାଲିମେଳା ଜଳଭଣ୍ଡାର ଦ୍ୱାରା ସମ୍ପୂର୍ଣ୍ଣଭାବେ ବିଛିନ୍ନ ହୋଇ ରହିଛି । ତେଣୁ ଏ ଅଞ୍ଚଳର ଲୋକମାନେ ଜଙ୍ଗଲ ଭିତରେ ରହି ଜଙ୍ଗଲକୁ ମାରି ଚାଷ କରି ଖାଉଛନ୍ତି । ଯିବା ଆସିବା ପାଇଁ ରାସ୍ତାଘାଟର ସୁବିଧା ନାହିଁ । ଏଣୁ ଜଙ୍ଗଲ ଭିତରେ ଥିବା ଗାଁମାନଙ୍କୁ ଏଯାଏଁ କୌଣସି ସରକାରୀ ସୁବିଧାସୁଯୋଗ ପହଞ୍ଚି ପାରିନାହିଁ । ଗାଁମାନଙ୍କ ପାଠ ପଢ଼ିବା ପାଇଁ କୌଣସି ସୁବିଧା ନାହିଁ । କାରଣ ସେମାନେ ବଣର ପଶୁ, ପକ୍ଷୀ ପରି ଜୀବନଯାପନ କରୁଛନ୍ତି । ଏହିପରି ପଛରେ ପଡ଼ିଥିବା ଲୋକଙ୍କୁ ଶିକ୍ଷାଦେବା ପାଇଁ ଓ ସେମାନଙ୍କୁ ଠକେଇ ଶୋଷଣ ବିରୁଦ୍ଧରେ ଚେତନା ସୃଷ୍ଟି କରିବା ପାଇଁ ମୁଁ ଶିକ୍ଷୟିତ୍ରୀ ହେବା ପାଇଁ ଚାହିଁଲି ।

## ମୋର ଭବିଷ୍ୟତ ଲକ୍ଷ୍ୟ:

ଗାଁରେ ରହି ଆମ ଅଞ୍ଚଳର ଗରିବ ଲୋକଙ୍କର ବିକାଶ ପାଇଁ କାମ କରିବା । କାରଣ ଗାଁ ଲୋକଙ୍କର ଉନ୍ନତିରେ ଦେଶର ଉନ୍ନତି ।

## ମୋ ଶିକ୍ଷକ ଜୀବନର ଅନୁଭୂତି:

ମୋ ନିଜ ଗାଁର ନାଁ ହେଉଛି ସିରିପେଟା । ମୋ ବାପା ଜଣେ ଚାଷୀ ଲୋକ । ଆମ ପରିବାରରେ ମାତ୍ର ୪ଜଣ ଲୋକ । ବାପା, ମା' ଓ ଆମେ ଦୁଇ ଭଉଣୀ । ମୁଁ ବଡ଼ ଓ ମୋ ତଳେ ମୋର ଭଉଣୀ । ମୋ ବାପା ଯେତେବେଳେ ନିଜ ଗାଁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇଦେଲେ, ମୁଁ ସେହି ଦିନଠାରୁ ଗାଁରେ ପ୍ରଥମରୁ ସପ୍ତମ ଯାଏଁ ପଢ଼ିଲି । ତା'ପରେ ମୋ ବାପା ମୋତେ ଆପନମାଳାର ପ୍ରହଲ୍ଲାଦ ଉଚ୍ଚ ବିଦ୍ୟାଳୟରେ ନାମ ଲେଖାଇଦେଲେ । ମୁଁ ସେଇଠି ଅଷ୍ଟମ ଶ୍ରେଣୀରୁ ନବମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲି ଏବଂ ଦଶମ ଶ୍ରେଣୀକୁ ଯାଇଥିଲି । ଏତିକିବେଳେ ମା'ର ଦେହ ଅସୁସ୍ଥ ହେବାରେ ଲାଗିଲା । ଘରେ କିଏ କାମ କରିବା ପାଇଁ ଲୋକ ନାହିଁ । ସାନ ଭଉଣୀ ମଧ୍ୟ ଗାଁ ସ୍କୁଲ୍‌ରେ ପଢୁଥିଲା । ମୁଁ ପଢୁଥିବା ସ୍କୁଲ୍ ଗାଁଠାରୁ ୨୦କି.ମି. ଦୂର । ବାପା ମୋତେ ଖବର ଦେଇ ଡାକି ଆଣିଲେ ଏବଂ ମୋତେ କାମ କରିବା ପାଇଁ କହିଲେ । ମା'କୁ ଯେତେ ଡାକ୍ତର ଦେଖାହେଲେ ମଧ୍ୟ କିଛି କାମ ଦେଲା ନାହିଁ । ତା' ଦେହ ଦୁର୍ବଳ ହୋଇଗଲା । ତେଣୁ ମୋତେ ବାଧ୍ୟ ହୋଇ ଘରେରହି କାମ କରିବାକୁ ପଡ଼ିଲା ।

ଆମର ଆର୍ଥିକ ପରିସ୍ଥିତି ମଧ୍ୟ ସେତେ ଭଲ ନଥିଲା । ମୋ ସାନ ଭଉଣୀ ସପ୍ତମ ପଢ଼ିବା ପରେ ଆଉ ପଢ଼ି ପାରିଲାନାହିଁ । ମୁଁ ମଧ୍ୟ ଦଶମ ଶ୍ରେଣୀ ପରୀକ୍ଷା ଦେଇପାରିଲି ନାହିଁ । ଘରେ ବର୍ଷେ ରହିଲା ପରେ ମୁଁ 'ଅଗ୍ରଗାମୀ' ବିଷୟରେ ଶୁଣିଲି । ମୋତେ କୁଡୁମୁଲୁଗୁମାର ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ 'ଅଗ୍ରଗାମୀ' ବିଷୟରେ କହିଲେ । ମାତ୍ର ମୋର ଆଶା ନଥାଏ ଯେ ମୁଁ ନବମ ଶ୍ରେଣୀ ପଢ଼ି ଏହି ସଂସ୍ଥାରେ କାମ କରିପାରିବି । କିନ୍ତୁ ମୁଁ ଚିତ୍ରକୋଣ୍ଡା ଯାଇ 'ମୋଡ଼'ରେ ଆଜ୍ଞାମାନଙ୍କ ସହିତ କଥାବାର୍ତ୍ତା କରିବାରୁ ସେମାନେ ଅଗ୍ରଗାମୀରେ ରହି କାମ କରିବା ପାଇଁ କହିଲେ । ମୁଁ ଏହି ଗାଁକୁ ଆସିବା ପୂର୍ବରୁ ଜଣେ ଗୁରୁଭାଇ ଓ ଜଣେ ଗୁରୁଭଉଣୀ ରହି କାମ କରୁଥିଲେ । ଗୁରୁଭଉଣୀ ଇସ୍ତଫା ଦେଇ ଚାଲି ଗଲାପରେ ମୁଁ ସେହି ଗାଁକୁ ଆସିଲି । ମୁଁ ସେହି ଗାଁକୁ ଆସିବା ପୂର୍ବରୁ ପିଲାମାନେ କିଏ ଅକ୍ଷର ସାରି ସଂଖ୍ୟା ପର୍ଯ୍ୟନ୍ତ

ଆଗେଇଥିଲେ । ଆଉ କେତେଜଣ ପିଲା 'ଆ'କାରରୁ 'ହ୍ରସ୍ୱ ଉ' କାର ପର୍ଯ୍ୟନ୍ତ ଆଗେଇଥିଲେ । ଆଉ କେତେ ପିଲା ୫ ଖନ୍ଦା ପଣକିଆ ପର୍ଯ୍ୟନ୍ତ ଶିଖିଥିଲେ ।

ମୁଁ ଆସିବାର ଆଜିକୁ ପ୍ରାୟ ଦେଢ଼ ବର୍ଷ ଉପରେ ହେବ । ଏବେ ପିଲାମାନେ ୨୦ ଖନ୍ଦା ପର୍ଯ୍ୟନ୍ତ ପଣକିଆ, ସଂଖ୍ୟା, ମାତ୍ରା, ଶବ୍ଦଗଠନ, ମିଶାଣ, ଫେଡ଼ାଣ, ଗୁଣନ ଇତ୍ୟାଦି ଶିଖି ସାରିଛନ୍ତି । ଦ୍ୱିତୀୟ ଶ୍ରେଣୀ ପିଲାମାନେ ୧୦ରୁ ୧୨ ଖନ୍ଦା ପଣକିଆ, ଶବ୍ଦଗଠନ ଆଦି ଶିଖିଛନ୍ତି । ସାନ ପିଲାମାନେ ଅକ୍ଷର ଶିଖୁଛନ୍ତି । ମୁଁ ଖାଲି ଏଠାରେ ଶିକ୍ଷକ ଭାବରେ କାମ କରୁନାହିଁ । ଗାଁରେ ଜଣେ ମଣିଷ ଭାବରେ ଗାଁର ସୁବିଧା, ଅସୁବିଧାକୁ ନେଇ କାମ କରୁଛି । ମାସକୁ ଥରେ ଗାଁରେ ବୈଠକ କରୁଛି ଓ ଗାଁର ସମସ୍ୟା ବିଷୟରେ ଆଲୋଚନା କରୁଛୁ । ପିଲାମାନେ କେମିତି ଆଗ୍ରହର ସହିତ ପାଠ ପଢ଼ିବାକୁ ଆସିବେ, ସେଥିପାଇଁ ଅନେକ ଚେଷ୍ଟା ଚଳାଇଛି । ସ୍କୁଲ୍‌କୁ ନ ଆସୁଥିବା ପିଲାଙ୍କୁ ବାପା ମା'ମାନଙ୍କୁ ବୁଝାଇ ସେମାନଙ୍କୁ ଘରକୁ ଯାଇ ଡାକିଆଣୁଛି । ଠକେଇ ଶୋଷଣରୁ ସେମାନେ କେମିତି ରକ୍ଷାପାଇବେ, ସେ ବିଷୟରେ ବୁଝାଉଛି ।



# ପରିଚୟ

## ମୋ ବାଲ୍ୟଜୀବନ

ମୋର ବୟସ ଯେତେବେଳେ ୪ବର୍ଷ, ସେତେବେଳେ ମୋ ବାପା ଏହି ସଂସାର ଛାଡ଼ି ଚାଲିଗଲେ । ମୋତେ ଯେତେବେଳେ ୫ବର୍ଷ ହେଉଥିଲା, ମା' ମୋତେ ଗାଈ ଚରାଇବା ପାଇଁ କହିଲେ । ଆମର ନିଜର କିଛି ଗାଈ ଚରାଇବା ପାଇଁ କହିଲେ । ଆମର ନିଜର କିଛି ଗାଈ ଥିଲା ଓ ତା'କୁ ଅନ୍ୟ କାହାକୁ ଚରାଇବା ପାଇଁ ଦେଲେ ସେଥିପାଇଁ ପଇସା କିମ୍ୱା ଅନ୍ୟ କିଛି ଜିନିଷ ଦେବାକୁ ପଡୁଥିଲା । କିନ୍ତୁ ଆମର ନିଜର ତ ଖାଇବାକୁ ନିଅଣ୍ଟ ହେଉଥିଲା । ତେଣୁ ଆମ ପାଖରେ ସେଥିପାଇଁ ଦେବାକୁ କିଛି ହେଲେ ନଥିଲା । ତେଣୁ ଶେଷରେ ମୁଁ ଗାଈ ଚରାଇବା ଆରମ୍ଭ କଲି । ବର୍ଷେ ଆମ ଗାଈ ଚରାଇବା ପରେ ମୋତେ ଅନ୍ୟମାନେ ମଧ୍ୟ ଗାଈ ଚରାଇବା ପାଇଁ କହିଲେ । ମୁଁ ଅନ୍ୟମାନଙ୍କ ଗାଈ ଚରାଇବା ଦ୍ୱାରା ମୋର ପେଟ ପାଇଁ କିଛି ଖାଦ୍ୟ ମିଳିଗଲା । ଆଗଭଳି ଖାଇବା ପିଇବାର ଅସୁବିଧା ହେଲା ନାହିଁ । କିନ୍ତୁ ସେତେଦିନ ଯାଏଁ ମୁଁ ପାଠ କ'ଣ ଆଦୌ ଜାଣିନଥିଲି କି ଜାଣିବାର ସୁଯୋଗ ପାଇ ନଥିଲି । ଧୀରେ ଧୀରେ ମୁଁ ଜାଣିଲି ଯେ ମୋର କେତେକ ସାଙ୍ଗ ସ୍କୁଲକୁ ପାଠ ପଢ଼ିବାକୁ ଯାଉଛନ୍ତି । ମୋର ମଧ୍ୟ ସ୍କୁଲକୁ ଯିବାକୁ ଇଚ୍ଛା ହେଲା । ମୁଁ ମା'କୁ ଏକଥା କହିଲି । କିନ୍ତୁ ମା' ସିଧା ମନା କରିଦେଲା ଓ କହିଲା, "ତୁ ଯଦି ସ୍କୁଲ୍‌କୁ ଯିବୁ, ତୋ ପେଟକୁ କେଉଁଠି ରଖିବୁ ତତେ ଖାଇବାକୁ କିଏ ଦେବ ? ମୁଁ ତ ଦେଇ ପାରିବି ନାହିଁ । ତୁ ଗାଈ ଚରା ।" କିନ୍ତୁ ମୋ ମନ ଏତିକିରେ ଦବିଗଲା ନାହିଁ, ଯଦିଓ ମୋର ଖୁବ୍ ମନଦୁଃଖ ହେଲା । ମୁଁ କହିଲି, "ତା'ହେଲେ ସାନଭାଇ ସ୍କୁଲ୍‌କୁ ଯାଉ; ସେ ସ୍କୁଲ୍‌ରେ ଯାହା ପାଠ ଶିଖିବ, ମୋତେ ଆସି ସଂଧ୍ୟାରେ ବତାଇଦେବ ।" ସାନ ଭାଇ ମଧ୍ୟ ଏଥିରେ ରାଜି ହେଲା ।

ଏହାପରେ ମୋ ସାନ ଭାଇ ସ୍କୁଲକୁ ପାଠ ପଢ଼ିଗଲା ଓ ମୁଁ ସେମିତି ଗାଈ ଚରାଇଲି । ସ୍କୁଲ୍‌ରୁ ଆସିବା ପରେ ସଂଧ୍ୟାରେ ସେ ମୋତେ ଶିଖାଉଥିଲା । ଆମ ଘରେ

ବତୀଟିଏ ଜାଳିବାକୁ କିରୋସିନ କିଣିବା ପାଇଁ ମଧ୍ୟ ପଇସା ନଥିଲା କି କିରାସିନି ମଧ୍ୟ ଠିକ୍ ଭାବରେ ମିଳୁନଥିଲା । ଆମେ ନିଆଁ ଜଳାଇ ପାଠ ପଢୁଥିଲୁ । ରାତି ପାହିଲେ ଭାଇ ସ୍କୁଲକୁ ଯାଉଥିଲା ଓ ମୁଁ ଗାଈ ଚରାଇବାକୁ ଯାଉଥିଲି । ଗାଈ ଚରାଇବାକୁ ଯିବାବେଳେ ମଧ୍ୟ ନଦୀ ବାଲି ଉପରେ ଅକ୍ଷର ଶିଖିବା ଅଭ୍ୟାସ କରୁଥିଲି । ସେମିତି ସେମିତି କରି ଅକ୍ଷର ଶିଖିଗଲି । ମୋ ଭାଇକୁ ବହି ଦିଆହେଲା ଓ ଆମେ ଦୁଇଜଣ ସେହି ବହି ପଢୁଥିଲୁ ।

ଏବେ ଯେମିତି ରାତିସ୍କୁଲ୍ ଅଛି, ସେତେବେଳେ ନଥିଲା । ସେତେବେଳେ ଯଦି ଥାଆନ୍ତା, ତେବେ ଆମକୁ ପାଠ ପଢ଼ିବା ପାଇଁ ଏତେ ଅସୁବିଧା ହୋଇ ନଥାନ୍ତା ବୋଲି ମୁଁ ଭାବୁଛି । ଆମ ପାଖରେ ସ୍ଲେଟ୍‌ଖଡି କିଣିବାକୁ ପଇସା ନଥିଲା । ତେଣୁ ଆମ ଅଞ୍ଚଳରେ ଏକ ପ୍ରକାରର ମାଟି ଅଛି, ଯେଉଁଥିରେ ଆମ ସ୍ଲେଟ୍ ଖଡ଼ି ତିଆରି କରି ଲେଖୁଥିଲୁ । ସେହି ମାଟିକୁ ଆମ ଆଞ୍ଚଳିକ ଭାଷାରେ 'ମୁଣ୍ଡଧୁଆ ମାଟି' କହନ୍ତି । ସେମିତି ପଢୁ ପଢୁ ତୃତୀୟ ଶ୍ରେଣୀ ପଢ଼ିଲି । ତୃତୀୟ ଶ୍ରେଣୀ ପାଇଁ ହିଁ ଆମ ଗାଁ ସ୍କୁଲ୍‌ରେ ଥିଲା । ଏହାପରେ ବାହାର ସ୍କୁଲ୍‌କୁ ଯିବାକୁ ପଡୁଥିଲା । ମୋ ସାନଭାଇକୁ ବାହାର ସ୍କୁଲରେ ନାମ ଲେଖାହେଲା । ମୋ ମା'କୁ ମୁଁ ନାଁ ଲେଖାଇବା କଥା କହିବା ପରେ ସେ ସିଧା ମନା କରିଦେଲେ । କିନ୍ତୁ ମୋ ବଡ଼ଭାଇ ମୋ ନାଁ ସ୍କୁଲ୍‌ରେ ଲେଖାଇବାକୁ ଚାହିଁଲେ । ତେଣୁ ଗୋରଖପୁର ହାଇସ୍କୁଲ୍‌ରେ ମୋ ନାଁ ଲେଖାହେଲା । ସେତେବେଳେ ମୋ ପାଖରେ ପେଣ୍ଟ୍‌ସାର୍ଟ ଗୋଟିଏ ହଳ ଓ ଚିରା ଗାମୁଛା ଖଣ୍ଡେ ଛଡ଼ା ଆଉ କିଛି ନଥିଲା ।

ସ୍କୁଲ୍ ଛୁଟି ହେଲେ ପେଣ୍ଟ୍‌ସାର୍ଟ ସଫା କରୁଥିଲି ଓ ସକାଳେ ପିନ୍ଧି ସ୍କୁଲ୍‌କୁ ଯାଉଥିଲି । ମୋ ପାଖରେ ଯଥେଷ୍ଟ କପଡା ନଥିବାରୁ ଶୀତଦିନେ ବହୁତ କଷ୍ଟ ସହିବାକୁ ପଡୁଥିଲା । ଯେଉଁଦିନ ରାତିରେ ବହୁତ ଶୀତ ହେଉଥିଲା, ମୁଁ ଚୁଲି ପାଖରେ ହିଁ ସାରାରାତି କଟାଇ ଦେଉଥିଲି । ଦିନେ ମୋ'ଠୁ ଉଚ୍ଚଶ୍ରେଣୀରେ ପଢୁଥିବା ଭାଇମାନେ କହିଲେ ଯେ ତୁ ସବୁବେଳେ ରନ୍ଧାଘରେ ରହୁଛୁ କାହିଁକି ? ତୋ'ଦେହ ଖରାପ ହୋଇଯିବ । ମୁଁ କହିଲି ଯେ ମୋ' ପାଖରେ ଯଥେଷ୍ଟ କପଡ଼ା ନାହିଁ । ଯୋଉ ଭାଇ ମୋତେ ପଚାରିଥିଲେ ସେ ମୋତେ ଗୋଟିଏ ଲୁଗା ଦେଲେ ଓ ଏକଥା ଆମ ଶିକ୍ଷକଙ୍କୁ ମଧ୍ୟ କହିଲେ । ତା'ପରେ ଆମ ଶିକ୍ଷକ ମୋତେ ଡାକି ଏ ବିଷୟରେ ପଚାରିଲେ ଓ ସତ କଥା ଜାଣି ଗୋଟିଏ ଦରି, ଗୋଟିଏ କମ୍ବଳ ଓ ଗୋଟିଏ ଚାଦର ଦେଲେ ।

ଏସବୁକୁ ନେଇ ମୁଁ ଦଶମ ଶ୍ରେଣୀ ଯାଏଁ ପଢ଼ିଲି । ଏହି ପଢ଼ିବା ସମୟରେ ମୋତେ ଖାତାପତ୍ର ମଧ୍ୟ ଶିକ୍ଷକମାନେ ଦିଅନ୍ତି । ସିଲାଇ ଶିକ୍ଷକ ମଧ୍ୟ ଏ ବିଷୟରେ ଜାଣିଲେ । ମୁଁ ସିଲାଇ ବିଭାଗରେ କାମ କରୁଥିଲି । ସିଲାଇ ଶିକ୍ଷକ ବଳକା କନାରେ ପେଣ୍ଟସାର୍ଟ ସିଲାଇ ଦେଉଥିଲେ । ମୋ ସ୍କୁଲ୍ ଜୀବନ ଏମିତି ସୁଖଦୁଃଖ ଓ ଅଦ୍ଭୁତ ଘଟଣା ଦେଇ ଗତି କରିଥିଲା । ତେବେ ମୁଁ ଆହୁରି ମଧ୍ୟ ଅଧିକ ପଢ଼ିବାକୁ ଚାହୁଁଥିଲି । କିନ୍ତୁ ମୋ ଭାଗ୍ୟରେ ନଥିଲା । ତେଣୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ହିଁ ପଢ଼ିପାରିଲି । ବର୍ତ୍ତମାନ ଅଗ୍ରଗାମୀ ତରଫରୁ ଭାଲୁମାସ୍କା ଗ୍ରାମରେ ଖୋଲାଯାଇଥିବା ନବସୃଜନ ଶିକ୍ଷାକେନ୍ଦ୍ରରେ ଗୁରୁଭାଇ ଭାବରେ କାମ କରୁଛି ।

**ନାଥ ମାଝୀ**

**ନବସୃଜନ ଶିକ୍ଷାକେନ୍ଦ୍ର, ଭାଲୁମାସ୍କା**



# ଆମ ଗାଁର ମା'ମାନଙ୍କ କଥା

ମା'ମାନଙ୍କର କଥା କହିବା ଆଗରୁ ମୋ ନିଜର ଖୁସି କଥାଟି କହିଦେଉଛି । ମୁଁ ପ୍ରଥମ ସଂଖ୍ୟା 'ନୂଆପାଠ ନୂଆ ବାଟ' ପାଇଁ ଲେଖାଟିଏ ପଠାଇଥିଲି । ସେଇଟା ପ୍ରକାଶ ପାଇଥିବାରୁ ମୋତେ ବହୁତ ଖୁସୀ ଲାଗିଲା । ପ୍ରଥମେ ଯେତେବେଳେ ଲେଖାଟିକୁ ଦେଖିଲି ସେତେବେଳେ ଗାଁର ସମସ୍ତଙ୍କୁ ଦେଖେଇବା ପାଇଁ ନେଲି । ସମସ୍ତେ ତାହାକୁ ଦେଖି ବହୁତ ଖୁସୀ ହେଲେ; ଏବଂ ଆମ ଗାଁର କଥା ଏତେ ଲୋକଙ୍କ ପାଖରେ ପହଞ୍ଚିଥିବାରୁ ଏଇଟା ସେମାନଙ୍କ ପାଇଁ ଏକ ନୂଆ ଘଟଣା ବୋଲି ଭାବିଲେ । ସେଥିପାଇଁ ମୁଁ ଆହୁରି ଲେଖିବି ବୋଲି ଭାବିଲି ଏବଂ ଲେଖି ଜଣାଉଛି କି ଏହା ମଧ୍ୟ ପ୍ରକାଶ ପାଇବ ବୋଲି । ଏହା ପ୍ରକାଶ ପାଇଲେ ଆମ ମା'ମାନେ ଅଧିକ ଖୁସୀ ହେଲେ ଏବଂ ଗାଁ ପାଇଁ ଅନେକ କାମ କରିବେ ।

ଏହି ରାଙ୍ଗାମାଲା ଗ୍ରାମରେ ଗାନ୍ଧା କହଁର ସବୁଦିନ ମଦ କିମ୍ୱା ଖଜୁରୀ ରସ ଖାଇ ଗାଁରେ ଗଣ୍ଡଗୋଳ କରିଆସୁଥିଲା । ତାହାକୁ ଅନେକ ଥର ଅନେକ ଲୋକ ମଦ ନି ପିଇବା ପାଇଁ କହିଲେ ମଧ୍ୟ ସେ କାହା କଥା ଶୁଣୁନଥିଲା । ମଦ ପିଇଲେ ପଛକେ ଚଳିଯାଇଥାଆନ୍ତା କିନ୍ତୁ ସେ ମଦ ପିଇ ଲୋକମାନଙ୍କୁ ଖରାପ ବ୍ୟବହାର ମଧ୍ୟ କରେ; ଆମକୁ ବହୁତ ଖରାପ ଲାଗୁଥିଲେ ମଧ୍ୟ ଆମେ କିଛି କରିପାରୁନଥିଲୁ । ଦିନକର କଥା ସେ ଆସି ମନଇଛା ଗାଁରେ ମା'ମାନଙ୍କୁ ଗାଳିଗୁଲଜ କଲା । ମା'ମାନେ ଯେତେ କହିଲେ ସେ କାହାରି କଥା ଶୁଣିଲା ନାହିଁ ଓଲଟି ଆହୁରି ଅସଭ୍ୟ ଭାଷାରେ କହିଲା । ଏହା ଦେଖି ମା'ମାନେ ଘରେ କବାଟ କିଳି ପଶିଲେ । ସହଜେ ତ ଚାରିଟା ବେଳ ।

ପୁରୁଷମାନେ ବିଲରୁ ଫେରି ନଥାନ୍ତି; ତେଣୁ ସେମାନେ ବାଧ୍ୟ ହୋଇ ଘର ଭିତରକୁ ଚାଲିଗଲେ । ଏମିତି କିଛି ସମୟ ପାଟି କରି ସାରିବା ପରେ ନିଶା ହୋଇଯିବାରୁ ସେ ସେହି ଗାଁ ଦାଣ୍ଡରେ ଶୋଇରହିଲା । ସେଦିନ ପୁରୁଷ ଲୋକମାନେ ନ ଆସିବା

ପର୍ଯ୍ୟନ୍ତ କୌଣସି ସ୍ତ୍ରୀଲୋକ ବାହାରକୁ ବାହାରିଲେ ନାହିଁ । ସେଦିନ ଲୋକମାନେ ଆସିଲାବେଳକୁ ସନ୍ଧ୍ୟା ହୋଇଗଲା । ତେଣୁ ମା'ମାନେ କିଛି କହିଲେ ନାହିଁ । ପରଦିନ ସକାଳେ ଲିଙ୍ଗାରୀ ମା ଆସି ମୋତେ ସବୁ ଘଟଣା କହିଲା । ଏକଥା ଶୁଣିବାରୁ ମୁଁ କହିଲି ଗାଁର ସମସ୍ତ ମା ମିଶି ତାକୁ ପଚାର । ମା'ମାନେ ସେପରି କଲେ ଗାଁ ଦାଣ୍ଡରେ ସମସ୍ତେ ବସି ତାକୁ ଡାକିଲେ ଏବଂ ମୋତେ ମଧ୍ୟ ସେଠାକୁ ଡାକିଥିଲେ ।

ପ୍ରଥମେ ଏତେ ଲୋକଙ୍କୁ ଦେଖି ଗାନ୍ଧା ଛାନିଆଁ ହୋଇଗଲା । କିନ୍ତୁ ସେଠାରେ ତାକୁ ପରଦିନର କଥା କହିବା ସଙ୍ଗେ ସଙ୍ଗେ ସେ ହଠାତ୍ ମା'ମାନଙ୍କୁ ଗାଳି ଦେବାକୁ ଲାଗିଲା । କହିଲାକି ତୁମେ ମାଇକିନିଆମାନେ ମୋର କ'ଣ କରିପାରିବ ! ତୁମେମାନେ ପୁଣି ମୋତେ ମିଟିଂ କରି ଏକଥା ପଚାରୁଛ । ମୁଁ ମଧ୍ୟ ଆଜି ମଦ ପିଇ ଏପରି କରିବି । ଏହା ଶୁଣି ମୁଁ ମା'ମାନଙ୍କୁ କହିଲି ଏଇ ଯଦି ଆଜି ଏମିତି କରେ କ'ଣ କରିବି ତାହା ଉପରେ ତୁମେମାନେ ନିଷ୍ପତ୍ତି ନିଅ । ଏକଥା ଶୁଣି ମା'ମାନେ କହି ଉଠିଲେ ତୁ କାଲି ମଦପିଇକରି ଲଙ୍ଗଳା ହୋଇ ବୁଲୁଥିଲୁ କିନ୍ତୁ ତୁ ଆଜି ଯଦି ପିଇକରି ବୁଲିବୁ ତେବେ ଆମେ ତୋତେ ସେମିତି କରି ଗାଁ ଦାଣ୍ଡରେ ବୁଲାଇବୁ; ଯଦି ଏକଥାରେ ରାଜି ତେବେ ଆଜି ମଦପିଇବୁ । ଏକଥା ଶୁଣିବା ପରେ ଗାନ୍ଧା ଭୟ କରିଗଲା ଏବଂ କହିଲା ମୋର ଭୁଲ ହୋଇଯାଇଛି; ମୁଁ ଆଉ ଏମିତି କାମ କରିବି ନାହିଁ । ମୋତେ ଯାହା ଜୋରିମାନା କର ସିନା, ଏମିତିକା ଲଜ୍ଜାକର କଥା କରନା ! ମା'ମାନେ କହିଲେ ଆମର ଜୋରିମାନା ଦରକାର ନାହିଁ । ଲୋକଟି କାନ୍ଦକାନ୍ଦ ହେବାର ଦେଖି ମା'ମାନଙ୍କୁ ବୁଝେଇ କହିଲି ଆମେ ତାକୁ ଲଙ୍ଗଳା କରିବା ନାହିଁ । ସେ ଆଜିଠାରୁ ମଦ କିମ୍ବା ରସ ଖାଇ ଗଣ୍ଡଗୋଳ କରିବ ନାହିଁ ଏବଂ ସମସ୍ତଙ୍କୁ ସେ ଏଠାରେ ଭଲ ମାଗୁ । ସମସ୍ତେ ମୋ କଥାରେ ରାଜି ହେଲେ ଏବଂ ତାହାକୁ ସେକଥା କରିବାପାଇଁ କହିଲେ । ଲୋକଟି ଏତେ ଦୁର୍ଦ୍ଧାନ୍ତ ହୋଇଥିଲେ ମଧ୍ୟ ଏକଥାକୁ ମାନିବାକୁ ବାଧ୍ୟ ହେଲା । ଶେଷରେ ସଭା ମଧ୍ୟରେ ଠିଆ ହୋଇ ଲୋକମାନଙ୍କୁ କାନ୍ଦି କାନ୍ଦି କହିଲା ଆଜିଠାରୁ ମୁଁ ମଦ କିମ୍ବା ରସ ପିଇ ଗଣ୍ଡଗୋଳ କରିବି ନାହିଁ ।

ସେହି ଦିନଠାରୁ ଗାନ୍ଧା ଭାଇ ଏମିତି ବଦଳିଯାଇଛନ୍ତି ଯେ ବର୍ତ୍ତମାନ ସେ ଆମ ସ୍କୁଲର ଜଣେ ସକ୍ରିୟ ସଭ୍ୟଭାବରେ କାମ କରୁଛନ୍ତି । ସ୍କୁଲକୁ କୌଣସି ପିଲା ଆସୁନଥିଲେ ସେ ନିଜେ ପିଲାଙ୍କଘରକୁ ଯାଇ କାହିଁକି ପିଲାଟି ଆସିନାହିଁ; ସେ ବିଷୟରେ ପଚାରି ବୁଝୁଛନ୍ତି । ବାପା ମା' ପଠାଉ ନଥିଲେ ପିଲାମାନଙ୍କୁ ସ୍କୁଲକୁ ପଠାଇବାକୁ

ବୁଝାଉଛନ୍ତି । ଗାଁ କିମ୍ବା ସ୍କୁଲ ପାଇଁ ମିଟିଂ ହେଲେ ସେ ଆଗକରି ଲୋକମାନଙ୍କୁ ଡାକିଆଣୁଛନ୍ତି । ଗାଁର ଭଲମନ୍ଦ ବିଷୟରେ ଲୋକମାନଙ୍କୁ ସଚେତନ କରୁଛନ୍ତି । ମୁଁ କହୁଛି ତାଙ୍କୁ ମା'ମାନେ ଅସଲ ଶିକ୍ଷା ଦେଲେ । ସେ ବର୍ତ୍ତମାନ ପ୍ରକୃତରେ ଶିକ୍ଷା ପାଇଛନ୍ତି । ଏହିଭଳି ଅନ୍ୟାନ୍ୟ ଗାଁମାନଙ୍କରେ କଲେ ଲୋକମାନେ କମ୍ ମଦ ପିଅନ୍ତେ ଏବଂ ଖରାପ କାମକରିବା ଠାରୁ ଦୂରରେ ରହନ୍ତେ ।

ବିଶ୍ୱମ୍ଭର ପ୍ରଧାନ
ରାଙ୍ଗାମାଲା ଶିକ୍ଷାକେନ୍ଦ୍ର, ମିଣିଆ
କନ୍ଧମାଳ



# ରଙ୍ଗପଦରର ଖାସ୍ କଥା

ଆମ ଗାଁ ବିଷୟରେ ଜାଣିଲେ ସମସ୍ତେ ପ୍ରାୟ ଆଶ୍ଚର୍ଯ୍ୟ ହେବେ । ବାଲନ୍ଦାପଡ଼ା ପଞ୍ଚାୟତରୁ ୧୫ କିଲୋମିଟର ଚାଲି ଚାଲି ଆସିଲେ ଗାଁଟି ପଡେ । ବର୍ତ୍ତମାନ ଗାଁରୁ ୩ କିଲୋମିଟର ଛାଡ଼ି ପାଇରାଙ୍କୁ ଗାଁ ପର୍ଯ୍ୟନ୍ତ ଗାଡ଼ି ଆସିପାରୁଛି । ଏଠାକୁ ସରକାରୀ ଲୋକ ପ୍ରାୟ ଆସନ୍ତି ନାହିଁ । ଗାଁର ପିଲାମାନେ ପାଠପଢ଼ାରୁ ପୂରା ବଞ୍ଚିତ ହୋଇ ରହିଥିଲେ । ଗତ ବର୍ଷ ଠାରୁ ଅଗ୍ରଗାମୀ ତରଫରୁ 'ନବସୃଜନ ସ୍କୁଲ' କରାଯାଇଛି । ଏଠାରୁ ରହି ଆପଣଙ୍କୁ ମୋ ମନର କଥାକୁ ଜଣାଉଛି ।

ମୁଁ ଏଠାରେ ଗ୍ରାମବାସୀ ଓ ଛୋଟ ଛୋଟ ଭାଇଭଉଣୀମାନଙ୍କ ସହ କୁଶଳରେ ଅଛି । ଆପଣମାନେ ମଧ୍ୟ ସେଠାରେ କୁଶଳରେ ଥିବେ ବୋଲି ମୋର ଆଶା ଓ ବିଶ୍ୱାସ । ମୁଁ ଗାଁ ଲୋକଙ୍କ ସହିତ ସବୁବେଳେ ଥାଇ ସେମାନଙ୍କ ସମସ୍ୟାରେ ନିଜକୁ ସାମିଲ କରି ସମାଧାନର ପନ୍ଥା ବାହାର କରିବା, ନୂଆ ନୂଆ ଯୋଜନାକୁ ଗାଁ ଲୋକଙ୍କୁ ଜଣାଇବା, ରାତ୍ର ସ୍କୁଲରେ ନିତିଦିନିଆ କାମରେ ଲାଗୁଥିବା ବିଜ୍ଞାନ ବିଷୟରେ ପିଲାମାନଙ୍କୁ କହିବା, ଝିଅମାନେ କିପରି ବେଶି ସଂଖ୍ୟାରେ ସ୍କୁଲକୁ ଆସିବେ ଏବଂ ନାଚ, ଗୀତ, ଗପକୁ ଗୁରୁତ୍ୱ ଦିଆଯିବା ପାଇଁ ଆପଣ ଚିଠିରେ ଲେଖିଥିଲେ । ସେଥିପାଇଁ ମୁଁ ଆପଣଙ୍କ ଚିଠି ପାଇ ବହୁତ ଖୁସି ଆନନ୍ଦ ଅନୁଭବ କଲି । ଗାଁର ସବୁ ପିଲା କିପରି ସ୍କୁଲକୁ ଆସିବେ ଓ ଝିଅମାନେ କିପରି ବେଶି ସଂଖ୍ୟାରେ ସ୍କୁଲଖୁ ଆସିବେ ସେଥିପାଇଁ ଯଥାସାଧ ଚେଷ୍ଟା କରୁଛି ।

ଗତ ନଭେମ୍ବର ମାସରେ ମୁଁ ନବସୃଜନ ଶିକ୍ଷାକେନ୍ଦ୍ର ବୋର୍ଡ଼ ଲେଖିବାକୁ ଯାଇଥିଲି, ବୋର୍ଡ଼ ଲେଖିବା ଶେଷ ହେଲାପରେ ମୁଁ ମୋ ଶିକ୍ଷାକେନ୍ଦ୍ରକୁ ଆସିଲି । କ୍ଲାସ କରିବା ପୂର୍ବରୁ ମୁଁ ପ୍ରତ୍ୟେକ ପିଲାଘରକୁ ଯାଇ ଡ଼ାକିବାରୁ ପ୍ରତି ଘରର ପିଲାମାନେ ମନା କରିଦେଲେ ଯେ ଆମେ ସ୍କୁଲକୁ ପଢ଼ିବା ପାଇଁ ଆସିବୁ ନାହିଁ । କାରଣ ତୁମେ ପ୍ରତିଦିନ ସ୍କୁଲରେ ରହୁ ନାହିଁ । ସେଇଠୁ ମୁଁ ପିଲାମାନଙ୍କୁ ବୁଝାଇଲି, ନବସୃଜନ ଶିକ୍ଷାକେନ୍ଦ୍ର ବୋର୍ଡ଼ ଲେଖିବାପାଇଁ ଯାଇ ଦଶ ଦିନ ରହିଥିଲି । ଏହିପରି ମୋ ସ୍କୁଲରେ ସମସ୍ୟା ଦେଖାଯାଇଥିଲା । ବର୍ତ୍ତମାନ ଦୁଇ ସପ୍ତାହ ହେଲାଣି ଠିକ୍ ଭାବେ ସ୍କୁଲ୍

ଚାଲୁଛି; ପିଲାମାନେ ମଧ୍ୟ ଆସୁଛନ୍ତି ।

ପ୍ରତିଦିନ ସନ୍ଧ୍ୟା ଛଅ ଘଣ୍ଟାରୁ ନଅ ଘଣ୍ଟା ପର୍ଯ୍ୟନ୍ତ ପିଲାମାନଙ୍କୁ ପାଠପଢ଼ା ଯାଉଛି । ବର୍ତ୍ତମାନ ମାସକୁ ୫ ଲିଟର ଲେଖାଏଁ କିରୋସିନ ଦିଆଗଲେ ମଧ ତାହା ନିଅଣ୍ଟ ହେଉଛି । ସେଥିପାଇଁ ଆଉ ଦୁଇ ଲିଟର ଅଧିକ ଦିଆଯାଉ ବୋଲି ଆମ୍ଭେମାନେ ଆଲୋଚନା କରିଥିଲୁ । ଏ ବାବଦରେ ସ୍କୁଲ କମିଟି ଓ ଗାଁ ଲୋକଙ୍କୁ ଜଣାଇବି । ଆମ ପାହିରାକୁ ପଞ୍ଚାୟତକୁ କଲେକ୍ଟର ଓ ଅନ୍ୟାନ୍ୟ ସରକାରୀ କର୍ମଚାରୀ ଡ଼ିସେମ୍ବର ୨୫ ତାରିଖରେ ଆସିଥିଲେ । ସେତେବେଳେ ଅନେକ ଲୋକ ପଞ୍ଚାୟତର ଓ ଗାଁର ସମସ୍ୟାଗୁଡ଼ିକୁ କଲେକ୍ଟରଙ୍କୁ ଜଣାଇଥିଲେ ।

ଆମର ରଙ୍ଗପଦର ଗାଁ ବିଷୟରେ ମୁଁ ଏବଂ ଆମ ସ୍କୁଲ କମିଟି ସହିତ ଆମ ଗାଁର ସୁବିଧା ଅସୁବିଧା ବିଷୟରେ ଜଣାଇଲୁ । ସମସ୍ୟା ଗୁଡିକ ଯଥା; ୧. ପଞ୍ଚାୟତକୁ ଯିବାଆସିବା କରିବା ପାଇଁ ଆମ ଗାଁ ଠାରୁ ରାସ୍ତା ନାହିଁ । ୨. ଆଗରୁ ପାଇଆସୁଥିବା ବାର୍ଦ୍ଧକ୍ୟ ଭତ୍ତା ବର୍ତ୍ତମାନ ଗାଁର ଲୋକେ ପାଇପାରୁ ନାହାଁନ୍ତି ।

ଗାଁରେ ଦୁଇ ଜଣ ଦୁଇ ଟଙ୍କିଆ ଚାଉଳ ପାଇବା କଥା ପାଇପାରୁନାହାଁନ୍ତି । ସେମାନଙ୍କୁ ଦିଆଯାଉ ବୋଲି କଲେକ୍ଟରଙ୍କୁ ଜଣାଇଲୁ । ଏହି ବିଷୟକୁ ନେଇ ସ୍କୁଲ କମିଟି ଓ ମୁଁ ମିଶି ଆପତ୍ତି ଅଭିଯୋଗ କଲେକ୍ଟରଙ୍କ ସାମନାରେ ଆମର ଦାବିପୂରଣ ହେଉ ବୋଲି କହିଲୁ । କଲେକ୍ଟର ମଧ୍ୟ ୨/୩ ମାସ ଭିତରେ ତୁମ କଥା ବୁଝାଯିବ ବୋଲି କହିଲେ । ଗାଁ ଲୋକମାନେ ସରକାରଙ୍କ ପାଖରେ ସୁବିଧା ଅସୁବିଧା ବିଷୟରେ ଜଣାଇବା ପାଇଁ ଏତେ ଭୟ କରୁଛନ୍ତି; ସେ କଥା ପ୍ରଥମ କରି ମୁଁ ଉପଲବ୍ଧି କଲି । ଯଦିଓ କଲେକ୍ଟର ଆମ କଥା ବୁଝିବେ ବୋଲି କହିଛନ୍ତି, ତଥାପି ଆମ କଥା କେତେ ତାଙ୍କ ମନରେ ରହିବ ସେ କଥା ଲୋକମାନେ ବୁଝିବା କଥା । ଆମ୍ଭେମାନେ ଖାଲି ପାଠ ପଢ଼ାଇଲେ ହେବ ନାହିଁ ବରଂ ଲୋକମାନଙ୍କ ପାଇଁ ଥିବା ସୁବିଧା ସୁଯୋଗ ସେମାନେ କିପରି ପାଇପାରିବେ ସେ ବିଷୟରେ ଆମେ ସଜାଗ ହୋଇ କାମ କରିବା ଆବଶ୍ୟକ । ଆମ ସ୍କୁଲର ପିଲାମାନେ ଭଲରେ ଗଣ୍ଡେ ଖାଇକରି ସ୍କୁଲ ଆସିବେ ଏବଂ ସେହି ତୁଳନାରେ ଲୋକମାନେ ବି ଖାଇବାକୁ ପାଇବେ, ସେ ବିଷୟରେ ମଧ ଆମ୍ଭେମାନେ ଧ୍ୟାନ ଦେବା ଦରକାର । ଏତିକିରେ ମୋ ଲେଖାଟି ଶେଷ କରି ରହୁଛି ।

**ଅର୍ଜ୍ଜୁନ କହଁର**

**ନବସୃଜନ ଶିକ୍ଷାକେନ୍ଦ୍ର, ରଙ୍ଗପଦର**



# ପ୍ରଥମ ଦିନରୁ ଆଜି ଯାଏଁ

କାଶୀପୁର ବ୍ଲକ୍ ଠାରୁ ପ୍ରାୟ ୨୦ କିଲୋମିଟରରୁ ଅଧିକ ହେବ ଶିରିପାଇ ଉପକେନ୍ଦ୍ରର ବାଲ୍‌କାପାଇ ଏକ ଗାଁ । ଏହି ଗାଁରେ ୨୨ଟି ପରିବାର ବାସ କରନ୍ତି । ବର୍ତ୍ତମାନ ଗାଁରେ ପୁରୁଷ ସଂଖ୍ୟା ୨୨ ଓ ମହିଳାଙ୍କ ସଂଖ୍ୟା ହେଉଛି ୨୬ଜଣ । ଉଭୟ ବାଳକ ଓ ବାଳିକା ୨୨ ଜଣ ଲେଖାଏଁ ଅଛନ୍ତି । ଏହିପରି ଗାଁରେ ସମୁଦାୟ ଲୋକସଂଖ୍ୟା ହେଉଛନ୍ତି ୯୨ ଜଣ । ଆମ ସ୍କୁଲରେ ୨୨ଜଣ ପିଲାପାଠ ପଢ଼ିବାକୁ ଆସନ୍ତି । ଏହି ଗାଁର ଚାରିପଟେ ପାହାଡ଼ ଘେରି ରହିଛି । ଗାଁର ପୂର୍ବ ଦିଗରେ ଥିବା ପାହାଡ଼ଟିକୁ ଗାଁର ଲୋକମାନେ ମଶାଣି ପାହାଡ଼ ବୋଲି କହନ୍ତି । ସେହି ଜାଗାରେ ମଣିଷ ମଧ୍ୟ ପୋତି ଦିଅନ୍ତି । ପ୍ରଥମେ ଯେତେବେଳେ ମଶାଣି କଥା ଶୁଣିଲି ସେତେବେଳେ ସେଠାରେ ରହିବା ଭଳି ମୋତେ ଲାଗୁନଥାଏ । ମନ ଭିତରେ ଭୟ ଥିବାରୁ ସେହି ଦିନହିଁ ଘରକୁ ଚାଲିଆସିବି ବୋଲି ଭାବିଲି । ପଶ୍ଚିମରେ କଡିହାରୁ ପାହାଡ଼ । ଉତ୍ତର ଓ ଦକ୍ଷିଣକୁ ଛାଡି ଗମାଗଣ୍ଡା ଓ ଦେବତା ଥିବା ଛୋଟିଆ ଡଙ୍ଗରକୁ ଦେଖିବା ପରେ ଏହି ଜଙ୍ଗଲ ଓ ପାହାଡ ଭିତରେ ରହିବି ବୋଲି ଚିନ୍ତା କରୁଥାଏ । ବେଳେବେଳେ ଡରରେ ଗୀତ ଗାଇ ପକାଉଥାଏ । ସେହି ଦିନଟି ଏମିତି ଡର ଏବଂ ଚିନ୍ତାରେ କଟିଗଲା ।

ଏହି ଗାଁର ଚାରି ଦିଗରେ ପାହାଡ ଜଙ୍ଗଲ, ତାହାରି ମଝିରେ ଆମ ନବସୃଜନ ଶିକ୍ଷାକେନ୍ଦ୍ରଟି ଅବସ୍ଥିତ । ପ୍ରଥମ ଦିନ ଯେତେବେଳେ ଗାଁର ଲୋକମାନଙ୍କ ସଙ୍ଗରେ ଯାଇ ମିଶିଲି ଏବଂ ଲୋକମାନଙ୍କ ସଙ୍ଗରେ କଥା ହେବାପାଇଁ କହିଲି ସେତେବେଳେ ମାତ୍ର ଦୁଇତିନି ଜଣ ଲୋକ ଆସି କଥା ହେଲେ । ରାତିରେ ଘରେ ଘରେ ଯାଇ ଲୋକମାନଙ୍କ ସଙ୍ଗରେ କଥା ହେଲି ଓ ଗାଁ ଦାଣ୍ଡରେ ବସି କିଛି ଆଲୋଚନା କରିବା ବୋଲି କହିଲି । ପ୍ରଥମେ ମୁଁ ଯେଉଁ ଉଦ୍ଦେଶ୍ୟ ରଖି ଏଠାକୁ ଆସିଛି ସେ ବିଷୟରେ ଲୋକମାନଙ୍କୁ ଜଣାଇଲି । ଗାଁ ପାଖରେ ଦିନ ସ୍କୁଲଟିଏ ଅଛି । କିନ୍ତୁ ସେଠାକୁ ପିଲାମାନେ ଯାଉନଥିଲେ । ସ୍କୁଲ ଏବଂ ପାଠପଢ଼ା କଥା ପଡିଲାବେଳକୁ ଲୋକମାନେ ଅନେକ

କଥା କହିଲେ । ଦିନରେ ଆମ ପିଲାମାନେ ଡଙ୍ଗରକୁ ନଗଲେ ଆମେ କ'ଣ ଖାଇବୁ ? ଖାଇଲେତ ସରି ପାଠ ପଢି ପାରିବୁ ? ଦିନ ସ୍କୁଲ ଥିଲେ ବି ପିଲାମାନେ ସ୍କୁଲକୁ ଯାଉନାହାନ୍ତି । ଆପଣମାନଙ୍କୁ ସପନ ଭଳି ଲାଗିବ କିନ୍ତୁ ସତ କଥାଟିଏ କହୁଛି । ବର୍ତ୍ତମାନ ସରକାରୀ ସ୍କୁଲରେ ମାତ୍ର ୭/୮ ଜଣ ପିଲା ଆସୁଥିବା ବେଳେ ରାତି ସ୍କୁଲରେ ସବୁଦିନେ ୧୭/୧୮ ଜଣରୁ ଅଧିକ ପିଲା ଆସୁଛନ୍ତି । ଏହି ଗାଁରେ ନବସୃଜନ ଶିକ୍ଷାକେନ୍ଦ୍ର ଆରମ୍ଭ ହେବା ଦିନଠାରୁ ୬ଜଣ ପୁରୁଷ ଓ ଢଣେ ମହିଳା ଦସ୍ତଖତ ଶିଖିସାରି ବହି ପଢ଼ିବାକୁ ବାହାରିଲେଣି ।

ଗାଁର ସ୍କୁଲ ଘର ନହେବା ପର୍ଯ୍ୟନ୍ତ ସେହି ଗାଁରେ ଗଉଁତିଆ ଆଉ ଜାନି ଘରେ ରହି ପିଲାଙ୍କୁ ପଢ଼ାଇଲି । ପ୍ରଥମେ କିଛି ଦିନ ପିଲାମାନଙ୍କ ସାଙ୍ଗରେ ହସଖୁସୀ କଲି ଏବଂ ସେମାନଙ୍କ ସାଙ୍ଗରେ ଖେଳାବୁଲା କଲି । ଗାଁରେ ଅନେକ ପିଲା ନିଶାଦ୍ରବ୍ୟ ଖାଉଥିବାର ଦେଖିବାକୁ ପାଇଲି । ପ୍ରାୟ ଅନେକ ପିଲା ଧୁଙ୍ଗିଆ ଖାଉଥିଲେ ଓ କେତେକ ପିଲା ଧୁଆଁ ମଧ ଖାଉଥିଲେ । ଏହି କଥା ବିଷୟରେ ଗାଁର ଲୋକମାନଙ୍କୁ ପଚାରିବାରୁ ସେମାନେ କହିଲେ ଆମେ ଯଦି ପିକା କରି ଦେବାନାହିଁ, ତେବେ ସେମାନେ ଗାଇକୁ ଯିବେ ନାହିଁ କି ପିଲାକୁ ମଧ ଧରିବେ ନାହିଁ । ସେଥିଲାଗି ଆମେ ବାଧ ହୋଇ ପିଲାଙ୍କୁ ପିକା ଦେଉଛୁ । ଏକଥା ଶୁଣିବା ପରେ ନିଜକୁ ନିଜେ ପାଠପଢ଼ାଇବା ବେଳେ ଏହାକୁ ଛଡ଼ାଇବି ବୋଲି ଭାବିଲି । ଗାଁରେ ମିଟିଂ ହେଲାବେଳେ ବାପା ମା'ମାନେ ଏହାର କୁପ୍ରଭାବ ବିଷୟରେ ମଧ ସେମାନଙ୍କୁ ଜଣାଇଲି । ପିଲାମାନେ ସ୍କୁଲରେ ପଢ଼ିଲା ବେଳେ ନିଜର ସ୍ୱାସ୍ଥ୍ୟରକ୍ଷା କଥା କହିଲାବେଳେ ଏକଥା କହିଥିଲି । ପ୍ରକୃତରେ ମଣିଷର ଦେହ ଭଲ ରହିଲେ ସବୁକିଛି ଭଲ ରହିବ । ସେଥିପାଇଁ ଭଲ ଖାଦ୍ୟ ଖାଇବ । କିଛି ନ ମିଳିଲେବି ଆମେ ଜଙ୍ଗଲକୁ ଅନେକ ପ୍ରକାରର ଫଳ ପାଉଛେ ତାହାକୁ ଖାଇବା ନିହାତି ଦରକାର । ଆମର ଦେହ ପାଇଁ କି ଖାଦ୍ୟ ଖାଇବା ଏବଂ ବେଶୀ କ୍ଷତି କରିବ ସେ ବିଷୟରେ କହିଲାବେଳେ ଏହି ନିଶା କଥା କହିଲି ଏବଂ ମୁଁ ସେଥିପାଇଁ ଖାଉ ନାହିଁ ବୋଲି କହିଥିଲି । ଆମ ସ୍କୁଲରେ ପଢୁଥିବା ପିଲାମାନେ ପ୍ରାୟ ନିଶା ଖାଉ ନାହାନ୍ତି । ଗାଁର କୌଣସି ପିଲା ଓଡ଼ିଆ ଭାଷାରେ କିଛି କହିପାରୁ ନ ଥିଲେ ଏବେ କେତେଜଣ ଓଡ଼ିଆ କଥା ମଧ କହିଲେଣି ।

ଏହି ଗାଁର ଲୋକମାନେ କୌଣସି ସୁବିଧା ସୁଯୋଗ ପାଇପାରୁ ନାହାଁନ୍ତି । ମୁଁ ଏଠାକୁ ଆସିବା କେତେମାସ ପର୍ଯ୍ୟନ୍ତ ଲୋକମାନେ ରୋଗ ହେଲେ ଦିଶାରୀ ଉପରେ

ନିର୍ଭର କରୁଥିଲେ । ବର୍ତ୍ତମାନ ଆମେ ପାଖରେ କିଛି କିଛି ଔଷଧ ଆଣି ରଖିଛୁ । ଏବେ ଡାକ୍ତରଖାନା ଗଲେଣି । ଏମିତି କି ହଇଜା ଲାଗିଲେ ମଧ୍ୟ ଡାକ୍ତରଙ୍କ ପାଖକୁ ଗଲେଣି । ଏହିସବୁ କଥା ଲାଗି ମୋତେ ଏଠାରେ ଭଲ ଲାଗୁଛି । ଲୋକମାନେ ଧୀରେ ଧୀରେ ସବୁକଥା ଜାଣିବାକୁ ଇଚ୍ଛା କଲେଣି । ସ୍କୁଲ ସହିତ ଗାଁର ବିଭିନ୍ନ କଥା ଆଲୋଚନା କଲାବେଳେ ଦେଶବିଦେଶ କଥା ମଧ୍ୟ ପଡ଼ିଯାଉଛି । ସ୍କୁଲ କମିଟି ସ୍କୁଲର ଦାୟୀତ୍ୱ ନେଉଛି । ଆଗକୁ ଛେଳି ଚାଷ କରିବା ପାଇଁ ଯୋଜନା କରୁଛୁ । ପିଲାମାନେ ପାଠନପଢ଼ି କ'ଣ ଥିଲେ ? ବର୍ତ୍ତମାନ ପାଠପଢ଼ି କ'ଣ କରୁଛନ୍ତି ବା କରିବେ ସେ ବିଷୟରେ ଲୋକମାନେ ଅନୁଧ୍ୟାନ କଲେ ଅନେକ କିଛି କଥା ବାହାରି ପାରିବ ଯାହାକି ଆଗକୁ ଦେଖିବାର ଅଛି ।

ଆଦୁ ମାଝୀ
ନବସୃଜନ ଶିକ୍ଷାକେନ୍ଦ୍ର, ବାଲକାପାଇ କାଶୀପୁର



# ଗୋଟିଏ ବର୍ଷର କଥା

ଆଜିକୁ ଏହି ଗାଁରେ 'ନବସୃଜନ ଶିକ୍ଷାକେନ୍ଦ୍ର' ଚାଲିବାର ପ୍ରାୟ ଏକ ବର୍ଷ ଗତ ହୋଇଗଲାଣି । ଏହା ଭିତରେ ଆମେ ଅନେକ କିଛି ଘାତପ୍ରତିଘାତ ଦେଇ ଆଗକୁ ଚାଲିଛୁ । ତେବେକେବେଳେ ଲୋକମାନଙ୍କ ପାଖରେ ହାରିଯାଇଛୁ ତ କେତେବେଳେ ନିଜେ କିଛି କରି ଦେଖେଇବାକୁ ଚେଷ୍ଟା କରୁଛୁ । ଆମେ ଥରେ କର୍ମୀ ଓ ଗୁରୁଭଉଣୀମାନେ ମିଶି ଆଲୋଚନା କରିବା ଭିତରେ ଏହି କଥା ପଡ଼ିଥିଲା । ଏହି ବର୍ଷକ ଭିତରେ ଆମେ ସ୍କୁଲ, ଶିକ୍ଷା, ପରିଚାଳନା, ପାଠପଢ଼ା ଓ ଗାଁ ଲୋକମାନଙ୍କ ଉପରେ ତାହାର ପ୍ରଭାବ ବିଷୟରେ କିଛି ଲେଖିବା ପାଇଁ କଥା ହେଲୁ । ଆଜି ସେହି କଥାଟି ବିଷୟରେ ଲେଖୁଛି ।

ଗାଁରେ ଯେତେବେଳେ ସ୍କୁଲ କରିବା କଥା ପଡିଲା ସେତେବେଳେ ଲୋକମାନେ ଆଗ୍ରହର ସହିତ ଯଥାଶୀଘ୍ର ଏହାକୁ କରିଦେବେ ବୋଲି କହିଲେ । ପ୍ରାୟ ଏତେ ଶୀଘ୍ର କେଉଁ ଗାଁର ଲୋକ ସ୍କୁଲ କରିନଥିବେ । ମାତ୍ର ଗୋଟିଏ ମାସ ଭିତରେ ମୋପାଇଁ ରହିବାଘର ଓ ପିଲାମାନଙ୍କ ପାଇଁ ପାଠପଢ଼ାଘର କରିଦେଇଥିଲେ । ଆମେ ସ୍କୁଲ କମିଟି କରିବା ବେଳେ ଏହି କଥା କହିଥିଲୁ ଯେ ଏହି କମିଟି ହିଁ ସ୍କୁଲ ଚଳାଇବାର ସମସ୍ତ ଦାୟିତ୍ୱ ନେବ । ଅଗ୍ରଗାମୀ ଖାଲି ଶିକ୍ଷକଙ୍କର ଦରମା ଓ ପିଲାମାନଙ୍କ ପାଇଁ ପାଠପଢ଼ା ସାମଗ୍ରୀ ଦେବ । ଏହି କଥାକୁ ଧରି ସ୍କୁଲ ଚଳାଇବା ପାଇଁ କମିଟିର ସଭ୍ୟ ସଭ୍ୟାମାନେ ଆଗକୁ ବାହାରି ଆସୁଛନ୍ତି । ଏ ପର୍ଯ୍ୟନ୍ତ ସେମାନେ ସ୍କୁଲ ପିଲା ଆସିଲେକି ନାହିଁ ଏବଂ ମୋର ସୁବିଧା ଅସୁବିଧା ବିଷୟରେ ବୁଝୁଛନ୍ତି । ଏମିତିକି ପ୍ରଥମେ ପ୍ରଥମେ ସ୍କୁଲର ସଭାପତି ଗାଁର ପ୍ରତ୍ୟେକ ଘରେ ଘରେ ପିଲାମାନେ ଆସିବା ପାଇଁ ସନ୍ଧ୍ୟା ସମୟରେ ଡାକି ବୁଲନ୍ତି । ଏହା ଆଉ କରିବାକୁ ପଡୁନାହିଁ । ଆମ ସ୍କୁଲର ପିଲା ସଂଖ୍ୟା ୩୬ଜଣଙ୍କ ମଧ୍ୟରୁ ପ୍ରତିଦିନ ୨୫ଜଣରୁ ଅଧିକ ପିଲା ଆସୁଛନ୍ତି । ସାଧାରଣତଃ ପିଲାମାନେ ସକାଳୁ ଆସୁଛନ୍ତି । ଏହାଛଡ଼ା ଯୁବକ ଯୁବତୀମାନେ ମଧ୍ୟ ସନ୍ଧ୍ୟା ସମୟରେ

ଆସି ପିଲାମାନଙ୍କ ପାଖରେ ବସୁଛନ୍ତି । କେତେଜଣ ନିଜେ ପାଠପଢ଼ିବା ପାଇଁ ସିଲଟ କିଣିଲେଣି । ସେମାନଙ୍କୁ ଦସ୍ତଖତ ଶିଖାଯାଉଛି । କେତେକ ଭାଇ ଜାଣିଥିବା ଗପ ଓ ଗୀତ କହୁଛନ୍ତି । ଅଧିକାଂଶ ପିଲାଗଣିତ, ମାତ୍ରା ଶିଖୁଥିବା ବେଳେ କେତେଜଣ ନିଜ ଖୁସି ଅନୁସାରେ ସିଲଟରେ ଗାରାଗାରି କରୁଛନ୍ତି । ଗୀତ ଗପ କରି ପିଲାମାନେ ପଢ଼ିପାରିବେ କିଭଳି ସେଥିପାଇଁ ମୁଁ ମଧ କିଛି ଗୀତ ଓ ନାଚ କରି ପିଲାମାନଙ୍କୁ ପଢ଼ାଉଛି । ଏହାଛଡ଼ା ଆଞ୍ଚଳିକ ସାମାଜିକ ଚଳଣି, ସ୍ଥାନୀୟ ପରିବେଶକୁ ନେଇ ଭୂଗୋଳ, ନିଜ ପରିବାର, ଜାତି, ଗାଁ ଓ ଆମର ଚଳଣିକୁ ନେଇ ଇତିହାସ କଥା କହୁଛି । ଗାଁରେ ଅନ୍ୟାନ୍ୟ ବୟସ୍କ ଲୋକେ କିପରି ନିଜ ଦସ୍ତଖତ ଜାଣିବେ ସେ ବିଷୟରେ ଆମ୍ଭେମାନେ କିଛି କହିବା ନିତାନ୍ତ ଜରୁରୀ । ମୁଁ ଏହି ବର୍ଷ କରେ ମାତ୍ର ଦୁଇଥର ଏକଥା କରିଛି । ମୋତେ ସମୟ ଅଭାବ ହେଉଛି । କିନ୍ତୁ ଆଗରେ ଏକଥା ବିଷୟରେ ଗୁରୁତ୍ୱ ଦେବି ବୋଲି ଭାବୁଛି ।

ଭବିଷ୍ୟତରେ ଆମ ଆୟକାରୀ ଯୋଜନା ମାଧ୍ୟମରେ ସ୍କୁଲ ନିଜକୁ ନିଜେ ଚଳାଇପାରିବୁ ବୋଲି ଅଗ୍ରଗାମୀ ପାଞ୍ଚ ହଜାର ଟଙ୍କା ଦେଇଛି । ଆମେ ସେଥିରେ ଲୁଗା ଦୋକାନ ଖୋଲିଛୁ । ଯାହାର ଦାୟିତ୍ୱ ଗାଁର ମା'ମାନଙ୍କୁ ଦିଆଯାଇଛି । ସେମାନେ ମଧ ଏହାକୁ କିଣାବିକା କରୁଛନ୍ତି । ବିଶେଷ କରି ବିବାହ ଉତ୍ସବ ସମୟରେ ଲୁଗା ବିକ୍ରି ଭଲ ହେଉଛି । ପଇସାକୁ ପାଖ ପୋଷ୍ଟ ଅଫିସରେ ରଖୁଛୁ । ଆମକୁ ମିଳିବାକୁ ଥିବା ଟଙ୍କା ସବୁକୁ କାମରେ ଲଗାଇ ସେଥିରୁ ଲାଭ ବାହାର କରି ଆଗକୁ ସ୍କୁଲ ଚଳାଇବୁ ବୋଲି ଲୋକମାନଙ୍କର ମତ । ଏହା ହେଉଛି ଗୋଟିଏ ଭଲ ଯୋଜନା ଏହାକୁ କାର୍ଯ୍ୟକାରୀ କରି ନପାରିଲେ ଆମ୍ଭେମାନେ ପରେ କିଛି କରିପାରିବା ନାହିଁ ବୋଲି ଲୋକମାନଙ୍କୁ କହିଛି । ଭାବୁଛି ଏହି ଯୋଜନାଟି ଆମ ଗାଁରେ ସଫଳ ହେବ ବୋଲି ।

ସ୍କୁଲଟି ଭଲରେ ଚାଲିବା ପାଇଁ ସ୍କୁଲ କମିଟିର ସଭ୍ୟାମାନେ ପ୍ରତି ମାସ ୧୫ ତାରିଖରେ ବସି ସବୁ ବିଷୟରେ ଆଲୋଚନା କରୁଛନ୍ତି । ଯେମିତିକି ସ୍କୁଲର ସମସ୍ୟା କ'ଣ ରହିଛି ଓ ଗାଁର ସମସ୍ୟା କ'ଣ ଓ ସେସବୁ କିପରି ସମାଧାନ ହୋଇପାରିବ ପ୍ରଭୃତି କଥା ପଡୁଛି । ଏଥିରେ ଗାଁର ପୁରୁଷ ଓ ମହିଳାମାନେ ଯୋଗ ଦେବା ଫଳରେ ସମସ୍ତଙ୍କ କଥା ସମସ୍ତେ ଜାଣିପାରୁଛନ୍ତି । ପ୍ରତିମାସରେ ମିଟିଂ ହେବାରୁ ଲୋକମାନଙ୍କ ମଧ୍ୟରେ କିଛି ସନ୍ଦେହ ରହୁନାହିଁ ଏବଂ ସମସ୍ତଙ୍କ ମଧ୍ୟରେ ସୁସମ୍ପର୍କ ରହିପାରୁଛି ।

ଏହି ସ୍କୁଲ ମାଧ୍ୟମରେ ଲୋକମାନଙ୍କ ଭିତରେ ଭଲ ବୁଝାମଣା ରହିପାରୁଛି । ଲୋକମାନେ ଏକତାର ସହିତ ସବୁ କାମ କରିବେ ବୋଲି ବାହାରୁଛନ୍ତି । ଗାଁରେ

ସାକ୍ଷରତା ହାର ବଢୁଛି । ସରକାରୀ କାମକୁ ଗାଁ କମିଟି ମାଧ୍ୟମରେ ନେବା ପାଇଁ ଆମେ ବୁଝାଉଛୁ । ଲୋକମାନେ ସରକାରୀ କାମ ନିଜେ ନେବାପାଇଁ ପଞ୍ଚାୟତରେ ଦାବି କଲେଣି । ଆମ ଗାଁକୁ ଛାଡି ଗୋଟିଏ ସ୍କୁଲ ଅଛି ଏବଂ କନ୍ଧମାଳରେ ଅନେକ ସ୍କୁଲ ଭଲ ଭାବରେ ଚାଲୁନଥିବା । ଅଗ୍ରଗାମୀ ସେଠାରେ ସ୍କୁଲ କରିବା ପରେ ଲୋକମାନେ ସରକାରୀ ସ୍କୁଲ ଚଳାଇବା ପାଇଁ ଅନେକ ଥର ବ୍ଲକ୍‌ରେ କହିଛନ୍ତି । ଯାହା ଫଳରେ ଅନେକ ନଚାଲୁଥିବା ସ୍କୁଲ ମଧ୍ୟ ଚାଲୁଛି । ଏଥିପାଇଁ ଏଠାରେ ଶିକ୍ଷକମାନଙ୍କ ସହିତ କନ୍ଧମାଳର ସଚେତନ ଲୋକମାନେ କେତେ ଲଢ଼େଇ କରୁଛନ୍ତି ସେକଥା ସମସ୍ତେ ଜାଣିଥିବେ । ଏହା ଜାରି କରିବା ଦରକାର । କାରଣ ଆମ୍ଭେମାନେ ଆମ ପିଲାମାନଙ୍କୁ ମଣିଷ କରିବା ପାଇଁ ଦାୟିତ୍ୱ ନେବା ଉଚିତ । ଏଣୁ ଏହି ସ୍କୁଲଟି କିପରି ଭଲରେ ଚାଲିପାରିବ ଏବଂ ଏହି ଗାଁର ପିଲାମାନେ କିପରି ଭଲ ଭାବରେ ପାଠ ପଢ଼ିବେ ନିଜ ବିଷୟରେ ସଚେତନ ହେବେ ସେଥିପାଇଁ ଚେଷ୍ଟା କରିଆସୁଛି । ଗାଁର ପ୍ରତ୍ୟେକ ଭଲ କାମ ପଛରେ ମୋର ସାହାଯ୍ୟ ରହିଛି । ଗୁରୁଭାଇ ଭଉଣୀ ହିସାବରେ ଆଗେ ଗାଁର ଭଲମନ୍ଦରେ ସହଯୋଗୀ ହୋଇ ଚାଲିବା ପାଇଁ ସମସ୍ତଙ୍କୁ ଏହି ପତ୍ରିକା ମାଧ୍ୟମରେ ଜଣାଉଛି ।

ଦାମୋଦର କହଁର<br>ନବସୃଜନ ଶିକ୍ଷାକେନ୍ଦ୍ର, ବୃଢ଼ିପଡ଼ା

□□□

# ଆମ ଗାଁର କେତୋଟି ସତ ଘଟଣା

ଆମ ବଡ଼ମାଟ୍ଟୁ ଗାଁକୁ ତା:୧୦-୧-୯୯ ଦିନ ଜଣେ ଲୋକ ସଂନ୍ଧ୍ୟା ୬ଟା ବେଳେ ଆସି ପିଲାମାନଙ୍କୁ ପଚାରିଲା, ମୋତେ ଟିକିଏ ମେମ୍ବର ଘର ଦେଖାଇଦିଅ । ପିଲାମାନେ ସେହି ଲୋକଟିକୁ ମେମ୍ବରର ଘର ଦେଖାଇଦେଲେ । ସେତେବେଳେ ମେମ୍ବର ନଥିଲେ ତାଙ୍କ ଘରେ କେବଳ ତାଙ୍କର ସ୍ତ୍ରୀ ଥିଲେ । ସେହି ଲୋକଟି କହିଲା, ମୋତେ କିଛି ଖାଇବାକୁ ଦିଅ । ହଠାତ୍ ଏମିତି କେହି ଜଣେ ଲୋକ ଆସି ଖାଇବାକୁ ମାଗିବାରୁ ମେମ୍ବରଙ୍କର ସ୍ତ୍ରୀ ତାଙ୍କୁ ତାଙ୍କର ପରିଚୟ ପଚାରିଲେ । ଲୋକଟି ଉତ୍ତର ଦେଲା ମୁଁ ହେଉଛି ଅଗ୍ରଗାମୀର ଗୁରୁଭାଇ ମୋତେ କାଶୀପୁରରୁ ଅଗ୍ରଗାମୀର ଲୋକମାନେ ପଠାଇଛନ୍ତି । ମହିଳା ଜଣକ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ତାଙ୍କର ପୁଅ ହାତରେ ମୋତେ ଡକାଇ ପଠାଇଲେ । ଏହାପରେ ମୁଁ ତାକୁ ପଚାରିଲି ତୁମକୁ ଅଗ୍ରଗାମୀର କର୍ମୀ କିଛି ଲେଖା ଦେଇଛନ୍ତି କି ? ସେ କହିଲା ମେମ୍ବର ଆସିଲେ ତାହାକୁ ଦେଖାଇବି । ଏହାପରେ ମୋତେ ସେ କିଛି ବହି ଦେଖାଇଲା । ମୁଁ ପଚାରିଲି ତୁମେ ଏଠାରେ କାମ କରିବ ବୋଲି କିଛି ଲେଖାଦେଇ ନାହାଁନ୍ତି କି ? ଏକଥା କହିବାରୁ ସେ କହିଲା ନାଁ ମୋତେ ଏହି ଗାଁରେ କାମ କରିବାକୁ ପଠାଇ ନାହାନ୍ତି । ମୁଁ ହୁଡ଼େରୀ ଗାଁର ଗୁରୁଭାଇ ମିଛୁଟାରେ ଏଠାକୁ ପଳାଇ ଆସିଛି । ପରେ ସେ ଲୋକଟିକୁ କହିଲେ, ସେହି ପାହାଡ଼ ଡେଇଁଲେ ସେ ଗାଁଟି ପଡ଼ିବ । ଲୋକଟି ଯେଉଁ ବାଟରେ ଆସିଥିଲା ସେହି ବାଟରେ ଚାଲିଗଲା । ଆମେ ଏଥିରୁ ଜାଣିବା କଥା ସେ ବର୍ତ୍ତମାନ ଅନେକ ଲୋକ ଏହିଭଳି ଭୁଲ କହି ବିଭିନ୍ନ ବାଟରେ ଆମ ଆଦିବାସୀ ଲୋକମାନଙ୍କୁ ଠକିବାକୁ ଆସିପାରନ୍ତି ସେଥିପାଇଁ ଆମକୁ ସଜାଗ ହୋଇ ରହିବାକୁ ପଡିବ ।

ଆଉ ଗୋଟିଏ କଥା କହୁଛି, ଆପଣମାନେ ଏକଥା ଶୁଣିଲେ ବିଶ୍ୱାସ କରିନପାରନ୍ତି । ତଥାପି ଏହା ହେଉଛି ସଂପୂର୍ଣ୍ଣ ସତ କଥା । ଏମିତି ସମସ୍ୟା ମୁଁ ମୋ ଜୀବନରେ ଦେଖିନଥିଲି । ଏହି ଗାଁର ଜଣେ ଲୋକ ସବୁବେଳେ ଡଙ୍ଗର ଉପରେ

ରହେ । ମୁଁ ସେକଥା ଜାଣିଥିଲେ ମଧ୍ୟ ତାହାର ରହସ୍ୟ କିଛି ଜାଣିନଥିଲି । ସବୁଦିନେ ସେଠାରେ ରହି ସେମାନେ ଚଳନ୍ତି । ଠିକ୍ ୭-୨-୧୯୯୯ ତାରିଖ ସକାଳ ୭ଟା ହେବ । ହଠାତ୍ ପାଖ ପାହାଡ ଉପରୁ କାନ୍ଦ ବୋବାଳି ପଡିଲା । ସମସ୍ତେ ଶୁଣୁଥାଆନ୍ତି, କିନ୍ତୁ କିଛି ବୁଝିପାରିଲେ ନାହିଁକି କ'ଣ କେହି କିଛି କହୁନଥାନ୍ତି । କିଛି ସମୟ ପରେ ତା'ର ପୁଅ ଆସି ଗାଁରେ କହିଲା ମୋର ବାପା ମରିଗଲା । ଲୋକମାନେ ତାହାର କଥା ଶୁଣିଲେ କିନ୍ତୁ କିଛି କହିଲେ ନାହିଁ । ଯାହାହେଲେବି ଲୋକମାନେ ଏକଥା ଶୁଣିବା ପରେ କିଛି ବିଚାର ମଧ୍ୟ କରିବେ । ଲୋକମାନେ ତା'ର ପୁଅକୁ କିଛି କହିଲେ ନାହିଁ ଓ ମୋତେ କିଛି ମୁଖିଆ ଲୋକ ଆସି ପଚାରିଲେ । ପ୍ରକୃତରେ ଗୁରୁଭାଇ ସେ ଲୋକକୁ ଆମେ ଗୋଷ୍ଠୀରେ ମିଶାଉ ନାହୁଁ ତେଣୁ ତା'କୁ ପୋଡିବାକୁ ଯିବୁ କିପରି ? ସେତେବେଳେ ଆଉ ଜଣେ ଲୋକ ମଧ୍ୟ କହିଲେ ମୋତେ ମଧ୍ୟ ଗୋଷ୍ଠୀରୁ ବାହାର କରିଥିଲେ; ପରେ ଗୋଟିଏ ଗାଈ ଦେବାରୁ ମୋତେ ଗୋଷ୍ଠୀରେ ମିଶାଇଲେ । ଏକଥା ଶୁଣିବା ପରେ ଲୋକମାନଙ୍କୁ ଅନେକ ବିଷୟ କହି ବୁଝାଇଲି । ପ୍ରକୃତରେ ମରିବା ଲୋକକୁ ଦାହ କରିବା ଆମ ଶାସ୍ତ୍ରରେ ବହୁତ ବଡ କାମ ବୋଲି କୁହାଯାଇଛି । ତେଣୁ ଆମେ ପ୍ରଥମେ ମଣିଷଟିକୁ ପୋଡ଼ିଦେବା ତାପରେ କ'ଣ ଦେବ ସେ କଥା ବିଚାର କରିବା । କିନ୍ତୁ ଲୋକମାନେ ଏଥିରେ ରାଜି ହେଲେ ନାହିଁ । ସେହି ସକାଳ ସମୟରୁ ଏହି ବିଷୟରେ ଆଲୋଚନା ହେଲା । ଲୋକମାନଙ୍କର ଏକାଜିଦ୍ ସେ ସମାଜକୁ କ'ଣ ଦେବ ସେକଥା ଠିକ୍ ନହେବା ପର୍ଯ୍ୟନ୍ତ ଆମେ ତା'ର ବାପାକୁ ପୋଡିବୁ ନାହିଁ । ଏହି ବିଷୟରେ ଦିନସାରା ଆଲୋଚନା ଚାଲିଲା । ଲୋକମାନଙ୍କୁ ଶବଦାହ କରିବା ପାଇଁ ବୁଝାଇବାରେ ମୋର ସେ ଦିନଟି ଚାଲିଗଲା । ଆପଣମାନେ ଆଶ୍ଚର୍ଯ୍ୟ ହେବେ ଲୋକଟି ଗୋଷ୍ଠୀକୁ ଦୁଇଟିଣ ମଦ ଦେବ ବୋଲି ଛିଡିବାରୁ ଶେଷରେ ଲୋକମାନେ ଶବଦାହ କରିବାକୁ ରାଜିହେଲେ । ସେତେବେଳେକୁ ସନ୍ଧ୍ୟା ହୋଇଯାଇଥାଏ ଶବଦାହ କରାଗଲା । ଏହି ଦିନଟିକୁ ମୁଁ କେବେ ଭୂଲିପାରିବି ନାହିଁ । ଆମ ଲୋକମାନଙ୍କୁ ବୁଝାଇବାକୁ ଏତେ କଷ୍ଟ କରିବାକୁ ପଡ଼ିବା ଉଚିତ୍ ନୁହେଁ ବୋଲି କହୁଛି ।

ପରଦିନର ଘଟଣା । ସେ ଗାଁର ଗ୍ରାମରକ୍ଷୀ ଆସି ଗାଁ ଲୋକମାନଙ୍କୁ ୧୫୦୦ଟଙ୍କା ମାଗିଲା । ଆଉ କହିଲା, ତୁମେ ତାହାର ଶବଦାହ କରିଛ ସେଥିଲାଗି ଯଦି ପଇସା ନଦିଅ ତେବେ ପୁଲିସ୍‌କୁ କହିବି ସେ ତୁମକୁ ବାନ୍ଧି ନେବେ । ଏହାକହି ସେ ଲୋକମାନଙ୍କୁ ଧମକାଇ ଦେଇଥାଏ । ସେତେବେଳେ ମୁଁ ଅଗ୍ରଗାମୀକୁ ଆସିଥିଲି ।

ପରଦିନ ଗାଁରେ ପହଞ୍ଚିଲା ପରେ ଲୋକମାନେ ମୋତେ ଏ ବିଷୟରେ କହିଲେ । ସଂନ୍ଧ୍ୟା ବେଳେ ଏ ବିଷୟରେ କଥା ହେଲୁ । ମୁଁ ଲୋକମାନଙ୍କୁ କହିଲି, ସେ ଲୋକଟି ବୁଢ଼ା ହୋଇ ମରିଛି । କିଛି ଅପମୃତ୍ୟୁ କରିନାହିଁ । ତୁମେ ଏଥିପାଇଁ କିଛି ଭୟ କରନାହିଁ । ସେ କ'ଣ କରିବା କଥା କରନ୍ତୁ । ଏକଥା ଶୁଣିବା ପରେ ଲୋକମାନେ ମୋ କଥାରେ ରାଜି ହେଲେ ଓ କାହାକୁ କିଛି ପଇସା ଦେବେ ନାହିଁ ବୋଲି ଠିକ୍ କଲେ । ଏବଂ ଶେଷରେ ଏହାହିଁ ହେଲା ଲୋକମାନେ ପଇସା କଥା ଉଠାଇଲେ ନାହିଁ ଓ ଗ୍ରାମରକ୍ଷୀ ମଧ୍ୟ ଆଉ ପଇସା ମାଗିବାକୁ ଆସିଲା ନାହିଁ ।

**ନାଥ ମାଝୀ**

**ଗୁରୁଭାଇ, ବଡ଼ମାଟ୍ଟ ନବସୃଜନ ଶିକ୍ଷାକେନ୍ଦ୍ର**



# ଆମ ଆଖିର ଅନ୍ଧ ପୁଟୁଳି
# ଖୋଲିବ କେବେ ?

ମହାପୁରୁଷମାନଙ୍କ କଥା ଆଜି ଆମେ ଭୂଲି ଯାଉଛୁ । ଏ ଦେଶର ସ୍ୱାଧୀନତା ପାଇଁ ସେମାନେ କେତେ କଷ୍ଟ କରିଥିଲେ । ଆମେ ମୋଟେ ସେକଥା ମନେ ରଖିପାରୁ ନାହେଁ । ସେମାନେ ଏତେ କଷ୍ଟ ସହି ଆମ ଦୁଃଖର ଭାରତକୁ ସ୍ୱାଧୀନ କରିଥିଲେ । ଏତେ ବର୍ଷ ବିତିଯାଇଥିଲେ ମଧ୍ୟ ଆମେ ତାଙ୍କର ମାନମହତକୁ ପାଦରେ ଦଳିଦେଉଛୁ । ଏହାର କାରଣ ହେଉଛି ସ୍ୱାଧୀନତାର ୫୦ବର୍ଷ ବିତି ଯାଇଥିଲେ ମଧ୍ୟ ଆମ ଆଖିର ଅନ୍ଧ ପୁଟଉଳି ଫିଟି ନାହିଁ । ଯେଉଁମାନେ ଏତେ ସଂଘର୍ଷ କରି ଏ ଦେଶକୁ ଗୋଟିଏ ସ୍ୱାଧୀନ ସରକାର ଗଢ଼ିଦେଇ ଗଲେ, ବର୍ତ୍ତମାନ କିନ୍ତୁ ସେହି ସରକାର ଆମ ଆଖିରେ ଅନ୍ଧ ପୁଟୁଳି ଆହୁରି ଜୋରରେ ବାନ୍ଧି ଦେବାକୁ ଉଦ୍ୟମ କରୁଛି । ପ୍ରକୃତରେ ସେହି ପୁଟୁଳି ୫୦ ବର୍ଷ ପରେ ଆମ ଆଖିରୁ ଫିଟିଯିବା କଥା । କିନ୍ତୁ ପଚାଶ ବର୍ଷ ପରେ ମଧ୍ୟ ଆମ ଆଖିରେ ଅନ୍ଧ ପୁଟୁଳି ବନ୍ଧା ହୋଇ ରହିଛି ।

ଆଖିର ଅନ୍ଧ ପୁଟୁଳି ଆଖିରେ ରହିଛି କାହିଁକି, ଏକଥା କାହାକୁ ପଚାରିବା ? ପ୍ରକୃତରେ ଏକଥା ଅନ୍ୟ କାହାକୁ ପଚାରିବା ଛଡା ନିଜକୁ ପଚାରିବା କଥା । ଆମ୍ଭେମାନେ ସ୍ୱାଧୀନ ଭାରତ ବର୍ଷର ନାଗରିକ ହୋଇ ପରାଧୀନ ଭଳି ଅନ୍ୟାୟକୁ ସହିବା ଆଉ ତାହାକୁ ସହିନେବା କାହିଁକି ? ଆମେ ଏଥିପାଇଁ ଲଢ଼େଇ କରିବା ଦରକାର । ସ୍ୱାଧୀନତାକୁ ନିଜ ହାତରେ ରଖି ବଞ୍ଚିବା ପାଇଁ ଚେଷ୍ଟା କରିବା ଦରକାର । ଏହାକୁ ଧରି ବାଟ ଚାଲିଲେ ଯାଇଁ ଆମ୍ଭେମାନେ ଆଗକୁ ଯାଇପାରିବା । ସମସ୍ତେ ଏକାଠି ହୋଇ ଏହାକୁ ସମ୍ମୁଖୀନ ହେବାକୁ ପଡ଼ିବ । ତାହା ହୋଉପାରୁ ନାହିଁ ବୋଲି ଆମକୁ ସମସ୍ତେ ଠକିବାରେ ଲାଗିଛନ୍ତି । ଆମେ ଏକାଠି ହୋଇ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବା ଏବଂ ନ୍ୟାୟ ପଥକୁ ଛାଡ଼ିବା ନାହିଁ । ଯେତେଦୂର ସମ୍ଭବ ଏହି ଶକ୍ତି ନେଇ ଆଗେଇ ଯିବା । କାରଣ

ଆମେ ଯାହା ହେଉନା କାହିଁକି; ଆମ ପୂର୍ବପୁରୁଷମାନେ ବହୁତ ସାହାସୀ ଥିଲେ । ଆମେ କିନ୍ତୁ ଏବେ ଡରି ଯାଉଛେ । ଏକଥା ମଧ୍ଯ ଲକ୍ଷ୍ମଣ ନାୟକ ଓ ଜୟୀ ରାଜଗୁରୁ ଇତ୍ୟାଦିଙ୍କ ଜୀବନରୁ ଜାଣିଥିବା । ଆମ ପାଖରେ ଗୋଟିଏ କଥା ରହିଯାଇଛି । ଯେଉଁଥିପାଇଁ ଆମେ ବର୍ତ୍ତମାନ ଭୟ କରିଯାଉଛେ । ସେ କଥାଟି ହେଲା, ବର୍ତ୍ତମାନ ଦେଶର ତଥା ଆମ ରାଜ୍ୟର ଅନେକ କଥା ଯେମିତିକି କେଉଁ ସମସ୍ୟା ଦେଇ ସମସ୍ତେ ଗତି କରୁଛନ୍ତି ସେ କଥା ଆମେ ଜାଣିପାରୁ ନାହାଁନ୍ତି । ଏହାର ମୂଳରେ ପାଠପଢ଼ିବା କଥାଟି ମଧ୍ଯ ରହିଛି । ସେଥିପାଇଁ ଆମେ ଅନେକ କଥା ଜାଣିପାରୁ ନାହାଁନ୍ତି । ତେଣୁ ଆମେ ଯଦି ପଢ଼ିକରି ଅନେକ କଥାା ଜାଣିବା ତେବେ ତେବେ ଯାଇ ଅନ୍ଧକୂପରୁ ବାହାରି ପାରିବା । ଆମେ ଏକଥାରେ ମଧ୍ଯ ବିଶ୍ୱାସ କରିବା ଯେ ଦିନେନା ଦିନେ ଏ ସମାଜର ତାଳେ ତାଳେ ଚାଲିବା । ଆମେ ହିଁ ଆମ ଅଞ୍ଚଳର ସମାଜରେ ଶିକ୍ଷିତ ଭରିଦେବା । ସମସ୍ତେ ପାଠପଢ଼ିବାକୁ ବାହାରିବେ । ଏକଥା ଧୀରେ ଧୀରେ ହେଉଛି । ଏହାକୁ ଅଧିକରୁ ଅଧିକ କାର୍ଯ୍ୟକାରୀ କରିବା ଦରକାର । ମଣିଷ ଶିକ୍ଷିତ ହେଲେ ପରିବାର ଶିକ୍ଷିତ ହେବ ଓ ପରିବାର ଶିକ୍ଷିତ ହେଲେ ଗାଁ ମଧ୍ଯ ଶିକ୍ଷିତ ହେବ । ଏହିପରି ଭାବରେ ଦେଶ ମଧ୍ଯ ଶିକ୍ଷିତ ହେବ ।

ଶିକ୍ଷିତ ହେବା ପରେ ନିଜେ ନିଜ ଅଧିକାର କଥା ଜାଣିବା ଆଉ ଆମ ଅଧିକାରକୁ ପାଇବା ପାଇଁ ସବୁବେଳେ ଚେଷ୍ଟା କରିବା । ଆମକୁ କେହି ତଳେ ରଖିପାରିବେ ନାହିଁ । ଆମେ ମଧ୍ଯ ବଡ ହୋଇପାରିବା । କାହାର ନଜରରେ ଆମକୁ ନିମ୍ନ ହେବାକୁ ଦେବା ନାହିଁ । ପଢ଼ି ଶୁଣି ଜାଣିବା ପରେ ଆମେ ଦେଶର ତଥା ଗାଁର ସବୁକଥା ଜାଣିବାକୁ ସକ୍ଷମ ହେବା । ଆମ ପାଇଁ ଆସୁଥିବା ସାହାଯ୍ୟ ସହଯୋଗ ବିଷୟରେ ଜାଣିପାରୁ ନଥିବାର କାରଣ ମଧ୍ଯ ଆଗରୁ କୁହାଯାଇଛି । ଅନେକ ସମୟରେ ଆମେ ଅନ୍ୟାୟ ଠକେଇ କଥା ଜାଣୁଥିଲେ ମଧ୍ଯ ନିରବ ରହୁଛନ୍ତି । ଆମେ ଯଦି ସବୁ କଥା ଜାଣିବା ତେବେ ସେମାନଙ୍କୁ ଜବାବ ନଦେବା କାହିଁକି ? ମୋ ମତରେ ଯେଉଁମାନେ ଏ ସବୁ ବିଷୟରେ କିଛି କଥା ଉଠାଉ ନାହାନ୍ତି ସେମାନଙ୍କ ଆଖିରେ ହିଁ ଅନ୍ଧ ପୁଟୁଳି ବନ୍ଧା ହୋଇଛି ।

ଆମେ ଆଜିଠାରୁ ନିଜକୁ ପରିବର୍ତ୍ତନ କରିବା ସଙ୍ଗେ ସଙ୍ଗେ ଆମ ଗାଁର ସମସ୍ତଙ୍କୁ ଶିକ୍ଷିତ କରିବା ପାଇଁ ଚେଷ୍ଟା କରିବା । ଶିକ୍ଷିତ ସମାଜଟିଏ ତିଆରି କରି ଆମ ଅଞ୍ଚଳର ଲୋକମାନଙ୍କୁ ଉନ୍ନତି ଆଡକୁ ଯିବା ପାଇଁ ବାଟ ଦେଖାଇଦେବା ।

ଶୋଷଣ, ଦୁର୍ନୀତି ଓ ନିରକ୍ଷରତାକୁ ଏଡାଇ ଦେଇପାରିଲେ ଯାଇଁ ଏକ ସୁନ୍ଦର ପରିବାର ଭଳି ରହିପାରିବା ।

ଆମେ ଏହି ଭାରତ ମାଟିରେ ଜନ୍ମ ହୋଇଛେ ଆଉ ଏହି ମାଟିରେ ହିଁ ମରିବା, ମାତ୍ର ଆମେ ନ୍ୟାୟ ପଥରେ ଗଲେ ଆମକୁ କେହି ହଟେଇ ଦେଇ କିମ୍ବା ଏମିତି ତଲୁଆ ଲୋକ ବୋଲି କହି ଆମକୁ ଛାଡ଼ି ଆଗକୁ ଯାଇପାରିବେ ନାହିଁ । ଏହା ନହେବାର କାରଣ ହେଉଛି ଆମେ ଏସବୁ ବିଷୟରେ ସମସ୍ତଙ୍କୁ ଜଣାଇବା । ନିଜେ ସବୁକଥା ଜାଣିବାକୁ ଚେଷ୍ଟା କରିଥିବା, ନିଜେ ଅଧିକ କିଛି ନଜାଣିପାରିଲେ ଅନ୍ୟକୁ ଜଣାଇପାରିବା ନାହିଁ ବୋଲି ଆମକୁ ମନେ ରଖିବାକୁ ପଡିବ । ଏଣୁ ଆମର ଅଧିକାର ବିଷୟରେ ଆମେ ଜାଣିବା । ଆମେ ଭାରତର ନାଗରିକ । ଆମର ସବୁକଥା ଜାଣିବାର ଅଧିକାର ରହିଛି । ଆମ ସମ୍ବିଧାନ ମଧ୍ୟ ଆମକୁ ମୌଳିକ ଅଧିକାର ଦେଇଛି ବୋଲି ସମସ୍ତଙ୍କୁ ଜଣାଇବା ଦରକାର । ଅନେକ ସମୟରେ ସବୁକଥା ଜାଣି ମଧ୍ୟ ନଜାଣିବା ଭଳି ରହି ଯାଉଛୁ । ସେଥିପାଇଁ ଆମ ଗାଁର ଲୋକମାନେ ହଇରାଣ ହେଉଛନ୍ତି ତାହା ଏ ପର୍ଯ୍ୟନ୍ତ ଚାଲୁ ରହିଛି । ଏବେ ସମୟ ଆସିଛି ଆମେ କିଛି ନୂଆ ଯୋଜନା କରିବା ପାଇଁ ଚେଷ୍ଟା କରିବା । ସମସ୍ତେ ନିଜକୁ କିପରି ଜଣେ ସ୍ୱାଧୀନ ନାଗରିକ ଭାବରେ ସବୁ କଥା କହିପାରିବେ । ନିଜର ସୁବିଧା ଅସୁବିଧାକୁ ଲୋକମାନେ ଜାଣି ତାହାର ସମାଧାନ କରିବା ପାଇଁ ନିଜେ କିପରି ବାହାରିବେ ସେବିଷୟରେ ସମସ୍ତେ କିପରି ସଚେତନ ହେବେ ସେଥିପାଇଁ ଆମେ ଜାଗ୍ରତ କରାଇ ଆଣିବା । ତେବେ ଯାଇଁ ଆମ ଆଖିର ଅନ୍ଧ ପୁଟୁଳି ଖୋଲିବ । ଆମର ଅଧିକାର ପାଇଁ ଆମେ ଲଢ଼େଇ କରିବା ସଙ୍ଗେ ସଙ୍ଗେ ତାହାକୁ ହାସଲ କରିବା ପାଇଁ ପୁଣି ସେହି ସଂଗ୍ରାମୀମାନଙ୍କ ଭଳି ସାହାସୀ ହୋଇ ଆଗକୁ ଆଗେଇବା ।

ଅଭିରାମ ନାଏକ
ନବସୃଜନ ଶିକ୍ଷାକେନ୍ଦ୍ର, ପୁଡୁଗଶିଲ
କାଶୀପୁର, ରାୟଗଡ଼ା

□□□

# ଉପରମାଣ୍ଡିଝୋଲା ଗାଁ

କାଶୀପୁର ପଞ୍ଚାୟତରୁ ରାୟଗଡ଼ା ଆଡକୁ ୫ କିଲୋମିଟର ଗଲେ ଶିରିଗୁଡ଼ା ଗାଁ ପଡେ । ସେହିଠାରୁ ୭କିଲୋମିଟର ପାଦରେ ଘାଟି ଡେଇଁ କରି ଗଲେ ଉପରମାଣ୍ଡିଝୋଲା ଗାଁଟି ପଡିବ । ଗାଁଟିର ଚାରିପାଖରେ ପାହାଡ ସବୁ ଆକାଶଆଡକୁ ମୁଣ୍ଡ ଟେକି ରହିଛନ୍ତି । ଯୁଆଡେ ଦେଖିବ ଖାଲି ପାହାଡ ଆଉ ପାହାଡ । ପାହାଡଗୁଡିକରେ ଛୋଟ ବଡ ଗଛ ପୂରି ରହିଛି । ଏଠାରେ ଟିକିଏ ହେଲେ ସମତୁଲ ଜାଗା ପାଇବ ନାହିଁ । ଏହି ଝୋଲାଟି ଭିତରେ ୫୨ ଘର ଆଦିବାସୀ ରହି ମାଣ୍ଡିଆ ଓ ବଣର ଫଳମୂଳ, କନ୍ଦା, ଚେରଙ୍ଗା ଓ ଛତୁ ଖାଇ ସେମାନଙ୍କର ଜୀବନ ବିତାଉଛନ୍ତି । ସେମାନଙ୍କର ନିତିଦିନର ଜୀବନକୁ ଦେଖିବା ପାଇଁ କେହି ନାହାନ୍ତି । ନିଜେ ସେମାନେ ଚଳୁଛନ୍ତି ସତ କିନ୍ତୁ ବାହାରର ଲୋକଙ୍କ ସେଠାରେ ପାଦ ପଡିବା ସ୍ୱପ୍ନର କଥା । ସରକାରୀ କର୍ମଚାରୀତ ଏଠାରେ ପାଦପକାନ୍ତି ନାହିଁ । ସେଥିପାଇଁ ସରକାର ଓ ସରକାରୀ ଯୋଜନା କ'ଣ ଏଠିକାର ଲୋକ କିଛି ଜାଣନ୍ତି ନାହିଁ ।

ଏହା ଭିତରେ ଭାରତ ସ୍ୱାଧୀନତାର ୫୨ ବର୍ଷ ଅତିକ୍ରମ କରିଗଲାଣି । ଲୋକମାନେ ସେମାନଙ୍କର ନ୍ୟାଯ୍ୟ ଅଧିକାର ପାଇବେ ବୋଲି ସ୍ୱାଧୀନତା ବେଳୁ ବାପୁଜୀ କହିଛନ୍ତି । ତାହାକୁ ନେଇ ରାଜନୀତି କରୁଥିବା ଲୋକମାନେ କେତେ ପ୍ରକାରର ମନଭୁଲାଣିଆ ମିଠା କଥା କହୁଛନ୍ତି କିନ୍ତୁ କାଶୀପୁରର ଅନେକ ଗାଁକୁ ଦେଖିଲେ ଜଣାପଡିବଯେ, ଲୋକମାନେ କେତେ ଅଧିକାର ପାଇଛନ୍ତି । ସ୍ୱାଧୀନ ଭାରତରେ ସେମାନେ କିପରି ସ୍ୱାଧୀନ ଭାବରେ ନିଜକୁ ସରକାର ବୋଲି ଜାଣିଛନ୍ତି । ଲୋକମାନେ ପୂରାପୂରି ଅନ୍ଧାରରେ ଥିଲେ । ବାହାର ଦୁନିଆ ବିଷୟରେ କିଛି ଜାଣିନଥିଲେ । ଏହି ୫୦ ଘର ଭିତରେ ୫ମ ଶ୍ରେଣୀଯାଏ ପାଠପଢ଼ିଥିବା ପିଲା ମଧ୍ୟ କେହି ନାହାନ୍ତି । ଏସବୁକୁ ଦେଖିଲେ ସହରର ଲୋକମାନେ ବିଶ୍ୱାସ କରିପାରୁନଥିବେ ଯେ ବର୍ତ୍ତମାନ ସୁଦ୍ଧା ଭାରତର ଅନେକ ଗାଁରେ କେହିବି ପଢ଼ିଲା ପିଲା ନାହାନ୍ତି ବୋଲି । ଏ ଗାଁଟି ଏ

ପର୍ଯ୍ୟନ୍ତ କାହା ନଜରରେ ଆସୁନଥିଲା କାରଣ ଏତେ ବଡ ଘାଟି ଡେଇଁ ଏଠାକୁ କିଏ କାହିଁକି ଆସିବ ?

ଗତ ୧୯୯୮ ମସିହା ଏପ୍ରିଲ ମାସରେ ଅଗ୍ରଗାମୀର ଲୋକମାନେ ଏଠାରେ 'ନବସୃଜନ ସ୍କୁଲ' ଆରମ୍ଭ କରିଛନ୍ତି । ଏଇଟା ହେଉଛି ଏ ଗାଁ ପାଇଁ ଏକ୍ ନୂଆ କଥା । ଗୁରୁଭାଇ ହିସାବରେ ମୁଁ ଯେତେବେଳେ ଗାଁକୁ ଗଲି ଦେଖିଲି ଯେ, ଏହି ୫୦ଟି ଘର ଭିତରୁ ୪୦ ଘର ଲୋକ ମଦ ରାନ୍ଧୁଛନ୍ତି । ଖାଲି ଏତିକି ନୁହେଁ ମଦ ପିଇକରି ମାଡପିଟ୍ ମଧ ହେଉଛନ୍ତି । ଯାହା ଫଳରେ ଗାଁଟି ସେତେ ଶାନ୍ତ ଜଣାପଡେ ନାହିଁ । ଏକଥା କିଛି ଦେଖିବା ପରେ ମୋତେ ବହୁତ ଖରାପ ଲାଗିଲା । ଲୋକମାନଙ୍କୁ ହଠାତ କିଛି ନକହି ଏ ରୋଗକୁ କିପରି ଗାଁରୁ ଦୂର କରିବି ସେଥିପାଇଁ ଦୃଢ଼ ମନରେ କାମକଲି ।

ଗାଁର ଲୋକମାନଙ୍କୁ ପ୍ରଥମେ ସ୍କୁଲ କରିବାକୁ କହିଲୁ । କିନ୍ତୁ ସେମାନେ ରାଜି ହେଲେ ନାହିଁ । ଅଗ୍ରଗାମୀ ବିଷୟରେ ସେମାନେ ସେତେ ଭଲ ଭାବରେ ଜାଣିନଥିଲେ । ଗୁରୁଭାଇ ହିସାବରେ ତାଙ୍କୁ ସ୍କୁଲ ବିଷୟରେ ବୁଝାଇଲି । ଲୋକମାନେ ସ୍କୁଲରେ ପାଠ ପଢ଼ିବା ପାଇଁ ଏବଂ ସ୍କୁଲ କରିବା ପାଇଁ ରାଜି ହେଉନାହାନ୍ତି ଭାବି ମୋତେ ଭାରି ଆଶ୍ଚର୍ଯ୍ୟ ଲାଗିଲା । ଯାହାହେଉ ଲୋକମାନଙ୍କୁ ଅଗ୍ରଗାମୀର ଭାଇ ମଧ ଆସି ବୁଝାଇଲେ ଏବଂ ଲୋକମାନେ ରାଜି ହେଲେ । ସ୍କୁଲ ଆରମ୍ଭ କରିବାପାଇଁ ସ୍କୁଲ ଘର କରିବାକୁ ଲୋକମାନଙ୍କୁ ବହୁତ କମ୍ ସମୟ ଲାଗିଲା । ପ୍ରକୃତରେ ଲୋକମାନଙ୍କୁ ଏ ବିଷୟରେ ଠିକ୍ ଭାବରେ ବୁଝାଇପାରିଲେ ସେମାନେ ନିଶ୍ଚୟ ଗ୍ରହଣ କରିବେ ବୋଲି ଜଣାପଡିଲା । ଗାଁର ସବୁ ଲୋକ ମିଶି ମାତ୍ର ୫ଦିନ ଭିତରେ ସ୍କୁଲ ଘର କରିଦେଲେ । ସ୍କୁଲ ଚଳାଇବା ପାଇଁ ଗ୍ରାମ୍ୟ ଶିକ୍ଷା କମିଟି ଗଢାଗଲା । ଏହି କମିଟିରେ ତିନିଜଣ ମା' ଓ ଚାରିଜଣ ବାପା ରହିଲେ । ଏମାନେ ଗାଁର ଏବଂ ସ୍କୁଲର ସୁବିଧା ଅସୁବିଧା କଥା ବୁଝିଲେ । କୌଣସି ପିଲା ସ୍କୁଲକୁ ନଆସିଲେ କମିଟିର ସଭ୍ୟ/ସଭ୍ୟାମାନେ ସ୍କୁଲକୁ ପିଲାମାନଙ୍କୁ ଆଣି ଛାଡି ଦେଉଛନ୍ତି ।

ଆମ କେନ୍ଦ୍ରର ପିଲା ସଂଖ୍ୟା ୪୦ ଜଣ । ସେମାନଙ୍କ ମଧ୍ୟରୁ ୨୬ଜଣ ପୁଅ ଓ ୧୪ ଜଣ ଝିଅ ଅଛନ୍ତି । ପିଲାମାନଙ୍କ ମଧରେ ବୟସର ମାପ କିଛି ରଖାଯାଇନାହିଁ । ଏମିତିକି ୧୪ବର୍ଷରୁ ଅଧିକ ବର୍ଷର ପିଲାମାନେ ମଧ ଆମ ସ୍କୁଲକୁ ଆସୁଛନ୍ତି । ପିଲାମାନଙ୍କୁ ଫୁଲ, ଫଳ, କାଠି ଗୋଲି ଏବଂ ନାଚ ଗୀତ ମାଧମରେ ପାଠପଢ଼ାଉଛି । ବିଶେଷକରି ସେମାନଙ୍କର ଭାଷାରେ ପାଠପଢ଼ାଇବାରୁ ସେମାନେ ଆଗ୍ରହର ସହିତ

ମୋତେ ସବୁ କଥା କହିପାରୁଛନ୍ତି । ପିଲାମାନେ କିପରି ନିଜେ ନିଜେ ଗପ କହିପାରିବେ ଏବଂ ଗୀତ ଗାଇପାରିବେ ସେଥିପାଇଁ ଶନିବାର ଦିନ ସ୍କୁଲରେ ପିଲାମାନେ ନିଜେ ନିଜେ ଗୀତ ନାଚ କରୁଛନ୍ତି । ପିଲାମାନେ ମାସକୁ ୧ଟଙ୍କା ଲେଖାଏଁ ଆଦାୟକରି 'ଶିଶୁ ପାଣ୍ଠି' ଗଠନ କରି ସେଥିରେ ସେମାନେ ୧୫୦ଟଙ୍କା ରଖିଛନ୍ତି । ଏହି ଟଙ୍କାକୁ ନିଜେ ନିଜେ କେତେ ଟଙ୍କା ଦେଇଛନ୍ତି ଜାଣିଛନ୍ତି । ସେମାନେ ଯେତେବେଳେ ସ୍କୁଲରୁ ଚାଲିଯିବେ ସେମାନେ ତାହାକୁ ନେଇଯିବେ । ଯେଉଁ ପିଲାମାନେ ସରକାରୀ କିମ୍ବା ଆଶ୍ରମ ସ୍କୁଲକୁ ଯିବେ ସେତେବେଳେ ଏହାକୁ ବହି କିଣାରେ ଲଗାଇବେ ବୋଲି କହିଛନ୍ତି । ସେମାନଙ୍କୁ ଖୁସୀରେ ପାଠପଢ଼ାଇବା ପ୍ରକୃତରେ ବହୁତ କଷ୍ଟ । ଶିକ୍ଷକର ଆଗ୍ରହ ନଥିଲେ ସେ ନୂଆ ନୂଆ ଜିନିଷ ପିଲାମାନଙ୍କୁ ଜଣାଇପାରିବ ନାହିଁ । ତେଣୁ ମୁଁ ନୂଆ ନୂଆ ବହି ଆଣି ପଢୁଛି । ମୋଟାମୋଟି ଭାବେ ଆମ ସ୍କୁଲଟି ଭଲରେ ଚାଲିଛି ।

ଏହାଛଡା ସ୍କୁଲକୁ ଆୟକାରୀ କାର୍ଯ୍ୟକ୍ରମ ପାଇଁ ଦିଆଯାଇଥିବା ୫୦୦୦ଟଙ୍କାରୁ ସେମାନେ ୨୬୦୦ଟଙ୍କାର ୪ଟି ଛେଳି କିଣିଛନ୍ତି । ବର୍ତ୍ତମାନ ୨ଟି ଛେଳି ଛୁଆ ଦେଇଛନ୍ତି । ଆଉ ୨୦୦୦ଟଙ୍କାରେ ବାଲି ଜମି ବନ୍ଧକ ରଖିଛନ୍ତି । ସେଥିରେ ଯାହା ଚାଷ ହେବ କରିବା ଲୋକର ଅଧା ଓ ସ୍କୁଲର ଅଧା ବୋଲି ଗ୍ରାମବାସୀମାନେ ଠିକ୍ କରିଛନ୍ତି । ବାକି ୪୦୦ଟଙ୍କା ବ୍ୟାଙ୍କରେ ଅଛି । ଦିଆଯାଇଥିବା ଟଙ୍କାକୁ ଖଟେଇ ସେମାନେ ଅଧିକ ଟଙ୍କା କରିବା ପରେ ତିନି ବର୍ଷ ପରେ ସେମାନେ ଅଗ୍ରଗାମୀର ସାହାଯ୍ୟ ଚାହିଁବେ ନାହିଁ ବୋଲି କହୁଛନ୍ତି । ଆୟକାରୀ କାର୍ଯ୍ୟକ୍ରମ ବିଷୟରେ ଲୋକମାନେ ଠିକଭାବେ ବୁଝିଛନ୍ତି । ମାସକୁ ଥରେ ଶିକ୍ଷା କମିଟି ଏବଂ ଗାଁ ଲୋକ ମିଶି ସ୍କୁଲ ପରିଚାଳନା ଓ ପାଣ୍ଠି ବିଷୟରେ ଆଲୋଚନା କରୁଛନ୍ତି । ଶିକ୍ଷକଙ୍କର ଦରମା ମଧ୍ୟ କମିଟିର ସଭ୍ୟ/ସଭ୍ୟାମାନେ ଦେଉଛନ୍ତି । ଶିକ୍ଷକ ମଧ୍ୟ ଗାଁ ସଭାପତିଙ୍କ ଠାରୁ ଛୁଟି ନେଉଛି । ଏହିପରି ପରିଚାଳନାକୁ ସେମାନେ ବହୁତ ପସନ୍ଦ କରୁଛନ୍ତି ।

ଗାଁର ଲୋକମାନେ ଗାଁର, ସ୍କୁଲର ପାଣ୍ଠି ତଥା ଅନ୍ୟାନ୍ୟ ସୁବିଧା ଅସୁବିଧା ଉପରେ ଆଲୋଚନା କରିବା ପାଇଁ ମାସକୁ ଥରେ ବସି ଆଲୋଚନା କରୁଛନ୍ତି । 'ଶସ୍ୟ ପାଣ୍ଠି' କିପରି ଅଧିକରୁ ଅଧିକ ବଢିବ ସେଥିପାଇଁ ମା'ମାନେ ଅଧିକ ଗୁରୁତ୍ୱ ଦେଇ ମିଟିଂରେ ଆଲୋଚନା କରୁଛନ୍ତି । ବର୍ତ୍ତମାନ ଗାଁରେ ୨୫ପୁଟି ଧାନ, ମାଣ୍ଡିଆ ଓ କୋଶଲା ଆଦାୟ କରି ରଖିଛନ୍ତି । ଏହା ଗ୍ରାମବାସୀଙ୍କର ଖାଦ୍ୟ ନଥିବା ସମୟରେ ଭରସା । ସେମାନେ ଆଉ ସାହୁକାର କିମ୍ବା ମହାଜନ ପାଖକୁ ଯିବେ ନାହିଁ ।

ଯେତେବେଳେ ସେମାନେ ଅସୁବିଧାରେ ପଡିବ ସେତେବେଳେ ସେମାନେ ଏଥିରୁ ନେଇ ଖାଉଛନ୍ତି ଏବଂ ଅମଳ ସମୟରେ ଉଠାଇ ରଖୁଛନ୍ତି । ଗାଁର ବଡ ବଡ ଲୋକମାନେ ମଧ୍ୟ ସ୍କୁଲକୁ ଆସି ବସିବାରୁ ଲେଖି ପଢ଼ିପାରୁଛନ୍ତି । ବର୍ତ୍ତମାନ ଭଳି ଲୋକମାନଙ୍କର ଆଗ୍ରହ ରହିଲେ ଗାଁଟି ଭବିଷ୍ୟତରେ କାହା ଉପରେ ସେତେ ନିର୍ଭର କରିବ ନାହିଁ ବୋଲି ମୋର ଆଶା । ଆଗ ଅପେକ୍ଷା ଗାଁର ପରିସ୍ଥିତିରେ ପରିବର୍ତ୍ତନ ଘଟୁଛି । ଲୋକମାନେ ମଦ ରାନ୍ଧୁ ନାହାନ୍ତି କି ଖାଇ ଗଣ୍ଡଗୋଳ କରୁ ନାହାଁନ୍ତି । ପିଲାମାନଙ୍କୁ ପାଠପଢ଼ିବାକୁ ପଠାଉଛନ୍ତି । ଗାଁ କଥା ପ୍ରତି ମାସରେ ଆଲୋଚନା କରୁଛନ୍ତି । ଆମ ଅଞ୍ଚଳରେ ଏହିପରି ଅବହେଳିତ ହୋଇ ରହିଯାଇଥିବା ଗାଁ ଗୁଡିକ ଧୀରେ ଧୀରେ ବଦଳି ଆସିବ ବୋଲି ମୋର ଆଶା ।

ଅଭିରାମ ଝୋଡ଼ିଆ

□□□

# ସଭିଙ୍କ ମୁହଁରେ ଲାଠିକୁମ୍ଭା

କନ୍ଧମାଳ ଜିଲ୍ଲା ଫିରିଙ୍ଗିଆ ବ୍ଲକ୍‌ର ଲୁଇସିଂ ପଞ୍ଚାୟତ ଅଫିସ ଠାରୁ ମାତ୍ର ଏକ କିଲୋମିଟର ଡାହାଣ ରାସ୍ତାଦେଇ ଆସିଲେ ଆମ ଗାଁଟି ପଡେ । ଏହି ଗାଁଟି ଦୁଇଟି ପଡାକୁ ନେଇ ହୋଇଛି । ଗୋଟିଏ ହେଲା ଲାଠିକୁମ୍ଭା ଓ ଅନ୍ୟଟି ହେଲା କିଲୁକୁମ୍ଭା । ଆମେ ଉଭୟ ଗାଁର ଲୋକେ ଏକାଠି ହୋଇ ସବୁ କାମ କରୁ । ଆମେ ସମସ୍ତେ ହେଉଛି ଗୋଟିଏ କୁଟୁମ୍ବ ଭଳି । ମାତ୍ର ୪ ଘର ଲୋହରାକୁ ଛାଡି ଦେଲେ ଆଉ ସବୁ କନ୍ଧ ସଂପ୍ରଦାୟର । ଉଭୟ ପଡା ଭିତରେ ଅଧା କିଲୋମିଟର ବ୍ୟବଧାନ ହେଲେ ସୁଦ୍ଧା ଗୋଟିଏ ଜାଗାରେ ବସି ଗାଁର କଥା ଆଲୋଚନା କରୁଛୁ ଏବଂ ସବୁ କାମ ଏକାଠି କରୁଛୁ । ଆମ ଗାଁଠାରୁ ଦୁଇ କିଲୋମିଟର ଦୂରରେ ଆଶ୍ରମ ସ୍କୁଲ ଅଛି । ଲୁଇସିଂ ଠାରେ ଅଙ୍ଗନବାଡି ଖାଦ୍ୟ ମିଳୁଛି । କିଲୁକୁମ୍ଭା ଗାଁରୁ ପିଲାମାନେ ସେଠାକୁ ଯାଇପାରନ୍ତି କିନ୍ତୁ ଲାଠିକୁମ୍ଭାର ପିଲାମାନେ ଯାଇପାରନ୍ତି ନାହିଁ । ଗାଁରେ ସମସ୍ତଙ୍କର ବେଶି ଜମି ନାହିଁ । ଲୋକମାନେ ଜଙ୍ଗଲ ଉପରେ ନିର୍ଭର କରନ୍ତି ଓ କୁଲିମଜୁରି କରି ଚଳନ୍ତି ।

ପୂର୍ବରୁ ଅନେକ ଲୋକ ଖାଇବାକୁ ପାଉନଥିଲେ । ତେଣୁ ପିଲାମାନଙ୍କୁ ସ୍କୁଲକୁ ପଠାଉନଥିଲେ । ଏବଂ ପ୍ରଥମରେ ପିଲାମାନେ ପାଠପଢ଼ା ପ୍ରତି ଆଗ୍ରହ ପ୍ରକାଶ କରୁନଥିଲେ । ଗାଁକୁ ଭଲ ରାସ୍ତା ମଧ୍ୟ ନଥିଲା । ଏହିପରି ବିଭିନ୍ନ ସମସ୍ୟା ଦେଇ ଗାଁଟି ଚାଲି ଆସିଛି । ଅଗ୍ରଗାମୀ ଏହି ଅଞ୍ଚଳରେ ୧୯୮୭ ମସିହାରୁ କାମ କରି ଆସିଲାଣି । ଏଠାରେ ଅଗ୍ରଗାମୀ ପ୍ରଥମେ ଯେତେବେଳେ ଆସିଲା ସେତେବେଳେ ଏହାକୁ ଏକ ବିଦେଶୀ ସଂସ୍ଥା ବୋଲି କହୁଥିଲେ । କିନ୍ତୁ କିଛି ମାସ ଗଲାପରେ ଯେତେବେଳେ ପ୍ରକୃତରେ ଏହାର କାମ ଜାଣିଲେ ସେତେବେଳେ ଅଗ୍ରଗାମୀ ଏଠାରେ ଭଲ ଭାବେ କାମ କରୁ ବୋଲି ସମସ୍ତେ ସହଯୋଗ କଲେ ।

କିଛି ବର୍ଷ ପୂର୍ବେ ଯେତେବେଳେ ବାଲନ୍ଦାପଡ଼ା ପଞ୍ଚାୟତକୁ ସେମାନେ ଆସିଲେ ସେତେବେଳେ ଆମ ଗାଁରେ ସ୍କୁଲ କରିବା ପାଇଁ କହିଲେ । ସେତେବେଳେ

ଆମେ ମାତ୍ର ଚାରି ପାଞ୍ଚ ଜଣ ସ୍କୁଲକୁ ପଢ଼ିବାକୁ ଯାଉଥିଲୁ । କିନ୍ତୁ କୌଣସି ଝିଅ ସ୍କୁଲକୁ ଯାଉନଥିଲେ । ପିଲାମାନଙ୍କୁ ପଢାଇବା ପାଇଁ ଗାଁରେ ରାତି ସ୍କୁଲ କଲୁ । ଗାଁର ସବୁ ପିଲାମାନଙ୍କୁ ପଢାଇବା ପାଇଁ ଚେଷ୍ଟା କଲୁ । ଏହିପରି ଆମେ ଅନେକ କଥା ଜାଣିପାରିବା ପରେ ଗତ ପାଞ୍ଚ ବର୍ଷ ପୂର୍ବେ ଗାଁରେ ଜଳଛାୟା କାର୍ଯ୍ୟକ୍ରମ ହେଲା । ଗାଁର ଲୋକମାନେ ଏଥିରେ କାମ କଲେ । ଏହା ବିଶେଷ କରି ଲୋକମାନେ ହିଁ ବୁଝିଲେ । ଏହାଦ୍ୱାରା ଲୋକମାନଙ୍କର ଅନେକ ଲାଭ ହେଲା ।

ଲୋକମାନେ ନିଜେ କାମ କଲେ ଏବଂ ହିସାବକରି ରଖିଲେ । କିଏ କେତେ ଦିନ କାମ କଲା ସେକଥା ମଧ୍ୟ ଲେଖା ହୋଇ ରହିଲା । ଗାଁ ଲୋକଙ୍କ ନାମରେ ବ୍ୟାଙ୍କରେ ପାସ୍ ବହି ଖୋଲାଯାଇ ଟଙ୍କା ରଖାଗଲା । ସେମାନେ ଯିଏ ଯେତେ କାମ କଲା ତାକୁ ସେହି ହିସାବରେ ଟଙ୍କା ଦେଲେ । ଏହାଦ୍ୱାରା ବ୍ୟାଙ୍କ ବିଷୟରେ ଲୋକମାନେ ଜାଣିପାରିଲେ । ଗାଁ ପାଖରେ ସରକାରଙ୍କର ଯେତେ କାମ ହେଲା ସର୍ବନିମ୍ନ ମଜୁରି ୨୫ ଟଙ୍କା ଥିବାବେଳେ ଲୋକମାନଙ୍କୁ ସେମାନେ ୧୭ ଓ ୧୮ଟଙ୍କା ଦେଉଥିଲେ । କିନ୍ତୁ ଅଗ୍ରଗାମୀ ୨୫ଟଙ୍କା ଦେବାରୁ ଆମେ ମଧ୍ୟ ଲଢ଼େଇ କରି ସବୁ ଜାଗାରେ ୨୫ଟଙ୍କା ପାଇଲୁ ।

ଜଳବିଭାଜିକା ମାଧ୍ୟମରେ ଗାଁର ସବୁ ପ୍ରକାରର ଉନ୍ନତି ହେଲା । ଆମେ ଆମର ଜମିକୁ ସଜାଡିଲୁ, ପୋଖରୀ ଖୋଳିଲୁ । ଗୋଟାଏ ବଡ ପାଣିମୁଣ୍ଡା କରିପାରିଲୁ, ଯେଉଁମାନଙ୍କର ଜମି ନାହିଁ ସେମାନେ ଗାଈ ଓ ଛେଳି ରଖିପାରିଲେ । ମା'ମାନେ ମହିଳା ମଣ୍ଡଳ ମାଧ୍ୟମରେ ତେଲ ଘଣା ପକାଇ ଟୋଲ ତେଲ ପେଡି ସେଥିରୁ ଅନେକ କିଛି ପାଣ୍ଠି ରଖିପାରିଛନ୍ତି । ଏହିପରି ଅନେକ ସୁବିଧା ଆମେ ପାଇଛୁ ।

ତିନି ବର୍ଷ ତଳୁ ପୂର୍ବର ଅଣଆନୁଷ୍ଠାନିକ ଶିକ୍ଷାକେନ୍ଦ୍ରଟିକୁ ବିକଳ୍ପ ଶିକ୍ଷାକେନ୍ଦ୍ର କରାଯାଇଛି । ଏଥିରେ ଗାଁର ସବୁ ପିଲା ଆସି ପଢୁଛନ୍ତି । ଧାଙ୍ଗଡାମାନେ ମଧ୍ୟ ପଢୁଛନ୍ତି । ଶିକ୍ଷା କମିଟି ସ୍କୁଲ ପରିଚାଳନା ଓ ଆୟକାରୀ କାର୍ଯ୍ୟକ୍ରମକୁ ସଂପୂର୍ଣ୍ଣ ଭାବେ କାର୍ଯ୍ୟକାରୀ କରୁଛନ୍ତି । ଲୋକମାନେ ଏହାର ହିସାବ ମଧ୍ୟ ରଖୁଛନ୍ତି । ସ୍କୁଲରେ ଆସି ଶିକ୍ଷକଙ୍କର ପାଠପଢ଼ା ଦେଖୁଛନ୍ତି । ବେଳେବେଳେ ପିଲାମାନଙ୍କୁ ଗପ ଗୀତ ମଧ୍ୟ ଶିଖାଉଛନ୍ତି । ସ୍କୁଲରେ କିଛି ଅସୁବିଧା ହେଲେ ସେମାନେ ସଙ୍ଗେ ସଙ୍ଗେ ତାହାର ସମାଧାନ କରୁଛନ୍ତି ।

ଏଥିପାଇଁ ଶିକ୍ଷାକମିଟିମାନଙ୍କ କାମକୁ ଏଠାକାର କର୍ମୀମାନେ ବହୁତ ପସନ୍ଦ କରୁଛନ୍ତି । ପିଲାମାନେ କିପରି ଅଧିକରୁ ଅଧିକ ପଢିବେ ସେଥିପାଇଁ ଅଧିକ ପଢୁଥିବା

ପିଲାମାନଙ୍କୁ ଆଶ୍ରମ ସ୍କୁଲକୁ ପଠାଇବାରେ ବ୍ୟବସ୍ଥା କରୁଛୁ । ବର୍ତ୍ତମାନ ଗାଁର ଅଧାପିଲା ପ୍ରତିଦିନ ଆଶ୍ରମକୁ ଯାଉଛନ୍ତି । ସ୍କୁଲରେ ପିଲାମାନଙ୍କୁ ଘର, ଗାଁ, ପଞ୍ଚାୟତ ଓ ଆମର ସମସ୍ୟା ଉପରେ ବିଭିନ୍ନ କଥା କହୁଛୁ । ଯାହା ଫଳରେ ପିଲାମାନେ କିଛି କିଛି ନୂଆ କଥା ଜାଣିପାରୁଛନ୍ତି । ମୁଁ ମାତ୍ର ୫ମ ଶ୍ରେଣୀ ପଢ଼ିଛି ପିଲାମାନଙ୍କୁ ଇଂରାଜୀ ପଢାଇ ପାରୁନଥିବାରୁ ମାଇନର ପଢୁଥିବା ପିଲାମାନଙ୍କୁ ପଢ଼ାଇପାରୁନାହିଁ । ଯାହାହେଲେ ବି ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ଭଲ ଭାବେ ପଢାଇପାରୁଥିବାରୁ ପିଲାମାନେ ଆଶ୍ରମ ସ୍କୁଲରେ ଭଲ କରୁଛନ୍ତି ।

ଅଗ୍ରଗାମୀ ତରଫରୁ ଦିଆଯାଇଥିବା ଟଙ୍କାକୁ ଖଟାଇ ଆମେ ଲାଭବାନ ହୋଇପାରିଛୁ । ଏହି କାର୍ଯ୍ୟକ୍ରମରେ ଛେଳି ଚାଷ କରି ଏବେ ସୁଦ୍ଧା ୧୫ଟି ଛେଳି ରଖିଛୁ । ଦୁଇଟା ସରକାରୀ ଜମିକୁ ତିଆରି କରି ଧାନ ଚାଷ କରିଛୁ । ପଞ୍ଚାୟତ ପୋଖରୀରୁ ଗୋଟିଏ ଓ ଜଳବିଭାଜିକା ପୋଖରୀରୁ ସ୍କୁଲ ତରଫରୁ ମାଛ ଛଡା ଯାଇଛି । ଏହି ତିନିଟି ପୋଖରୀରେ ମାଛ ଛାଡିବା ସଙ୍ଗେ ଛେଳି ଓ ଧାନ ଚାଷରୁ ଅମଳ ପରେ ସଠିକ୍ ଲାଭର ହିସାବ ମିଳିବ । ଆଶା ୨୦ ହଜାର ଟଙ୍କା ପର୍ଯ୍ୟନ୍ତ ହେବ । ଯାହାହେଲେବି ସ୍କୁଲ କମିଟି ଏହାକୁ ଠିକ୍ ଭାବେ ପରିଚାଳନା କରିବ ବୋଲି ଆଶା ରହିଛି । ଏପର୍ଯ୍ୟନ୍ତ ଆମ ସ୍କୁଲଟି ଭଲଭାବେ ଚାଲୁଛି । ଶିକ୍ଷା କମିଟିର ସଭ୍ୟ/ ସଭ୍ୟାମାନେ ପ୍ରତିମାସରେ ଦୁଇଥର ଲେଖାଏଁ ସ୍କୁଲ ଏବଂ ଗାଁର ଭଲମନ୍ଦ ବିଷୟରେ ଆଲୋଚନା କରୁଛନ୍ତି । ବର୍ତ୍ତମାନ ଜଳବିଭାଜିକାର ସମସ୍ତ କାର୍ଯ୍ୟକ୍ରମକୁ ମଧ୍ୟ ଆମକୁ ଦେଖିବାକୁ ପଡୁଛି । ତେଣୁ ଏକଥା ମଧ୍ୟ ଅନେକ ସମୟରେ ଆଲୋଚନା କରାଯାଉଛି ।

ଏସବୁକୁ ଦେଖିଲେ ମୁଁ ଭାବୁଛି ୫ ବର୍ଷ ତଳର ଲାଠିକୁମ୍ଭା ଗାଁ ଆଉ ବର୍ତ୍ତମାନ ସମୟର ଗାଁ ଭିତରେ ଆକାଶ ପାତାଳ ଫରକ ରହିଛି । ବର୍ତ୍ତମାନ ଆମେ ସବୁ କଥାରେ ସ୍ୱର ଉଠାଇପାରୁଛୁ । ନିଜ କଥା କିପରି ବୁଝିବୁ ସେକଥା ସ୍କୁଲ ଆମକୁ ଜଣାଇଦେଇଛି । ଯେତେବେଳେ ଆମ ଅଞ୍ଚଳର ସରକାରୀ ସ୍କୁଲ ଚାଲୁନାହିଁ ସେତେବେଳେ ଗାଁର ଲୋକମାନେ ସ୍କୁଲ ଚଳାଇବା ସଙ୍ଗେ ସଙ୍ଗେ ନିଜର ପିଲାମାନଙ୍କୁ ଶିକ୍ଷିତ କରିବା ପାଇଁ ଆଗେଇବା ସବୁଠାରୁ ବଡ଼ କଥା ।

ଆମ ସ୍କୁଲର ପିଲାମାନେ ଭବିଷ୍ୟତରେ ଭଲ ପାଠପଢ଼ିବେ ନିଜ ଗାଁ ତଥା ନିଜ ଅଞ୍ଚଳ କଥା କିପରି ବୁଝିପାରିବେ ଏ ବିଷୟରେ ବାପା ମା'ମାନେ ଧୀରେ ଧୀରେ ସତର୍କ ହୋଇଆସୁଛନ୍ତି । ଗାଁର ଯେକୌଣସି ସମସ୍ୟା ଆସୁଛି ସେମାନେ ତାହାକୁ

ସମାଧାନ କରିବା ପାଇଁ ଆଗେଇ ଆସୁଛନ୍ତି । ଆମକୁ ଏକଥା ହିଁ ଅଗ୍ରଗାମୀ କହିଛି ଯେ ଲୋକମାନେ ନିଜର କଥା ବୁଝିଲେ ଯାଇ ଅଗ୍ରଗାମୀର ସ୍ୱପ୍ନ ସଫଳ ହେବ । ଏହାକୁ ଲକ୍ଷ୍ୟରଖି ଆମେ କାମ କରୁଛୁ । ଏକଥାଲୋକମାନେ କିପରି ସବୁଦିନେ ମନେ ରଖିବେ ତାହାହିଁ ବଡ଼ କଥା । ଯାହା ହେଲେବି ଆଜି ଗାଁର ଲୋକମାନେ ଏସବୁ କାମ କରିବା ପାଇଁ ଯେଉଁ ପରିଶ୍ରମ କରିଛନ୍ତି ତାହାକୁ ସବୁଦିନ ପାଇଁ ମନେ ରଖିବେ ଏବଂ ସେମାନେ ପିଲାମାନଙ୍କୁ ମଣିଷ କରିବେ ବୋଲି ଏକାଠି ହୋଇଛନ୍ତି ତାହାହିଁ ସେମାନେ ବଳବତ୍ତର ରଖିବେ, ଶିକ୍ଷକ ଭାବରେ ମୁ ମଧ୍ୟ ଏହା ଆଶା କରେ ।

**ରାଜେନ୍ଦ୍ର କହଁର**
**ବିକଳ୍ପ ଶିକ୍ଷାକେନ୍ଦ୍ର, ଲାଠିକୁମ୍ଭା**



# ଆଦର୍ଶ ଗାଁ କିପରି ?

ଆମ ଗାଁର ଘର ସଂଖ୍ୟା ୩୫ । ଏହି ଗାଁର ସମସ୍ତେ ଆଦିବାସୀ ଲୋକ । କେହି ମଧ୍ୟ ପାଠ ପଢ଼ି ନାହାନ୍ତି । ଏମାନଙ୍କର ମୁଖ୍ୟ ଜୀବିକା ଚାଷ ଓ ପ୍ରତି ପରିବାର ବାଉଁଶ କାମ ଜାଣିଛନ୍ତି । ସେମାନେ ଡାଲା, ଚାଙ୍ଗୁଡି ଇତ୍ୟାଦି ତିଆରି କରି ପାଖ ହାଟ ଯଥା; ଗୁରୁବାର, ମଙ୍ଗଳବାର ଓ ଶନିବାର ହାଟମାନଙ୍କରେ ବିକ୍ରି କରି ନିଜର ଦୈନନ୍ଦିନ ତେଲଲୁଣ ଖର୍ଚ୍ଚ ଚଳାଇନିଅନ୍ତି । କିନ୍ତୁ ଗତବର୍ଷ ଆମ ଅଞ୍ଚଳରେ ଝାଡ଼ାବାନ୍ତି ବହୁପରିମାଣରେ ହୋଇ ବହୁଲୋକ ମୃତ୍ୟୁବରଣ କରିଥିଲେ । ସେ ସମସ୍ୟାକୁ ଆଖିଆଗରେ ରଖି ବର୍ଷ ଆରମ୍ଭରେ ଆମ ଗ୍ରାମରେ କିପରି ଝାଡ଼ାବାନ୍ତି ହୁଏ, କାହିଁକି ହୁଏ ? ଯଦି ହୁଏ କ'ଣ କରିବ ? ଏ ଉପରେ ଗ୍ରାମର ବୈଠକ କରି ବୁଝାଇଲୁ ଆମ ଗ୍ରାମର ଟିକାଦାନ ୬ ମାସ ହେଲା ହୋଇନାହିଁ । ତେଣୁକରି ଗାଁରେ ବୈଠକ କରି ସି.ଡି.ପି.ଓ.ଙ୍କ ପାଖକୁ ଚିଠି ମାଧ୍ୟମରେ ପଠାଇବା ପାଇଁ ବୈଠକ କଲୁ ।

ଆମ ମେରାକାନି ତେନ୍ତୁଳିଖୁଣ୍ଟି ପଞ୍ଚାୟତଠାରୁ ୫ ମାଇଲ୍ ଦୂର ହେବ । କିନ୍ତୁ ଏହି ଗ୍ରାମରେ ବର୍ତ୍ତମାନ ଯାଏ ସରକାରୀ ସୁବିଧାସୁଯୋଗ ଠିକ୍‌ଭାବେ ମିଳିନାହିଁ । ଏପର୍ଯ୍ୟନ୍ତ କେବଳ ୫ଜଣ ଇନ୍ଦିରାଆବାସ ଗୃହ ପାଇଛନ୍ତି ଓ ୯ଜଣ ବାର୍ଦ୍ଧକ୍ୟ ଭତ୍ତା ପାଉଛନ୍ତି । ନଳକୂଅ ଗୋଟିଏ ଦିଆଯାଇଛି । କିନ୍ତୁ ୧୦/୧୫ ମିନିଟ୍ ମାରିବା ପରେ ହିଁ ଟିକେ ଟିକେ ପାଣି ବାହାରୁଛି । ଏତିକି ଛଡ଼ା ଏହି ଗାଁରେ ଆଉ ଅନ୍ୟ କୌଣସି ସରକାରୀ କାମ ହୋଇନାହିଁ । ଅନ୍ୟମାନଙ୍କ ପରି ଏଠାକାର ଲୋକମାନେ ମଧ୍ୟ ଭୋଟ ଦେଇ ସରକାର ଗଢୁଛନ୍ତି । ଭୋଟ ଦେବା ଆଗରୁ ନେତା କହୁଛି, "ତୁମ ଗ୍ରାମରେ ରାସ୍ତା କରିଦେବି, ଚୁଆଁ କରିଦେବି, ପୋଖରୀ କରିଦେବି, ଋଣ କରିଦେବି, ଇଏ କରିଦେବି, ସିଏ କରିଦେବି ।" କିନ୍ତୁ ଭୋଟ ପାଇସାରିବା ପରେ କାହାର ଦେଖାନାହିଁ । ନିରୀହ ଆଦିବାସୀର ଜୀବନରେ କିଛି ପରିବର୍ତ୍ତନ ନାହିଁ । ଜଣେ ଭାରତୀୟ ନାଗରିକର କର୍ତ୍ତବ୍ୟ ଓ ଅଧିକାର ବିଷୟରେ ସେ ଏପର୍ଯ୍ୟନ୍ତ ବି ଜାଣି ନାହିଁ । ତେଣୁ

ଆମେ ଗାଁର ଲୋକମାନଙ୍କୁ ଏସବୁ ବିଷୟରେ ବୈଠକ ମାଧ୍ୟମରେ ସଚେତନ କରିବାକୁ ଚେଷ୍ଟା କରୁଛୁ । ଏଇବର୍ଷ ୧୫ ଏକର ଜମିରେ ଥିବା ଜଙ୍ଗଲ ସୁରକ୍ଷା କରୁଛୁ । ଆମ ମେରାକାନି ଗାଁରେ ଆସନ୍ତା ୨୦୦୦ ମସିହାରେ ଆଦର୍ଶ ଗ୍ରାମ ହିସାବରେ ନିଆଯିବ ସେଥି ନିମେନ୍ତ କ'ଣ କ'ଣ କରିବାକୁ ହେବ ବୈଠକ ମାଧ୍ୟମରେ ସ୍ଥିର କରି ସେସବୁ ପ୍ରତି ସଚେତନ ହୋଇଛୁ ।

ଆଦର୍ଶ ଗାଁ ହେବାକୁ ହେଲେ କ'ଣ ସବୁ ସୁବିଧା ଥିବ ଯଥା; ସମସ୍ତେ ଶିକ୍ଷାର ମୂଲ୍ୟ ବୁଝିଥିବେ, ଖାଦ୍ୟ ପାଇପାରୁଥିବେ, ଜଙ୍ଗଲ ସୁରକ୍ଷା କରିଥିବେ, ସମସ୍ତଙ୍କର କିଛି ନା କିଛି ଜମି ଥିବ, ପାନୀୟ ଜଳର ସୁବିଧା ଥିବ, ରାସ୍ତାଘାଟ ଥିବ, ସରକାରୀ ସ୍କୁଲ ଥିବ, ସରକାରୀ କାମ ଦାବି କରି ଆଣୁଥିବେ, ନିଜେ ସବୁ ସଂଗଠିତ ଥିବେ, ସୂଚନା ପାଇ ପାରୁଥିବେ ଇତ୍ୟାଦି । ଏସବୁ ସୁବିଧା କିପରି କରାଯାଇପାରିବ ସେ ସକାଶେ ମାସକୁ ମାସ ବୈଠକ କରି ଗ୍ରାମର ଲୋକମାନଙ୍କୁ ବୁଝାଉଚି । ସମସ୍ତେ ଶିକ୍ଷାର ମୂଲ୍ୟ ବୁଝିବା ନିମନ୍ତେ ଚଳିତ ବର୍ଷ ପୌଢ଼ ଶିକ୍ଷାକେନ୍ଦ୍ର ଖୋଲା ହେଲା । ଏଥିରେ ଗାଁର ମା' ବାପାମାନେ ସବୁ ସନ୍ଧ୍ୟାରେ ଆଗ୍ରହର ସହିତ ପାଠ ପଢୁଛନ୍ତି । ବି.ପି.ଏଲ୍.କାର୍ଡ଼ ପାଇବା ନିମନ୍ତେ ଗାଁ ଲୋକସବୁ ବି.ଡି.ଓ.ଙ୍କୁ ଦରଖାସ୍ତ ଦେଇ ଏବେ କାର୍ଡ଼ସବୁ ପାଇପାରିଛନ୍ତି । ୨୦୦୦ମସିହାରେ କାମ ହେବା ନିମେନ୍ତ ଆମ ଗ୍ରାମରେ ପି.ଆର୍.ଏ. ମାଧ୍ୟମରେ ଏକ ସର୍ଭେ ହେଲା । ଏହା ଅନୁଯାୟୀ ବହୁତ କାମ ହେବାର ଅଛି । ଯଥା; ମହିଳା ମଣ୍ଡଳ ଗଠନ, ପୋଖରୀ ଖୋଳା, ଜଙ୍ଗଲ ସୁରକ୍ଷା, ଘାଟୁ ବନ୍ଧା, ଜମି ମରାମତି ଇତ୍ୟାଦି । ଏଥିରେ ଗାଁର ସମସ୍ତ ଲୋକ ଅଂଶଗ୍ରହଣ କରିବେ ।

ମୁଁ ବର୍ତ୍ତମାନ ରାତିସ୍କୁଲ କିପରି ଚଳାଉଛି ଆଉ କିପରି ପରିବର୍ତ୍ତନ କରିବା ନିମନ୍ତେ ଚେଷ୍ଟା ଚଳାଇଛି ତାହା କହୁଛି । ମୋ ସ୍କୁଲରେ ୨୦ଜଣ ପିଲା ଅଛନ୍ତି । ସେଥିମଧ୍ୟରୁ ୧୭ଜଣ ପୁଅ ଓ ୩ଜଣ ଝିଅ । ଏମାନେ ସ୍କୁଲକୁ ପ୍ରତିଦିନ ପଢ଼ିବାକୁ ଆସନ୍ତି । ଦିନବେଳା ମା' ବାପାମାନଙ୍କୁ କାମରେ ସହଯୋଗ କରୁଛନ୍ତି । ମୁଁ ପ୍ରଥମେ ଗାଁରେ ଯାଇ ଦେଖିଲି ସବୁ ପିଲା ସ୍କୁଲ ଆସୁଛନ୍ତି । କେବଳ ଦୁଇଜଣ ପିଲା ଆସୁନାହାନ୍ତି । ପରେ ପିଲାଙ୍କୁ ଏକଥା ପଚାରିଲି । ପିଲାମାନେ ଏ ବିଷୟରେ କିଛି ଜାଣି ନାହୁଁ ବୋଲି କହିଲେ । ମୁଁ ସେମାନଙ୍କୁ ଆସନ୍ତା କାଲି ସେହି ଦୁଇଜଣଙ୍କୁ ମୋ ପାଖକୁ ଡାକି ଆଣ ବୋଲି କହିଲି । ପିଲାମାନେ ତା' ଆରଦିନ ସେହି ଦି'ଜଣ ପିଲାଙ୍କୁ ଡାକିଲେ କିନ୍ତୁ ସେମାନେ ଆସିବା ପାଇଁ ମନା କରିଦେଲେ । ମୁଁ ପରେ ଜାଣିଲି ଯେ ସେମାନେ କାହିଁକି ସ୍କୁଲକୁ ଆସୁନାହାନ୍ତି । ଆଗରୁ ଏହି ସ୍କୁଲରେ ତ୍ରିନାଥ ବୋଲି ଜଣେ ଗୁରୁ

ଥିଲା । ସେ ଦିନେ ଏଇ ପିଲା ସନା ମାଝୀଙ୍କୁ ପ୍ରଶ୍ନଟିଏ ପଚାରିଲା । ସନା ଏହାର ଉତ୍ତର ଦେଇ ପାରିଲା ନାହିଁ ଓ ପିଲାମାନେ ହସିଦେଲେ । ସେହି ଦିନଠାରୁ ଏକ ବର୍ଷ ହୋଇଗଲାଣି ସେ ଆଉ ସ୍କୁଲକୁ ଆସୁନାହିଁ । ଆଉ 'ମୂଳା' ବୋଲି ଗୋଟିଏ ଝିଅ ସେ ଦେଖିଲେ ଡରିଯାଇ ଲୁଚି ଯାଉଥିଲା । ମୁଁ ଏଥିପାଇଁ ଗୋଟିଏ ଉପାୟ ବାହାର କଲି ସମୟ ପାଇଲେ ସେମାନଙ୍କ ଘରକୁ ଯାଇ ସେମାନଙ୍କ ବାପାମା'ଙ୍କୁ ବୁଝାଇବା ସହିତ ସେମାନେ ଖେଳିଲା ବେଳେ ସାଂଗ ହୋଇ ଖେଳିଲି । ଏପରି କେତେ ଦିନ ଯିବା ପରେ ସେମାନେ ମୋତେ ଆଉ ଡରିଲେ ନାହିଁ । ତେଣୁ ତା'ଆରଦିନ ମୂଳା ଓ ସନା ଦୁଇଜଣଙ୍କୁ କହିଲି, ତୁମେ କାହିଁକି ସ୍କୁଲ ଆସୁନାହିଁ । ତୁମେ ଆଜି ଆସ । ଆମେ ଦିନବେଳେ ଯେମିତି ଖେଳିଲେ, ଠିକ୍ ସେମିତି ସ୍କୁଲରେ ମଧ୍ୟ ଖେଳିବା, ଗୀତ ଗାଇବା, ନାଚ କରିବା, ଗପ କରିବା । ଏକଥା କହିବାରୁ ସେମାନେ ଖୁସି ହୋଇଗଲେ । ସେମାନେ ତା'ପରଦିନଠାରୁ ପ୍ରତିଦିନ ସ୍କୁଲକୁ ଆସିବାକୁ ଲାଗିଲେ । ମୁଁ ସେମାନଙ୍କୁ ସ୍ଲେଟ୍ ଓ ଖଡି ଦେଲି । ବର୍ତ୍ତମାନ ସେମାନେ ସବୁଦିନ ସ୍କୁଲକୁ ଆସୁଛନ୍ତି ।

ମୁଁ ସବୁଦିନ ପ୍ରଥମ ପିଲାଙ୍କୁ ଶିକ୍ଷଣୀୟ ଗପସବୁ କହେ । ତା'ପରେ ପରିବେଶ ଉପରେ ପଢ଼ାଏ । କେବେ ଗଣିତ, କେବେ ଭାଷା ପଢ଼ାଏ । ଶେଷରେ ଦୁଇଟି ଦଳ କରି ପହଲି ପଚାରେ, ଅଭିନୟ କରାଏ, ଗୀତ ପ୍ରତିଯୋଗିତା କରାଏ । ପତ୍ର ମାଧ୍ୟମରେ ପଢ଼ାଏ । ପ୍ରଶ୍ନ ମାଧ୍ୟମରେ ଦୁଇଟି ଦଳ ମଧ୍ୟରେ କିପରି ଭାବିଥିବା ଜିନିଷର ନାମ ଜାଣିବେ, ତାହାପିଲାଙ୍କୁ ବେଶୀ ଆନନ୍ଦ ଦିଏ ଓ କୌତୂହଳୀ କରାଏ । ମୁଁ ଏହିପରି ବିଭିନ୍ନ ଉପାୟରେ ପିଲାଙ୍କୁ ଶିକ୍ଷା ଦେଇଥାଏ । ମୁଁ ପିଲାଙ୍କୁ ପ୍ରଥମେ ଆନନ୍ଦ ଦେବାରେ ସାହାଯ୍ୟ କରେ ଓ ତା'ପରେ ଶିକ୍ଷା ଦେବାପାଇଁ ଚେଷ୍ଟା କରିଥାଏ । ମୁଁ ପାଠ ପଢ଼ାଉଥିବାବେଳେ ଏହି ଦୁଇଟି କଥା ଉପରେ ବେଶି ଗୁରୁତ୍ୱ ଦିଏ । ତେଣୁ ପିଲାମାନେ ଖୁସିରେ ସ୍କୁଲ ଆସନ୍ତି ।

**ଦିବାକର ଜାନୀ**

**ନବସୃଜନ ଶିକ୍ଷାକେନ୍ଦ୍ର, ମେରାକାନି,**

**ନବରଙ୍ଗପୁର**



# ଆଦର୍ଶ ଗାଁ ମେରାକାନି

ପାହାଡକଡରେ ରହିଥିବା ଗାଁଟିଏ; ନାଁ ତା'ର ମେରାକାନି । ଏହି ଗାଁରେ ୩୫ଘର ଆଦିବାସୀ ସଂପ୍ରଦାୟର ଲୋକ ବସବାସ କରିଅଛନ୍ତି । ଏମାନଙ୍କର ମୁଖ୍ୟ ବେଉସା ଡଙ୍ଗର ଚାଷ, କୁଲିଭୂତି ଓ ବାଉଁଶରୁ ଡାଲା, ଚାଙ୍ଗୁଡି, କୁଲା ଇତ୍ୟାଦି ତିଆରି କରି ବିକ୍ରି କରିବା । ଏହି ଗାଁରେ ୧୯୯୯ ମସିହାରେ ଅଗ୍ରଗାମୀ ଦ୍ୱାରା ପି.ଆର୍.ଏ. ସର୍ବେକ୍ଷଣ କରାଗଲା । ଏଥିରୁ ଜଣାପଡିଲା, ସରକାର ଦ୍ୱାରା କଲୋନୀ ଘର ଆସିଥିଲା ୫ଟି, କିନ୍ତୁ ସଂପୂର୍ଣ୍ଣ ହୋଇଛି ୧ଟି, ବାର୍ଦ୍ଧକ୍ୟ/ବିଧବା ଭତ୍ତା ୯ଜଣ ପାଉଛନ୍ତି । ୧୦ଜଣଙ୍କୁ ବାଉଁଶ କାମ ପାଇଁ ଋଣ ମିଳିଛି ଓ ବି.ପି.ଏଲ୍. କାର୍ଡ଼ ମିଳିଛି । ଏହାଛଡା ନଳକୂଅ ଗୋଟିଏ ହୋଇଛି । ଏହି ଗାଁକୁ ଅଗ୍ରଗାମୀ ଗୋଟିଏ ଆଦର୍ଶ ଗ୍ରାମ କରିବା ପାଇଁ ନିଷ୍ପତ୍ତି ନେଇଥିଲା ଆଉ ଲୋକମାନଙ୍କ ସାହାଯ୍ୟ ସହଯୋଗ ରହିବା ପାଇଁ ଗାଁରେ ଗୋଟିଏ ବୈଠକ ଡକାଗଲା । ଯେତେ କାମ ହେବ, ଅଗ୍ରଗାମୀକୁ ଗାଁଲୋକ ୫୦ ପ୍ରତିଶତ ସାହାଯ୍ୟ କରିବେ ବୋଲି ରାଜିହେଲେ । ଗାଁରେ ହେବାକୁ ଥିବା କାମ ଯଥା; ଗୋଷ୍ଠୀଗୃହ, ପୋଖରୀ ଖନନ, ପଥର ଘାଟୁ କାମ, ଜଙ୍ଗଲ ସୁରକ୍ଷା, ନିଶା ନିବାରଣ, ୬-୧୪ ବର୍ଷର ସମସ୍ତ ଶିଶୁ ସ୍କୁଲ୍ ଯିବା, ଗାଁର ସବୁଲୋକ ସାକ୍ଷର ହେବେ, ସରକାରୀ କାମ ସବୁ ଗାଁ କମିଟି କରିବ, ଉନ୍ନତ ପ୍ରଣାଳୀରେ ଚାଷ ହେବ ଇତ୍ୟାଦି ।

ମୂଳକଥା ହେଉଛି ଯେ ଖାଦ୍ୟ ନିରାପତ୍ତା ଓ ସ୍ୱର ଉତ୍ତୋଳନ କରିବା । ଏହି ଗାଁରେ କାମ ହୋଇଛି: ଘାଟୁ କାମ ୬ଏକର, ଗୋଷ୍ଠୀଗୃହ (ପକ୍କା)- ଟ ୭୦,୦୦୦ଙ୍କା, ପୋଖରୀ ଖନନ- ୮୦,୦୦୦ଟଙ୍କା, ଜଙ୍ଗଲ ସୁରକ୍ଷା - ୫୦ଏକର, ମହିଳାମଣ୍ଡଳ ଗଠନ ଓ ସଭ୍ୟାଚାନ୍ଦା ଆଦାୟ, ସ୍କୁଲ୍ । ଏସବୁ କାମ ହେବା ଦ୍ୱାରା ଗାଁଲୋକଙ୍କୁ କାମ ମିଳିଛି, ମଜୁରି ଠିକ୍ ଭାବରେ ମିଳିଛି, ଜମି ନିଜର ହୋଇଛି, ସଞ୍ଚୟ କରିପାରିଛନ୍ତି । ଏହି ସଞ୍ଚୟ ତାଙ୍କର ଅସୁବିଧା ସମୟରେ କାମ ଦେଇଛି ଯଥା;

ବର୍ଷାଦିନର ଖାଦ୍ୟାଭାବ ସମୟରେ ଖାଦ୍ୟ ମିଳିଛି, ଚାଷ କାମ ନିମନ୍ତେ ସାହୁକାର ପାଖରୁ ଋଣ ନ ଆଣି ସଞ୍ଚୟ ପାଣ୍ଠିର ଋଣ ଆଣୁଛନ୍ତି ଓ କମ୍ ସୁଧରେ ଫେରାଉଛନ୍ତି ।

ମୋଟ ୨୪ଜଣ ପିଲା ସ୍କୁଲକୁ ପାଠ ପଢ଼ିବା ପାଇଁ ଆସୁଛନ୍ତି । ୨୦୦୦ ମସିହାରେ ଅଗ୍ରଗାମୀ, ପାଡ଼େପଦର ଦ୍ୱାରା ଆୟୋଜିତ ଶିଶୁମେଳାରେ ସ୍କୁଲ୍‌ରେ ପଢୁଥିବା ଜଣେ ପିଲା ଶ୍ୟାମ ଜାନୀ ଆଦର୍ଶ ଛାତ୍ର ଭାବରେ ପୁରସ୍କାର ପାଇଲା । ସେ ସ୍କୁଲ୍‌କୁ ସବୁଦିନେ ଆସେ, ସଫାସୁତୁରା ରହେ, ପିଲାମାନଙ୍କୁ ଡାକି ସ୍କୁଲ୍‌ରେ ବସାଏ, ବଡମାନଙ୍କ କଥା ମାନି ଚଳେ, ପିଲାମାନଙ୍କୁ ନେଇ ରାସ୍ତା ସଫା କରେ, ଗୁରୁ ନଥିବାବେଳେ ସ୍କୁଲ୍ ମଧ ଚଳାଏ ।

ପରେ ପରେ ପୋଖରୀ କାମରେ ଜଣେ କୁଲିର ଦୁର୍ଘଟଣା ଓ ପାରିବାରିକ ଅଶାନ୍ତି କାରଣରୁ ମୋ ମନ ଠିକ୍ ରହିନାହିଁ । କିନ୍ତୁ ମୁଁ ମୋ ମନୋବଳ ହରାଇନାହିଁ । ବିପଦ ତ ଆସିବ, ସେଥିପାଇଁ ଛାନିଆଁ ହେଲେ ଚଳିବ ନାହିଁ; ସେସବୁର ମୁକାବିଲା କରିବା ଦରକାର ।

ଦିବାକର ଜାନୀ
ନବସୃଜନ ଶିକ୍ଷାକେନ୍ଦ୍ର, ତୁତୁଙ୍ଗଚୁଆଁ
ପାଡେପଦର, କଳାହାଣ୍ଡି



# ସପନ ସତ ହୋଇଛି

ଅଗ୍ରଗାମୀ ଆଦିବାସୀ ଗରିବ ଲୋକମାନଙ୍କ ପାଇଁ କାଶୀପୁର ବ୍ଲକ୍‌ରେ ୧୯୮୭ ମସିହାରୁ କାମ କରିଆସୁଛି । ଅଗ୍ରଗାମୀ ଦ୍ୱାରା ବହୁତ ଲୋକ ପରିବର୍ତ୍ତନ ହେଲେଣି ଏବଂ ଭବିଷ୍ୟତରେ ହେବେ ମଧ୍ୟ । ଅଗ୍ରଗାମୀ ସ୍କୁଲ ନଥିବା ଜାଗାରେ ଓ ପାହାଡିଆ ଇଲାକାରେ ସ୍କୁଲଗୁଡିକ ଖୋଲି ତା'ର ପରିଚାଳନା କରୁଛି । ଏହି ସ୍କୁଲ ମାନଙ୍କରେ ଗାଁର ସମସ୍ତ ଲୋକ କିପରି ପଢ଼ିବେ ସେଥିପାଇଁ ନିଜ ଅଞ୍ଚଳର ଗୁରୁଭାଇମାନେ ନିଜ ଜାତି, ଦେଶ ଓ ସେମାନେ ଆମରି ଭାଇ ବୋଲି ଭାବି ଲୋକମାନଙ୍କ ଶିକ୍ଷା ଦେବା ଦରକାର । ଆମେ ଯେ ଗାଁରେ ରହି ଖାଲି ପାଠପଢ଼ାଇବା ତା ନୁହେଁ । ତା'ସହିତ ଶିକ୍ଷା, ସ୍ୱାସ୍ଥ୍ୟ, ଜଳବାୟୁ, ପରିବେଶ, ଖାଦ୍ୟ ନିରାପତ୍ତା, ସରକାରୀ ଯୋଜନାରେ ଲୋକଙ୍କୁ ସାହାଯ୍ୟ, ଦୁର୍ନୀତି, ଶୋଷଣ, ମାନବିକ ଅଧିକାର ଇତ୍ୟାଦି ବିଷୟରେ ସଚେତନ କରାଇବା ଦରକାର । ପ୍ରଥମେ ଆମେ ବାହାରିଲେ ଯାଇ ଅନ୍ୟମାନେ ବାହାରିବେ । ଆମେ ଯଦି ଠକିବା ତେବେ ଆମ ଜାତି, ଦେଶ ଓ ଆମେ ନିଜକୁ ନିଜେ ଠକିବା ବୋଲି ମୁଁ ଭାବେ । ପିଲାମାନେ ଖାଲି ଦସ୍ତଖତ କରିବା ଶିଖି ଦେଲେ କାମ ସରିଗଲା ବୋଲି ଧରାଯିବ ନାହିଁ । ଗାଁର ସବୁ ବଡ଼ଲୋକମାନେ ମଧ୍ୟ ଶିକ୍ଷିତ ହେବା ଦରକାର । ସେମାନେ ଗାଁର ବିଷୟ, ନିଜ ପରିବାର, କୁଟୁମ୍ବ, ଦେଶବିଦେଶର ଖବର ମଧ୍ୟ ଜାଣିବା ଦରକାର । ସବୁଠାରୁ ବଡ଼ ସମସ୍ୟା ହେଲା ନିଜ ସମସ୍ୟା ବା ବଞ୍ଚି ପାରିବା ସମସ୍ୟା । ମାନବିକ ଅଧିକାର, କାର୍ଯ୍ୟ ହାସଲ ପାଇଁ ସ୍ୱର ଉତ୍ତୋଳନ କରିବାର ଅଧିକାର, ଶୋଷଣ ବିଷୟରେ ଜାଣିବା, ଚାଷକାମ ବିଷୟରେ ଜାଣି ପାରିବା ମଧ୍ୟ ବହୁତ ବଡ଼ କଥା ।

କୃଷିର ଉନ୍ନତି ହେଲେ ଦେଶ ବା ଜାତି ସେତେ ଉନ୍ନତ ହେବ ବୋଲି ମୋର ଆଶା । ତେଣୁ ଶିକ୍ଷା ସହିତ କୃଷିର କିପରି ଉନ୍ନତି ହେବ ସେଥିପାଁ ଆମେମାନେ ଗାଁ ଲୋକଙ୍କୁ ସଚେତନ କରାଇବା ଦରକାର । ଗତବର୍ଷଠାରୁ ୧୦୦ଟି ନବସୃଜନ

ଶିକ୍ଷାକେନ୍ଦ୍ର ଚାଲୁଛି । ଆଜିକୁ ୧୯ମାସ ହେଲା ସ୍କୁଲରେ ରହି ଗାଁର ସୁବିଧା ଅସୁବିଧା ଜାଣି ହେଉଛି । ପ୍ରତ୍ୟେକ ସ୍କୁଲର ଖବରବାର୍ତ୍ତା ଜାଣିବା ପାଇଁ ଆମେ ଏହି 'ନୂଆପାଠ ନୂଆବାଟ' ବାହର କରୁଛୁ । ସେଠି ପ୍ରତି ତିନିମାସରେ ସ୍କୁଲ ତଥା ଗାଁ ବିଷୟରେ ସବୁ ଆଡର ଖବର ପାଇପାରୁଛୁ । ଏହା ଗୋଟିଏ ବହୁତ ଭଲ ଉପାୟ । ଏହି ପତ୍ରିକା ଯୋଗୁଁ ଆମକୁ ଗୋଟିଏ ରେଡିଓ ଥିଲା ପରି ଜଣାପଡୁଛି । ଏହି ପତ୍ରିକା ପ୍ରକାଶ ପାଉଥିବାରୁ ମୁଁ ବହୁତ ଖୁସୀ । ଏଥିରେ ଗାଁର ଅବସ୍ଥିତି, ଇତିହାସ, ଘଟଣା, ସଂସ୍କୃତିକ ପରମ୍ପରା, ଆଞ୍ଚଳିକ ଗୀତ, ଗପ ଇତ୍ୟାଦି ବିଷୟ ପ୍ରକାଶ ପାଉଛି ।

ଆମର ଏହି ସ୍କୁଲକୁ ପାଖ ପଡିଶା ଗାଁର ପିଲା ମଧ୍ୟ ପଢ଼ିବାକୁ ଆସୁଛନ୍ତି । ସରକାରୀ ସ୍କୁଲ୍ ଥିବା ଗାଁର ଲୋକମାନେ ମଧ୍ୟ କେବେ କେବେ ଆମର ସ୍କୁଲରେ ବସି ଭଲମନ୍ଦ ବିଷୟ କଥାବାର୍ତ୍ତା କରିଯାଆନ୍ତି । ସରକାରୀ ସ୍କୁଲ ଥିବା ଗାଁମାନଙ୍କରେ ସ୍କୁଲ୍ ଘର ଥାଇ ମଧ୍ୟ ଶିକ୍ଷକ ମୋଟେ ସ୍କୁଲକୁ ଆସନ୍ତି ନାହିଁ ବୋଲି କହନ୍ତି । କେଉଁ ଗାଁରେ ସ୍କୁଲ ଗୃହ ଅଛି ତ କେଉଁଠି ନାହିଁ । କେଉଁଠି ଭଙ୍ଗାରୁଜା ଚଟାଣ ତ ଆଉ କେଉଁଠି ଉପର ଛାତ, କବାଟ ମଧ୍ୟ ନାହିଁ । ମୁଁ ସରକାରୀ ସ୍କୁଲ ଥିବା ଗାଁମାନଙ୍କରେ ସବୁ ଗାଁକୁ ଯାଇଛି । ଗାଁ ଲୋକମାନଙ୍କ ସହିତ ମିଶିଛି । ସେହି ଗାଁମାନଙ୍କରେ ୫୦/୬୦ ପିଲା ପାଠ ନପଢ଼ି ବୁଲୁଛନ୍ତି । ସେମାନଙ୍କୁ ମୁଁ କହେ, 'ଆମ ସ୍କୁଲ ପାଠ ପଢିବା ଆସ ।' ସେମାନଙ୍କର ଇଛା ଅଛି । କିନ୍ତୁ ଆମ ସ୍କୁଲ ତାଙ୍କ ପାଇଁ ଦୂର ହେଉଛି । ତଥାପି ମୋ ସ୍କୁଲରେ ବାହାରର ଦୁଇଟି ଗାଁରୁ ପିଲାମାନେ ପଢ଼ିବା ପାଇଁ ଆସୁଛନ୍ତି ।

ଶିରିପାଇ ପଞ୍ଚାୟତରେ ସରକାରୀ ସ୍କୁଲ ମଧ୍ୟରୁ ଗୋଟିଏ ମିନାଖୁଣ୍ଟି ଆଶ୍ରମକୁ ଛାଡିଦେଲେ ଅନ୍ୟ ସବୁ ସ୍କୁଲ ମୋଟେ ଚାଲୁ ନାହିଁ । ଶିକ୍ଷକମାନେ ଶିକ୍ଷା କମିଟିମାନଙ୍କ ଦସ୍ତଖତ ନନେଇ ମଧ୍ୟ ପ୍ରତି ମାସରେ ଦରମା ଉଠାଉଛନ୍ତି । ବଡ ଦୁଃଖର ବିଷୟ ଯେ, ଦେଶ ସ୍ୱାଧୀନ ହୋଇ ୫୩ ବର୍ଷ ଚାଲୁଥିବା ବେଳେ ମଧ୍ୟ ପାହାଡ଼ିଆ ଆଦିବାସୀ ଇଲାକାରେ କୌଣସି ଲୋକଙ୍କର କିଛି ଉନ୍ନତି ହୋଇନାହିଁ । ସରକାରୀ ସ୍କୁଲ ଥିବା ଗାଁମାନଙ୍କରେ ଯଦି ଶିକ୍ଷକ ଗାଁରେ ରହି ପାଠ ପଢ଼ାଉଥାନ୍ତେ ବର୍ତ୍ତମାନ କେହି ନିରକ୍ଷର ରହି ନଥାନ୍ତେ । ସ୍କୁଲ ଥିବା ଗାଁରେ ଲୋକମାନଙ୍କୁ ଦରଖାସ୍ତ ଲେଖି ଦେଉଛି ମାଷ୍ଟର ରହିବା ପାଇଁ । ଏଥର ଦରଖାସ୍ତ ଲେଖେଇ ନେଲେଣି । ପଠେଇଲେ କିନ୍ତୁ ଶିକ୍ଷକ ରହୁନାହାନ୍ତି । ସେ ପାଖାପାଖି ଗାଁର ଲୋକମାନେ ମୋତେ ଆମ ଗାଁର ଗୁରୁଭାଇ ହୋଇଯାଅ, ଆମେ ଗାଁ ଲୋକ ସରକାରଙ୍କୁ ଲେଖି ଦେବୁ ବୋଲି କହନ୍ତି । କିନ୍ତୁ ମୁଁ ସେଥିପାଇଁ ଆସିଛି ବୋଲି କହେ । ସ୍କୁଲ ଚାଲୁଛି କି ନାହିଁ ଯଦି ଶିକ୍ଷା ବିଭାଗର

ଅଫିସରମାନେ ବୁଲି ବୁଲି ବିଦ୍ୟାଳୟ ପରିଦର୍ଶନ କରନ୍ତେ ବା ପ୍ରତିମାସରେ ସ୍କୁଲ ତଦାରଖ କରିଥାନ୍ତେ ସ୍କୁଲ କାହିଁକି ଭଲ ଚାଲି ନଥାନ୍ତା । ମାସକୁ ମାସ ଯଦି ପିଲାଙ୍କର ମୂଲ୍ୟାଙ୍କନ, ଶିକ୍ଷକଙ୍କ ଦୈନିକ ବିବରଣୀ, ଛାତ୍ରଛାତ୍ରୀଙ୍କ ଦୈନିକ ଉପସ୍ଥାନ ଓ ମାସ ଶେଷରେ ପ୍ରତ୍ୟେକ ସ୍କୁଲର ଶିକ୍ଷା କମିଟିମାନଙ୍କର ଲେଖା ବି.ଡ଼ି.ଓ. ବା ସ୍କୁଲ ଏସ୍.ଆଇ. ପାଖରେ ପହଞ୍ଚିଲେ ସ୍କୁଲ ଗୁଡିକ ଭଲ ଚାଲିଥାନ୍ତା ଏବଂ ପ୍ରତିମାସରେ ପହଞ୍ଚିବା ଦରକାର ।

ପାହାଡିଆ ଆଦିବାସୀ ଇଲାକାରେ ସ୍କୁଲ ଚାଲି ବର୍ଷ ବର୍ଷ ହେଲାଣି । ଯଦି ଠିକରେ ପାଠପଢ଼ା ହୋଇଥାନ୍ତା ଓ ଶିକ୍ଷକ ଗାଁରେ ରହୁଥାନ୍ତେ, ଗାଁର ସମସ୍ତ ପିଲା ତା'ହେଲେ ନିଶ୍ଚୟ ପାଠ ପଢ଼ନ୍ତେ ଏବଂ ଗାଁର ଲୋକମାନେ ମଧ୍ୟ ଶିକ୍ଷା ବିଷୟରେ ଜାଣନ୍ତେ । ସେ ଲୋକମାନେ ଶିକ୍ଷାମାନେ କ'ଣ ଜାଣି ନାହାନ୍ତି । ଯଦି ଶିକ୍ଷା ବିଷୟରେ ଜାଣିଥାନ୍ତେ ତେବେ ସେମାନେ ଖାଦ୍ୟ, ସ୍ୱାସ୍ଥ୍ୟ, ଜଳବାୟୁ, ପରିବେଶ ଇତ୍ୟାଦି ବିଷୟରେ ସଚେତନ ହୋଇପାରନ୍ତେ । ଶିରିପାଇ ପଞ୍ଚାୟତରେ ଅଗ୍ରଗାମୀ ଦ୍ୱାରା ୫ଟି ନବସୃଜନ ଶିକ୍ଷାକେନ୍ଦ୍ର ଚାଲୁଛି । ସେ ଗାଁରେ ସବୁ ପିଲା ଏବେ ପାଠ ପଢୁଛନ୍ତି । ସେହିପରି ସରକାରୀ ସ୍କୁଲରେ ଯଦି ସ୍କୁଲ ଆରମ୍ଭ ଦିନଠାରୁ ପାଠ ପଢ଼ିଥାନ୍ତେ ବର୍ତ୍ତମାନ ସମସ୍ତେ ଶିକ୍ଷିତ ହୋଇଯାଇଥାନ୍ତେ । ଏହି ପଞ୍ଚାୟତରେ ଶିକ୍ଷା, ସ୍ୱାସ୍ଥ୍ୟ, ଖାଦ୍ୟବସ୍ତ୍ର ବିଷୟରେ ଏଯାଏଁ କୌଣସି ଆଖିଦୃଶିଆ ପରିବର୍ତ୍ତନ ହୋଇ ନାହିଁ ।

ଗତବର୍ଷ ଆଷାଢ଼ ମାସ ହୋଇଥାଏ । ସେତେବେଳେ ଅଟା ଗାଁରେ ମରୁଡ଼ି ଲାଗିଥିଲା । ଯିବା ପାଇଁ ମଧ୍ୟ ଭୟ ଲାଗୁଥିଲା । ୧୦ ଦିନରେ ୧୪ ଜଣ ଲୋକ ମରିଥିଲେ । ମ୍ୟାଲେରିଆ ସହିତ ମୁଁ ଅଟାଗାଁରେ ଔଷଧ ଧରି ଯାଇଥିଲୁ । ଆମେ ଯିବା ସମୟରେ ଗାଁର ସମସ୍ତେ ରୋଗରେ ପଡିଥାନ୍ତେ । ସେମାନଙ୍କୁ ଔଷଧ ଦେବା ପାଇଁ କହିଲେ ମଧ୍ୟ କେହି ନେଉ ନଥିଲେ । ତା'ପରେ ମୁଁ ଯାଇ ଆମ ଭାଷାରେ ଔଷଧ ବିଷୟରେ ବୁଝାଇବାରୁ ସେମାନେ ଖୁବ୍ କଷ୍ଟରେ ଔଷଧ ନେଲେ । ଯେତିକି ଔଷଧ ନେଇଥିଲୁ ସବୁ ବାଣ୍ଟି ଦେଇ ସେମାନଙ୍କ ଗାଁରେ ସ୍କୁଲ ହେଉଛି କି ନାହିଁ ପଚାରି ବୁଝିଲୁ । ସେମାନେ କହିଲେ ଆମ ଗାଁରେ ତ ସ୍କୁଲ ନାହିଁ । ତୁମେ ଆମ ଗାଁକୁ ପଳାଇଆସ । ମୁଁ କହିଲି ମୁଁ ସିର୍ଲିଯୋଡି ଗାଁରେ ଗୁରୁଭାଇ ଅଛି । ମୁଁ ତୁମକୁ ଦରଖାସ୍ତ ଖଣ୍ଡେ ଲେଖିଦେବି । ସେମାନେ ପରେ ସେପରି କରିଥିଲେ । ବର୍ତ୍ତମାନ ମୋ ସ୍କୁଲଟି ଠିକ୍ ଚାଲିଛି । ସବୁ ପିଲା ଭଲ ପାଠ ପଢୁଛନ୍ତି । ଶିକ୍ଷା କମିଟି ମଧ୍ୟ ସ୍କୁଲ ପରିଦର୍ଶନ ପାଇଁ ସପ୍ତାହକୁ ୨/୩ ଦିନ ଆସି ସ୍କୁଲର ଦୁଃଖସୁଖ ବୁଝନ୍ତି ଏବଂ ସେମାନେ ମଧ୍ୟ ପାଠ

ପଢ଼ନ୍ତି । ସ୍କୁଲକୁ ପିଲାମାନେ ନଆସିଲେ ତାଙ୍କ ବାପାମା' ଏବଂ ଶିକ୍ଷା କମିଟିର ସଭ୍ୟ/ସଭ୍ୟାମାନଙ୍କ ସହ ମିଶେ । ସେମାନେ ଯେମିତି ଗାଁର ସମସ୍ତଙ୍କୁ ଡାକି ସ୍କୁଲକୁ ଆସିବା ପାଇଁ କହିବେ । ଆମ ସ୍କୁଲର ଅଧା ପିଲା ଦିନବେଳେ ମଧ୍ୟ ମୋ ପାଖରେ ପାଠ ପଢ଼ନ୍ତି । ଦିନରେ ଗାଈଗୋରୁ, ଛେଳି ଚରାଉଥିବା ପିଲା ଏବଂ କାମରେ ବାପାମା'ଙ୍କୁ ସାହାଯ୍ୟ କରୁଥିବା ପିଲା କେବଳ ରାତିରେ ଆସନ୍ତି ।

ଆମ ସ୍କୁଲରେ ଶିକ୍ଷାଦାନ ସମୟ ଦିନରେ ୩ ଘଣ୍ଟା ରଖାଯାଇଛି । କିନ୍ତୁ ମୁଁ ସକାଳ ୮/୯ ଘଣ୍ଟାରୁ ଆରମ୍ଭ କଲେ ସମୟ କିଛି ଜାଣି ହୁଏ ନାହିଁ । ଉପର ଓଳି ଘଣ୍ଟେ ଦୁଇ ଘଣ୍ଟା ହୋଇଯାଏ । ପିଲାମାନଙ୍କ ଇଛା ଅନୁସାରେ ଶିକ୍ଷାଦାନ ଦିଆଯାଏ । ସେମାନେ ଭୋକ ହେଲେ ଛୁଟି କରିବା ପାଇଁ କହନ୍ତି । ପିଲାମାନଙ୍କୁ ଶିକ୍ଷାଦାନ ସମୟରେ ନାଚ, ଗୀତ, ଗପ, ଖେଳ କରାଇବା ନିହାତି ଦରକାର । ପିଲାମାନେ ଏସବୁରେ ବେଶି ଖୁସି ହୁଅନ୍ତି । ଆମେ ଅଗଷ୍ଟ ପନ୍ଦର ଦିନ 'ଭାରତ ମାତାକି ଜୟ' ବୋଲି କହି ସ୍ଲୋଗାନ୍ ଦେଇ ଗାଁରେ ବୁଲିଲୁ ଏବଂ ଗାଁର ଲୋକମାନଙ୍କର ସତେ ଯେମିତି ଗୋଟିଏ ପର୍ବ ହେଉଛି ସେମିତି ନିଜ ନିଜ ଦାଣ୍ଡରେ ଠିଆ ହୋଇ ମନ ଖୁସୀରେ ନିଜର ପିଲାଛୁଆଙ୍କୁ ଜୟ ଜୟ କରୁଥିବାକୁ ଦେଖୁଥିଲେ । ପତାକା ଉତ୍ତୋଳନ ସମୟରେ ଗାଁର ଲୋକମାନେ ପଚାରିଥିଲେ, ଏହି ପର୍ବ କାହିଁକି ପାଳନ କରାହେଉଛି । ମୁଁ ଆମ ଭାଷାରେ ବୁଝାଇ କହିଦେଇଥିଲି ।

ବଡ଼ ଦୁଃଖରେ ବିଷୟ ଆମ ଦେଶ ସ୍ୱାଧୀନ ହେବାର ଏତେ ବର୍ଷ ପରେ ମଧ୍ୟ ଲୋକ ତ୍ରିରଙ୍ଗା ପତାକା କ'ଣ ଜାଣନ୍ତି ନାହିଁ, ଦେଖିବା କଥା ତ ଦୂରେ ଥାଉ । ଗତବର୍ଷଠାରୁ ଅଗ୍ରଗାମୀ ଦ୍ୱାରା ପରିଚାଳିତ ସ୍କୁଲଗୁଡ଼ିକରେ ତ୍ରିରଙ୍ଗା ପତାକା ଉଡୁଥିବାର ଦେଖୁଛନ୍ତି । ଗାଁ ଠାରୁ ପ୍ରାୟ ୨୦୦ ମିଟର ଦୂରରେ ଆମ ଶିକ୍ଷାକେନ୍ଦ୍ରର ଘରଟି ଚାଲୁଛି । ଗତ ବର୍ଷ ଆମେ ସମସ୍ତେ ମିଶି ଏହି ସ୍କୁଲଘରଟିକୁ ତିଆରି କରିଥିଲୁ । ଆମେ ୧୫ ହଜାର ଇଟା ଗଢ଼ିଥିଲୁ । ତା'ପରେ ଗାଁଲୋକ, ମୁଁ ଓ ପିଲାମାନେ ମିଶି କାନ୍ଥ ସବୁ ଉଠାଇଥିଲୁ । ମୋ ପାଇଁ ମଧ୍ୟ ସ୍କୁଲକୁ ଲାଗି ଗୋଟିଏ କୋଠରି କରାଯାଇଛି । ଏହି ଅଞ୍ଚଳରେ ବେଶି ଉଇ । ତେଣୁ ତଳେ କୌଣସି ଜିନିଷ ରଖି ହୁଏ ନାହିଁ । ତାହା ନଷ୍ଟ ହୋଇଯାଏ । ସେଥିପାଇଁ ମୁଁ ରହିବା ଘରର ଚଟାଣକୁ ଆମେ ପଲସ୍ତରା କରିଦେଇଛୁ । ଏହି ସ୍କୁଲଘରକୁ ଲାଗି ଗୋଟିଏ ଛୋଟିଆ କୁକୁଡ଼ା ରହିବା ଘର ମଧ୍ୟ କରାଯାଇଛି ଯେଉଁଠି ପିଲାମାନଙ୍କ କୁକୁଡ଼ା ରଖାଯାଏ । ଆମ ସ୍କୁଲ ସାମନାରେ ଗୋଟିଏ ଖେଳ ପଡ଼ିଆ ଅଛି । ବାରଣ୍ଡାରେ ଚାରିଆଡ଼େ ଫୁଲଗଛ ଲଗାଇଛୁ । ଏହି ଭିତରେ

ବାରମାସୀ ଫୁଲ, ସେବତୀ, କାଗଜ, ମନ୍ଦାର, ଅନ୍ୟାନ୍ୟ ଫୁଲଗଛ ଏବଂ ତିନିଟି ଅମୃତଭଣ୍ଡା ଗଛ ଲଗାଇଛୁ । ବର୍ତ୍ତମାନ ସେହି ଗଛ ସବୁରେ ଫୁଲଫଳ ଧରିଲାଣି । ସ୍କୁଲ ଗୃହ ପାଖରେ ବାଇଗଣ, ଟମାଟୋ, ମରିଚ, ଭେଣ୍ଡି, ଲାଉ ଏବଂ ଝୁଡଙ୍ଗ ଲଗାଇଛି । ଏସବୁ ପିଲାମାନେ ଯତ୍ନ ନିଅନ୍ତି ଏବଂ ମୁଁ ଏମାନଙ୍କୁ କାମ କରିବା ସମୟରେ ଚାଷ ବିଷୟରେ କଥାବାର୍ତ୍ତା କରି କାମ କରୁ । ଫୁଲକୁ ଛୋଟ ଛୋଟ ଝିଅମାନେ ବେଶି ଭଲପାଆନ୍ତି । ତେଣୁ ଫୁଲଗଛକୁ ବିଶେଷ କରି ଝିଅମାନେ ହିଁ ଅଧିକ ଯତ୍ନ ନେବାର ଦେଖାଯାଇଛି । ସନ୍ଧ୍ୟାବେଳେ ସେମାନେ ଫୁଲଗୁନ୍ଥି ସମସ୍ତେ ସ୍କୁଲକୁ ଆସନ୍ତି । ମୁଁ ଭାବେ ଫୁଲ ଥିବା ଯୋଗୁଁ ମୋ ସ୍କୁଲକୁ ଝିଅମାନେ ସବୁବେଳେ ଆସୁଛନ୍ତି ।

ଆମ ଗାଁରେ ୪ପୁଟି ୧୪ମାଣ ମାଣ୍ଡିଆ ପାଣ୍ଠିଥିଲା । ମାଣ୍ଡିଆ ଜୁନ୍ ମାସରେ ନେଲେ ଏବଂ କୋଶଳା ଅଗଷ୍ଟ ମାସ ରାଣୀ ପର୍ବରେ ନେଲେ । ଏହି ପାଣ୍ଠିକୁ ବର୍ତ୍ତମାନ ଉଠାଯାଉଛି । ଏହିପରି ପାଣ୍ଠି ବଢ଼ି ବଢ଼ି ଚାଲିଛି । ମାଣକୁ ୨ ଅଡ଼ା ଲେଖାଏଁ ସୁଧ ଦେବା ବୋଲି ଲୋକମାନେ ଠିକ କରିଛନ୍ତି । ଆମ ଗାଁରେ ସ୍କୁଲ ପିଲାଙ୍କ ପାଇଁ ମଧ୍ୟ ଗୋଟିଏ ପାଣ୍ଠି କରାଯାଇଛି । ଅଗଷ୍ଟ ମାସରେ ସମସ୍ତେ କିଛି କିଛି ଦେଇଥିଲେ । ସେମାନେ ମଧ୍ୟ ମାଣକୁ ୨ଅଡ଼ା ଲେଖାଏଁ ସୁଧ ଦେଇ ପାଣ୍ଠି ବଢ଼ାଇବେ । ଏବର୍ଷଠାରୁ ମକା ପାଣ୍ଠି କରିଛୁ । ଜଣେ ପିଲା ପିଛା ୧୦ ଲେଖାଏଁ କମା ଆଣି ସ୍କୁଲରେ ରଖିଛନ୍ତି । ଏମିତି ସବୁ ସ୍କୁଲ ପିଲାଙ୍କ ନାମରେ ରଖିବୁ ବୋଲି ଭାବିଛୁ ।

ଗତବର୍ଷଠାରୁ କୁକୁଡା ଚାଷ ମଧ୍ୟ କରାଯାଇଛି । ପ୍ରଥମେ ଗୋଟିଏ କୁକୁଡ଼ା ଥିଲା । ତାହା ବଂଶବିସ୍ତାର କରି ବଢ଼ି ବଢ଼ି ଚାଲିଛି । ଥରେ ଆଷାଢ଼ ମାସରେ ୧୨ଟି ଛୁଆ ହୋଇଥିଲା । କିନ୍ତୁ କାଦୁଅ ଲାଗି ସବୁ ମରିଗଲେ । ବର୍ତ୍ତମାନ ୩ଟା ଛୁଆ ଅଛନ୍ତି । ଆଉ ଦଶଟି ବଡ଼ ବଡ଼ ମାଇ କୁକୁଡ଼ା ଥିଲେ । ବର୍ତ୍ତମାନ ୫ଟି ଅଛନ୍ତି । ବର୍ତ୍ତମାନ ଟଙ୍କା ପାଣ୍ଠି ହିସାବରେ ଆମ ସ୍କୁଲରେ ୮୫ ଟଙ୍କା ଅଛି ।

ଗାଁର ସାମ୍ନାରେ ପିଲାମାନଙ୍କ ନାମରେ ଜଙ୍ଗଲ ଛାଡ଼ିଛୁ । ମୁଁ ଜଙ୍ଗଲ ବିଷୟରେ ଲୋକମାନଙ୍କୁ ବୁଝାଇଲା ପରେ ଏସବୁ ସମ୍ଭବ ହୋଇଛି । ସେମାନଙ୍କୁ ଆୟକାରୀ ପନ୍ଥା ବିଷୟରେ ମଧ୍ୟ ବୁଝାଉଛି । କେମିତି ସେସବୁ ବଢ଼ିବ ଓ ତିନିବର୍ଷ ପରେ ଅନ୍ୟର ସାହାଯ୍ୟକୁ ଆଶା ନକରି ନିଜେ ନିଜେ କେମିତି ସ୍କୁଲ ଚଳାଇପାରିବୁ ସେ ସମ୍ପର୍କରେ ଲୋକମାନଙ୍କୁ ବୁଝାଉଛି ।

ଜୟରାମ ମାଝୀ
ନବସୃଜନ ଶିକ୍ଷାକେନ୍ଦ୍ର, ସିର୍ଲିଯୋଡ଼ି

□□□

# ଆଗେ ଓ ଏବେ

ଆମ ନବସୃଜନ ବିଦ୍ୟାଳୟ ଠିକ୍‌ଭାବେ ଚାଲିଛି । ପିଲାମାନେ ମଧ୍ୟ ଠିକ୍ ସମୟରେ ସ୍କୁଲକୁ ଆସୁଛନ୍ତି । ସକାଳ ବେଳା କେତେକ ପିଲା ଆସି ପାରୁନାହାନ୍ତି । କାରଣ ସେମାନେ କାମ କରିବା ପାଇଁ ଡଙ୍ଗରକୁ ଯାଉଛନ୍ତି । ଆମ ଗାଁରେ ପ୍ରାୟ ୩୦ ଘର ଆଦିବାସୀ ଅଛନ୍ତି । ମୋଟ ଜନସଂଖ୍ୟା ୧୫୦ । ସେମାନଙ୍କ ମଧ୍ୟରୁ ୨୪ଜଣ ପିଲା (ପୁଅ ୧୫ ଓ ଝିଅ ୯ଜଣ) ଆମ ସ୍କୁଲରେ ପଢୁଛନ୍ତି । ଦିନରେ ଛୋଟ ଛୋଟ ପିଲାମାନେ ପଢ଼ିବା ପାଇଁ ଆସୁଛନ୍ତି ଏବଂ ରାତିରେ ସମସ୍ତେ ସ୍କୁଲକୁ ଆସୁଛନ୍ତି । ସ୍କୁଲ ଶିକ୍ଷାକମିଟି ସଭ୍ୟ/ସଭ୍ୟାମାନେ ମଧ୍ୟ ସ୍କୁଲକୁ ଆସୁଛନ୍ତି ଏବଂ ପିଲାମାନଙ୍କୁ ତାଙ୍କ ଆଦିବାସୀ ଭାଷାରେ ଗପ, ଗୀତ ଶିକ୍ଷା ଦେଉଛନ୍ତି । ତେଣୁ ମୁଁ ବହୁତ ଖୁସୀ । ଆମ ସ୍କୁଲରେ ପିଲାମାନେ ଭଲ ଭାବରେ ବସିବା ପାଇଁ ଜାଗା ହେଉନାହିଁ । ସେଥିପାଇଁ ସଭ୍ୟ/ ସଭ୍ୟାଙ୍କ ବଡ଼ ଘର କରିବା ପାଇଁ କୁହାଯାଇଛି । ଏ ବର୍ଷ ଇଟା ତିଆରି କରି ବଡ଼ଘର କରିବେ ବୋଲି କହିଛନ୍ତି ।

ମୁଁ ଲୋକଙ୍କୁ ନବସୃଜନ ଶିକ୍ଷାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ବିଷୟରେ ଭଲଭାବେ ବୁଝାଇଛି ଏବଂ ଗ୍ରାମରେ କେତେକ ବେକାର ଯୁବକମାନଙ୍କୁ ମଧ୍ୟ ସମୟ ମିଳିଲେ ନିଜେ ନିଜେ ଆସି କିପରି ଅଧିକା ପଢ଼ିପାରିବେ ଓ ଜାଣିପାରିବେ ସେ ବିଷୟରେ ବୁଝାଉଛି ଏବଂ ଗ୍ରାମରେ ଗୋଟିଏ ଯୁବକ ସଂଘ ମଧ୍ୟ କରାଯାଇଛି । ଯୁବକ ସଂଘ ମଧ୍ୟ ଗ୍ରାମର ସଫେଇ ନାଳ ନର୍ଦ୍ଦମା ସଫା କାମ କରୁଛନ୍ତି ଏବଂ ସ୍କୁଲ ଗୃହ ନିର୍ମାଣ ସମୟକୁ ସେମାନେ ମଧ୍ୟ ଇଟା ତିଆରି କରିବାରେ ସାହାଯ୍ୟ କରିବା ପାଇଁ କହିଛନ୍ତି । ବର୍ତ୍ତମାନ ଆଗପରି । ମୁଁ ଆସିବା ପୂର୍ବରୁ ଯେମିତି ଲୋକେ ମଦପିଇ ପାଟିତୁଣ୍ଡ କରୁଥିଲେ ବର୍ତ୍ତମାନ ଆଉ ସେଭଳି ହେଉ ନାହିଁ । ଅଧିକାଂଶ ଲୋକ ମଦ ଛାଡିଲେଣି ।

ଆମ ଗ୍ରାମର ପୂର୍ବ ଇତିହାସକୁ ମନେ ପକେଇଲେ ବଡ ଆଶ୍ଚର୍ଯ୍ୟ ଲାଗେ । ଭ୍ରମରଯୋଡ଼ ଗ୍ରାମରେ ପ୍ରଥମେ ୧୨ ଘର ଆଦିବାସୀ କେବଳ ରହୁଥିଲେ । ପୁଣି ସେହି ସମୟରେ ଏହି ଗାଁରେ ଚାରିପଟେ ଘଞ୍ଚ ଜଙ୍ଗଲ ଘେରି ରହିଥିଲା । ଗାଁ ତଳକୁ ଗୋଟିଏ

ନଦୀ ବହିଯାଉଥିଲା । ଏବେ ମଧ୍ୟ ଏହି ନଦୀ ବହିଚାଲିଛି । ବର୍ଷା ଦିନ ଯଦି ଆସିଲା ତା'ହେଲେ ଲୋକେ ଆଉ କେଉଁ ଆଡକୁ ଯାଇ ତାଙ୍କର ଜୀବନଧାରଣ କରିବେ ତାହା କହିହେବ ନାହିଁ । କାରଣ ନଈବଢ଼ି ଯୋଗୁଁ ଘରଯାକ ପ୍ରାୟ ଧୋଇ ହୋଇଯାଉଥିଲା । ଲୋକେ ଏପରିକି ଖାଇବାକୁ ମଧ୍ୟ ପାଇପାରୁନଥିଲେ । ଲୋକେ ଯେଉଁ ଶସ୍ୟ ରଖିବା ପାଇଁ ମଞ୍ଚା ତିଆରି କରୁଥିଲେ ସେହି ମଞ୍ଚାର କାଠକୁ କାଢ଼ି ଯାହା କନ୍ଦମୂଳ ପାଇଲେ ସିଝେଇ ଖାଉଥିଲେ ପୁଣି ବର୍ଷା କମିଲେ ଘର ସଜାଡିବାରେ ଲାଗୁଥିଲେ । ସେହି ଗାଁକୁ ଯିଏ ଯାଏ ସେମାନେ ତାଙ୍କ ଭାଷା କିଏ ମଧ୍ୟ ବୁଝି ପାରୁନଥିଲେ । କାରଣ ସେଇଠି କେବଳ ଆଦିବାସୀ ଲୋକ ରହୁଥିଲେ । ସେମାନଙ୍କୁ ଓଡ଼ିଆ ଭାଷା ଜଣା ନଥିଲା । ସେମାନେ ମେଡିକାଲ୍ କ'ଣ ଜାଣିନଥିଲେ । ବର୍ତ୍ତମାନ ଗ୍ରାମର ନିକଟସ୍ଥ ନଦୀରେ ବ୍ରିଜ୍ ବନ୍ଧାଯାଇଛି ଏବଂ ଜଙ୍ଗଲ କଟାଯାଇଛି । ପୁଣି ଗ୍ରାମର ଘର ସଂଖ୍ୟା ବା ଜନସଂଖ୍ୟା ମଧ୍ୟ ବଢ଼ି ଯାଇଛି । ସେମାନେ ଶିକ୍ଷା କ'ଣ ଜାଣି ନଥିଲେ । ସେମାନେ ଗତକାଲି ଅଙ୍ଗନୱାଡ଼ି ବିରୁଦ୍ଧରେ ଖାଦ୍ୟ ଦେଉନଥିବା ବିଷୟରେ ଲେଖି ଦେଇଛନ୍ତି ସି.ଡ଼ି.ପି.ଓ.ଙ୍କୁ ଦେବା ପାଇଁ ଏବଂ ବର୍ତ୍ତମାନ ଜଙ୍ଗଲ କମିଯିବାକୁ ଚାଷ କମୁଛି କହି ବୁଝେଇବାରୁ ସେମାନେ ଚାଷ କରୁଥିବା ଡଙ୍ଗରରୁ ଅଧାଯାଏଁ ପୋଡୁଚାଷ କରିବେ ବୋଲି ନିଷ୍ପତ୍ତି ନେଇଛନ୍ତି ।

ଆମ ପିଲାମାନେ କିପରି ପାଠ ପଢ଼ି ମଣିଷ ହେବେ ସେ ବିଷୟରେ ଚିନ୍ତା କରି ପାରୁଛନ୍ତି । ଏବଂ ରାତିରେ ଖାଇସାରିଲେ ପ୍ରାୟ ୯ରୁ ୧୦ଟା ଯାଏଁ କେତେକ ବଡ଼ ଲୋକ ମଧ୍ୟ ଆସି ତାଙ୍କର ନାମ ଲେଖି ଶିଖୁଛନ୍ତି । ତେଣୁ ମୁଁ ବହୁତ ଖୁସୀ ମନେ କରୁଛି । କାରଣ ମୋର କଥା ସେମାନେ କିଛି କିଛି ଜାଣି ପାରିଲେଣି । ମା'ମାନେ ମଧ୍ୟ ପ୍ରାୟ କିଛିଟା ଉନ୍ନତିର ବାଟକୁ ଆସୁଛନ୍ତି । କାରଣ ଆଗେ ୪/୫ଦିନର ମାଣ୍ଡିଆ ପେଜକୁ ଗୋଟିଏ ହାଣ୍ଡିରେ ରଖି ୫/୬ ଦିନ ଧରି ଖାଉଥିଲେ । ମାଠିଆକୁ ସଫା ନକରି ହିଁ ସେଥିରେ ପୁଣି ଜାଉ ରାନ୍ଧି ଖାଉଥିଲେ । ତାହା ବର୍ତ୍ତମାନ ଆଉ ନାହିଁ । ଏବେ ପ୍ରତିଦିନ ସେମାନେ ସଫାକରି ରାନ୍ଧୁଛନ୍ତି ଓ ଖାଉଛନ୍ତି । ଛୋଟ ପିଲାଙ୍କୁ ନିଜେ ସ୍କୁଲକୁ ଆଣି ଦେଇ ଛାଡି ଦେଉଛନ୍ତି । ବର୍ତ୍ତମାନ ଆମ ଗ୍ରାମରେ କେତେକ ବଡ଼ ବଡ଼ ପିଲା ମଧ୍ୟ ଅଛନ୍ତି । ସେମାନେ ପ୍ରାୟ ପଢ଼ି ଲେଖି ଶିଖିଲେଣି । ମୁଁ ଅଗ୍ରଗାମୀଠାରୁ ଯାହା ବହିପତ୍ର ପାଏ ସେମାନେ ତାକୁ ନେଇ ପଢ଼ନ୍ତି ଏବଂ ବହୁତ ଖୁସି ହୁଅନ୍ତି । ସେମାନେ ଆମ ଗାଁ ବିଷୟରେ ଲେଖା କାହିଁକି ବାହାରୁନାହିଁ ବୋଲି ମୋତେ କହନ୍ତି ।

ରାଜେନ୍ଦ୍ର ନାଏକ

ନବସୃଜନ ଶିକ୍ଷାକେନ୍ଦ୍ର, ଭ୍ରମରଯୋଡ଼

□□□

# ପାଠ ଦେଖାଏ ବାଟ

ଆମ ବାରାହାଲା ଗାଁର ଚାରି ପାଖରେ ପର୍ବତଗୁଡିକ ଘେରି ରହିଅଛି । ଗାଁ' ବିଷୟରେ ଜାଣିଲେ ସମସ୍ତେ ପ୍ରାୟ ଆଶ୍ଚର୍ଯ୍ୟ ହୋଇ ରହି ପାରିବେ ନାହିଁ । କାରଣ ବାଲିଗୁଡ଼ା ଠାରୁ ଆମ ଗାଁ ୧୮ କିଲୋମିଟର ଦୂର ହେବ । ଯୋଗାଯୋଗରେ କୌଣସି ସୁବିଧା ନାହିଁ । ଡଙ୍ଗର ପାହାଡ଼, ନଦୀନାଳ ଡ଼େଇଁ ଡ଼େଇଁ ଉଠି ଚାଲି ଚାଲି ଆସିଲେ କନ୍ଧମାଳ ଜିଲ୍ଲା ଶେଷ ସୀମାରେ ଆମ ବାରାହାଲା ଗାଁଟି ଅବସ୍ଥିତ । ହାଟବଜାର ଗଲେ ୧୮ କିଲୋମିଟର ବାଟ ଚାଲିଲେ ଯାଇ ଆଗେ ହାଟବଜାର ଦେଖିପାରୁ । ଏଠାକୁ ସରକାରୀ ଲୋକ ପ୍ରାୟ ଆସନ୍ତି ନାହିଁ ।

ମୁଁ ବର୍ତ୍ତମାନକୁ ଦୁଇମାସ ହେଲା ଏହି ଗାଁରେ ଲୋକମାନଙ୍କ ସହିତ ମିଶି ପାରିଛି । ସବୁ ଲୋକଙ୍କୁ ଏକାଠି କରି ସବୁବେଳେ ଥାଇ ସେମାନଙ୍କ ସମସ୍ୟାରେ ନିଜକୁ ସାମିଲ୍ କରି ସମାଧାନ ପନ୍ଥା ବାହାର କରିବାକୁ ଚେଷ୍ଟା କରୁଛି । ନୂଆ ନୂଆ ଯୋଜାନକୁ ଗାଁ ଲୋକଙ୍କୁ ଜଣାଉଛି । ଆମ ଅଞ୍ଚଳର ସମସ୍ତ ପ୍ରକାରର ଉନ୍ନତି ପାଇଁ ମୁଁ ସବୁବେଳେ ଚେଷ୍ଟା କରିଆସୁଛି । ଲୋକମାନଙ୍କୁ ଶିକ୍ଷା, ସ୍ୱାସ୍ଥ୍ୟ, ଖାଦ୍ୟ ଓ ପରିବେଶ କିପରି ଭଲ ରହିବ, ସେଥିପାଇଁ ଲୋକମାନଙ୍କୁ ସଚେତନ କରାଉଛି । ପିଲାମାନେ ପାଠ ପଢ଼ିବା ସଙ୍ଗେ ସଙ୍ଗେ ଭବିଷ୍ୟତରେ କିପରି ପରିଚିତ ହୋଇ ବିଭିନ୍ନ ସମସ୍ୟାର ସମାଧାନ କରିପାରିବେ ସେ ବିଷୟରେ ବୁଝାଉଛି । ଏ ଅଞ୍ଚଳରେ ଠକେଇ, ଶୋଷଣ ବିଷୟରେ ପିଲାମାନଙ୍କୁ ଜଣାଉଛି ।

ଗତ ସେପ୍ଟେମ୍ବର ମାସରେ ଗାଁ ଲୋକଙ୍କ ସହିତ ମିଶି କାର୍ଯ୍ୟ କରିଥିବାର ବିବରଣୀ ମୁଁ ଦେଉଛି : (୧) ସରକାରୀ ପ୍ରାଥମିକ ବିଦ୍ୟାଳୟ ଶିକ୍ଷକ ରହୁନଥିବା ଯୋଗୁଁ ଜିଲ୍ଲାପାଳଙ୍କ ପାଖକୁ ଯାଇ ଗାଁ ଲୋକଙ୍କ ସହିତ ସଭ୍ୟ/ସଭ୍ୟା ମୋଟ ୯ ଜଣ ମିଶି ଆପତ୍ତି ଅଭିଯୋଗ କରି ଆବେଦନ ପତ୍ର ଦେବା ସହିତ ଜିଲ୍ଲାପାଳଙ୍କୁ ଗାଁ ଲୋକ କହିଥିଲେ, 'ଦେଖନ୍ତୁ ଆଜ୍ଞା ! ଶିକ୍ଷକ ମହାଶୟ ପୋଷ୍ଟିଙ୍ଗ ହୋଇ ୧୦ ମାସ ହେଲାଣି

ଶିକ୍ଷକ ଆମ ଗାଁକୁ ଆସୁନାହିଁ କି ଆମ ସହିତ ତା'ର ଦେଖାସାକ୍ଷାତ ହୋଇ ନାହିଁ । ଆମ ଗାଁର ପାଇଁ କୋଟି କୋଟି ଟଙ୍କା ଶିକ୍ଷା ପାଇଁ ଖର୍ଚ୍ଚ ହେଉଛି ବୋଲି କୁହାଯାଉଛି । ତଥାପି ଆମେ ଶିକ୍ଷାର ଆଲୋକ ପାଇପାରୁନାହିଁ । ସ୍କୁଲ ଘର ତିଆରି ନ ହୋଇ ଆଜିକୁ ପ୍ରାୟ ୨୦/୨୫ ବର୍ଷ ହେଲାଣି, କିନ୍ତୁ ଆଗକାଳରେ ତ ଆମ ବାପା ଅଜାମାନେ ମୂର୍ଖ ଥିଲୁ । ବର୍ତ୍ତମାନ ଆମ ପିଲାଛୁଆ ମଧ୍ୟ ଆମ ପରି ମୂର୍ଖ ହୋଇ ହିଁ ରହିବେ । ତା'ହେଲେ ସ୍କୁଲ ଥିବାର ମୂଲ୍ୟ କ'ଣ ? ଆମେ ଶିକ୍ଷା କ'ଣ ଏବେ ଜାଣିଲୁଣି । ସେଇଥିପାଇଁ ଆମେ ଆପଣଙ୍କୁ କହିବା ପାଇଁ ଆସିଛୁ ।' ଜିଲ୍ଲାପାଳ କହିଥିଲେ ଯେ ସେ ନିଶ୍ଚୟ ଏହାର ପଦକ୍ଷେପ ନେବେ ।

(୨) ଆମେ ରାସ୍ତା ମରାମତି ବିଷୟକୁ ନେଇ ଏହି ଦିନରେ ହିଁ ଆଉ ଗୋଟିଏ ଦରଖାସ୍ତ ଦେଇଥିଲୁ । ବାଲନ୍ଦାପଡ଼ା ଠାରୁ ଆମେ ଗାଁକୁ ଯିବା ରାସ୍ତାରେ ଗଛଖୁଣ୍ଟ ପଥର ଅଛି । ଯିବା ଆସିବା ପାଇଁ ବହୁତ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଛି । ଜିଲ୍ଲାପାଳଙ୍କୁ ଏ ସମସ୍ତ ବିଷୟରେ ଆମେ ଜଣାଇଲୁ । ଜିଲ୍ଲାପାଳ କହିଲେ, ତୁମ ଗାଁର ରାସ୍ତା ପାଇଁ ଲକ୍ଷ ଲକ୍ଷ ଟଙ୍କା ଦିଆଯାଉଛି କିନ୍ତୁ ରାସ୍ତା ହୋଇ ପାରୁନାହିଁ କାହିଁକି ? ଆମେ କହିଲୁ, ପଇସା ହୁଏତ ଦିଆଯାଇ ଥାଇପାରେ କିନ୍ତୁ ଠିକାଦାରମାନେ ତାକୁ ଲୋକଙ୍କ କାମରେ ଲଗାଉଥିଲେ ତ' ! ଜିଲ୍ଲାପାଳ ପ୍ରତିଶ୍ରୁତି ଦେଇ କହିଲେ, ଏଥର ତୁମେ ଯୋଉ ଠିକାଦାର ପଇସା ଖାଉଛି ବୋଲି ଜାଣିବ, ତାକୁ ପ୍ରଥମେ କୁରୁଛତ୍ର ମାଡ଼ ଦେବ, ତା'ପରେ ମୋ ପାଖକୁ ଆସିବ । ମୁଁ ସେକଥା ବୁଝିବି ।

(୩) ନବସୃଜନ ଶିକ୍ଷା କମିଟି ଓ ଗ୍ରାମବାସୀମାନେ ଏକତ୍ର ମିଶି ମିଟିଂ କରି ଗାଁରେ ପାନୀୟ ଜଳର ଅସୁବିଧା ନେଇ ସରପଞ୍ଚ ଓ ବି.ଡି.ଓଙ୍କୁ ଦରଖାସ୍ତ ଦିଆଯିବା ପାଇଁ ନିଷ୍ପତ୍ତି ନିଆଯାଇଛି ।

(୪) ଆମ ଗ୍ରାମପଞ୍ଚାୟତ ପାହିରାଜୁଠାରେ ଏକ ସାକ୍ଷରତା ଅଭିଯାନକୁ ନେଇ ଏକ ଗ୍ରାମସଭା ହୋଇଥିଲା । ସେ ସମୟରେ ଆମ ବାରାହାଲା ୱାର୍ଡମେମ୍ବର ଅସିଲ ଦିଗାଲ ସରକାରୀ ପ୍ରାଥମିକ ବିଦ୍ୟାଳୟ ଶିକ୍ଷକ କାହିଁକି ଆସୁନାହିଁ ବୋଲି ଗ୍ରାମସଭାରେ କଥା ପକାଇଥିଲେ । ସରପଞ୍ଚ, ସରକାରୀ ସ୍କୁଲ ଶିକ୍ଷକ ଓ ଅନ୍ୟାନ୍ୟ କର୍ମଚାରୀମାନେ ଗୋଟେ ପଟେ ହୋଇଥିଲେ । କିନ୍ତୁ ୱାର୍ଡମେମ୍ବର ସାହସର ସହିତ ସେମାନଙ୍କ ଯୁକ୍ତିକୁ ଖଣ୍ଡନ କରି ପ୍ରତିବାଦ କରିଥିଲେ ।

ଆମ ଗାଁରେ ସ୍କୁଲ ଯେତେବେଳେ ନଥିଲା ସରକାରୀ ଲୋକେ ମଧ୍ୟ କେହି ଆସୁନଥିଲେ । ବର୍ତ୍ତମାନ ସେ ପଞ୍ଚାୟତରେ ଯିଏ ଆସିଲେ ଗାଁର ଅସୁବିଧା ବିଷୟରେ

ବୁଝିଯାଉଛନ୍ତି । ସେମାନେ ମଧ୍ୟ ସ୍କୁଲକୁ ଆସି ଦୁଃଖସୁଖ ବୁଝିଛନ୍ତି । ମୁଁ ଗାଁ ସହିତ ଉତ୍ତମ ସମ୍ପର୍କ ରଖିଛି । ଗାଁ ସହିତ ଏପରି ସହଯୋଗ ଅଛି । ଗାଁରେ କୌଣସି ଅସୁବିଧା ହେଲେ ଲୋକମାନେ ମୋତେ ଆସି ପଚାରି ବୁଝନ୍ତି ।

ବର୍ତ୍ତମାନ ସ୍କୁଲ ଗୃହ ମାଟିକାନ୍ଥରେ ଏବଂ ନଡ଼ା ଛପର କରାଯାଇଛି । ସ୍କୁଲ ଗୃହ ବଡ଼ କରିବା ପାଇଁ ଶିକ୍ଷା କମିଟି ଓ ଗ୍ରାମବାସୀ ବୈଠକ କରି ନିଷ୍ପତ୍ତି ନେଇଛନ୍ତି । ଏହି ଘରେ ପିଲାମାନେ ମଧ୍ୟ ପାଠ ପଢ଼ନ୍ତି ଓ ମୁଁ ମଧ୍ୟ ସେ ସ୍କୁଲରେ ରହିଛି । ଆମ ସ୍କୁଲ ଘରଟିକୁ ତେଣୁ ଦୁଇଟି ବଖରାରେ ବିଭକ୍ତ କରାଯାଇଛି । ପିଲାମାନଙ୍କୁ ମୁଁ ଦିନବେଳେ ଅର୍ଥାତ; ସକାଳ ୭ ଘଣ୍ଟାଠାରୁ ୧୧ ଘଣ୍ଟା ପର୍ଯ୍ୟନ୍ତ ପାଠ ପଢ଼ାଏ । ପୁଣି ସଂଧ୍ୟା ୬ଘଣ୍ଟା ଠାରୁ ୯ଘଣ୍ଟା ପର୍ଯ୍ୟନ୍ତ ପଢ଼ାଏ । ସେମାନଙ୍କୁ ପ୍ରତ୍ୟେକ ଦିନ ଗୀତ, ନାଚ, ଗପ, ପହଲି, ସାଧାରଣ ଜ୍ଞାନ ଇତ୍ୟାଦି ଶିଖାଇବାକୁ ପଡୁଛି । ପିଲମାନେ ତାଙ୍କ ଆଞ୍ଚଳିକ ଭାଷାରେ ମଧ୍ୟ ଗୀତ, ଗପ, ପହଲି ଇତ୍ୟାଦି କହୁଛନ୍ତି ।

ଆଗେ ଗାଁର ପରିବଶେ ଏତେ ଅପରିଷ୍କାର ଥିଲା ଯେ ଦାଣ୍ଡରେ ଚାଲିଯିବା ସମୟରେ ନାକ ବନ୍ଦ କିରବାକୁ ପଡୁଥିଲା । ମୁଁ ଏସବୁ ଦେଖି କିଛି ଗୋଟେ ଉପାୟ କରିବାକୁ ପଡିବ ବୋଲି ଭାବିଲି ଓ ମୁଁ ଆମ ସ୍କୁଲର ଛୋଟ ଛୋଟ ଭାଇଭଉଣୀଙ୍କ ସହିତ ମିଶି ଏହି ଅଳିଆଆବର୍ଜନାକୁ ସଫା କରିବାରେ ମନ ଦେଲି । ପିଲାମାନେ ପ୍ରଥମେ ପ୍ରଥମେ ଯିବାକୁ ମଙ୍ଗୁ ନଥିଲେ । କିନ୍ତୁ ମୁଁ ନିଜେ ଯେତେବେଳେ କୁଡ଼ୀ ଝାଡୁ ଧରି ସଫା କରିବାରେ ଲାଗିଲି ସେତେବେଳେ ଆଉ ମୋତେ ପିଲାଙ୍କୁ କହିବାକୁ ପଡ଼ି ନଥିଲା । ସେମାନେ ନିଜେ ନିଜେ ଆସି କାମ କରିବାରେ ଲାଗିପଡିଲେ । ସେହି ଦିନଠାରୁ ପିଲାମାନେ ନିଷ୍ପତ୍ତି ନେଲେ ଯେ, ପ୍ରତି ରବିବାର ଦିନ ଗାଁ ଦାଣ୍ଡ ସେମାନେ ସଫା କରିବେ । ବର୍ତ୍ତମାନ ପର୍ଯ୍ୟନ୍ତ ସେହି କାମଟି ଠିକ୍ ଭାବେ ଚାଲିଛି । ବର୍ତ୍ତମାନ ଆମ ଗାଁ ଭିତର ଓ ଦାଣ୍ଡ ପୂରା ସଫାସୁତୁରା ହୋଇ ରହିଛି ।

ପ୍ରକୃତରେ ଶିକ୍ଷା ହିଁ ସବୁଥିକୁ ବାଟ ବତାଇ ଦିଏ ବୋଲି ମୋର ମତ ।

**ନବସୃଜନ ଶିକ୍ଷାକେନ୍ଦ୍ର, ବାରାହାଲା**

**ଡ଼େରାକୁମ୍ପା, କନ୍ଧମାଳ**



# ମୋ ଆଶା; ମୋ ସ୍ୱପ୍ନ

ମୁଁ ଆଗେ ତଳପଙ୍ଗା ନବସୃଜନ ଶିକ୍ଷାକେନ୍ଦ୍ରରେ ଥିଲି । ବର୍ତ୍ତମାନ କଡିସାରୁ ଶିକ୍ଷାକେନ୍ଦ୍ରରେ ଗୁରୁଭାଇ ଅଛି । ମୁଁ ଏଇ ସ୍କୁଲ୍‌କୁ ଆସିବାର କେତେ ମାସ ହୋଇଗଲାଣି । ତେଣୁ ଏହି ସ୍କୁଲ୍ ବିଷୟରେ ମୁଁ କିଛି ଲେଖୁଛି ।

ଏହି କଡ଼ିସରୁ ଗାଁଟି କନ୍ଧମାଳ ଜିଲ୍ଲାର ଫିରିଙ୍ଗିଆ ବ୍ଲକ୍ ଅନ୍ତର୍ଗତ ପର୍ଲାବୃଡ଼ି ଗ୍ରାମପଞ୍ଚାୟତରେ ଅବସ୍ଥିତ । ଆମ ଗାଁର ମୋଟ ପରିବାର ସଂଖ୍ୟା ୧୮ ଓ ଏଠାରେ ଆଦିବାସୀ ଓ ଅଣ-ଆଦିବାସୀ ଉଭୟ ଶ୍ରେଣୀର ଲୋକ ରହନ୍ତି । ପ୍ରତ୍ୟେକ ଆଦିବାସୀ ଅଞ୍ଚଳ ଭଳି ଆମ ଗାଁର ଲୋକେ ମଧ୍ୟ ବହୁତ ଦୁଃଖକଷ୍ଟ ଭିତରେ ଜୀବନଯାପନ କରନ୍ତି । ଆମ ଗାଁର ସବୁଲୋକ ଖଟିଖିଆ । ଦିନରାତି ଖଟିଲେ ଯାଇ ଖାଇବାକୁ ମୁଠେ ମିଳେ । ସେଇଟା ବି ସବୁ ଦିନ ନୁହେଁ । ପେଟର ଭୋକ ଯାଏ ନାହିଁ । ସେମାନେ ଯେତିକି ପରିଶ୍ରମ କରି ରୋଜଗାର କରନ୍ତି, ଠିକ୍ ପାରିଶ୍ରମିକ ପାଇବା ତା ଦୂରର କଥା; ଯେତିକି ପାରିଶ୍ରମିକ ବି ମିଳିଥାଏ ତାହା ବି ଠକେଇ ଓ ଶୋଷଣର ଯନ୍ତା ଭିତରେ ପଡିଯାଏ । ଯାହାର କିଛି ଜମି ଅଛି ସିଏ ଜମି ଚାଷ କରି ଅମଳ କରି ସାରିବା ପରେ ଗାଁ ଛାଡି ଅନ୍ୟ ଗାଁମାନଙ୍କୁ କାମ କରିବା ପାଇଁ ପଳାଇଯାଏ । ଏଇଥିପାଇଁ ଆମର ସାମାଜିକ ବ୍ୟବସ୍ଥାରେ ଅନେକ ଅସୁବିଧା ଦେଖାଦେଉଛି ।

ସେ ସମସ୍ୟାର ସମାଧାନ କରିବା ପାଇଁ ଆମେ ଆମ ଚେଷ୍ଟା ଚଳାଇଛୁ । ଆଉ ଅନେକଗୁଡିଏ ସମସ୍ୟା ଅଛି ଯଥା; ଯାହାର ଆର୍ଥିକ ଅବସ୍ଥା ଟିକେ ସ୍ୱଚ୍ଛଳ ସେ ମଦ ପିଇ ମାତାଲ୍ ହୋଇ ଗଡୁଛି । ଏହାଛଡ଼ା ସ୍ୱାସ୍ଥ୍ୟ ପ୍ରତି ଅସଚେତନତା, ଅନ୍ଧବିଶ୍ୱାସ ଇତ୍ୟାଦି ଅନେକ ସମସ୍ୟା ଏ ଅଞ୍ଚଳରେ ରହିଛି । ଗରିବ ଲୋକ ଯେପର୍ଯ୍ୟନ୍ତ ଶିକ୍ଷିତ, ସଚେତନ ଓ ଜ୍ଞାନି ହୋଇ ପାରିନାହାନ୍ତି ସେପର୍ଯ୍ୟନ୍ତ କୌଣସି ସମସ୍ୟାର ସମାଧାନ ହୋଇପାରିବ ନାହିଁ । ସବୁ ଗାଁ ପରି ଆମ ଗାଁରେ ମଧ୍ୟ ସେହିପରି ଅବସ୍ଥା । ସେଇଠି ସମସ୍ୟାର ସମାଧାନ ହୋଇଯିବା ପରି ଲାଗୁଛି କିନ୍ତୁ ପୁଣି ସମସ୍ୟା ଉପୁଜୁଛି ।

ହଁ, ଆମ କଡିସରୁ ଗାଁରେ ଯେଉଁ ନବସୃଜନ ଶିକ୍ଷାକେନ୍ଦ୍ର ଚାଲୁଛି, ତା'ର ଆୟକାରୀ ପନ୍ଥା ହିସାବରେ ଅଗ୍ରଗାମୀ ତରଫରୁ ୧୫,୦୦୦ ଟଙ୍କା ଅନୁଦାନ ଆକାରରେ ମିଳିଛି । ଏଥିରୁ ୩,୭୦୦ ଟଙ୍କାର ଛେଳି କିଣି ୬ଟି ପରିବାରକୁ ଦିଆଯାଇଛି । ଛେଳି ବଢ଼ିବା ପରେ ପ୍ରତ୍ୟେକ ପିଲାଙ୍କୁ ଗୋଟିଏ ଲେଖାଏଁ ଛେଳି ଦିଆଯିବ ଓ ସେମାନେ ନିଜ ନିଜର ଛେଳିର ରକ୍ଷଣାବେକ୍ଷଣର ଦାୟିତ୍ୱ ନେବେ । ଆଉ ସାତ ହଜାର ତିନିଶହ ଟଙ୍କାରେ ହଳଦୀ, ଚାଉଳ, ତେନ୍ତୁଳି ଇତ୍ୟାଦି ଋତୁକାଳୀନ ବ୍ୟବସାୟ କରାହେଉଛି । ବଳକା ୪,୦୨୦ ଟଙ୍କା ଜମା ଖାତାରେ ରଖିଛୁ । ଯଦି ଆବଶ୍ୟକ ହୁଏ ଉଠେଇବୁ ।

**ମୋ ଶିକ୍ଷାକେନ୍ଦ୍ର କଥା:**

ମୋ ଶିକ୍ଷାକେନ୍ଦ୍ରରେ ୨୯ ଜଣ ଛାତ୍ରଛାତ୍ରୀ ପଢୁଛନ୍ତି । ସେମାନଙ୍କ ମଧ୍ୟରୁ ୧୨ ଜଣ ପୁଅ ଓ ୧୭ ଜଣ ଝିଅ । ପ୍ରତ୍ୟେକ ଦିନ ୨୧/୨୨ ଜଣ ପଢ଼ିବାକୁ ପାଇଁ ଆସୁଛନ୍ତି । ପୁଅମାନଙ୍କ ଅପେକ୍ଷା ଝିଅମାନଙ୍କର ପଢ଼ିବାକୁ ଅଧିକ ଆଗ୍ରହ ରହିଛି । ଆଉ ପିଲାମାନଙ୍କୁ ନିକଟତମ ଶିକ୍ଷାକେନ୍ଦ୍ରକୁ ବୁଲାଇବାକୁ ନେଉଛି; ଯାହାଦ୍ୱାରା ପିଲାମାନଙ୍କ ମଧ୍ୟରେ ଏକ ସୁସମ୍ପର୍କ ପ୍ରତିଷ୍ଠା ହୋଇପାରିବ । ତା'ସହିତ ନିଜ ଶିକ୍ଷାକେନ୍ଦ୍ରଠାରୁ ଆଉ ଗୋଟିଏ ଶିକ୍ଷାକେନ୍ଦ୍ରର କି କି ତଫାତ୍ ରହିଛି, ତାହା ସେମାନେ ଅନୁଭବ କରି ମୋତେ କହୁଛନ୍ତି ।

**ଶିକ୍ଷାକମିଟି:**

ଗାଁର ଲୋକମାନେ ଓ ଶିକ୍ଷାକମିଟି ଶିକ୍ଷାକେନ୍ଦ୍ରକୁ ସୁପିରିଚାଳନା କରୁଛନ୍ତି । ସେମାନେ ଶିକ୍ଷାକେନ୍ଦ୍ରର ସମସ୍ତ ଦାୟିତ୍ୱ ନେଇଛନ୍ତି । ତା'ସହିତ ମୋର ମଧ୍ୟ ସୁବିଧା ଅସୁବିଧା କଥା ବୁଝୁଛନ୍ତି । ଆୟକାରୀ କାର୍ଯ୍ୟକ୍ରମରେ ସମସ୍ତ ଗ୍ରାମବାସୀ ସହଯୋଗ କରୁଛନ୍ତି ଓ ଶିକ୍ଷାକେନ୍ଦ୍ରଟି କେମିତି ଦୀର୍ଘସ୍ଥାୟୀ ହେବ ସେଥିପାଇଁ ଚେଷ୍ଟା ଚଳାଇଛନ୍ତି । ନିଜର ସାମର୍ଥ୍ୟ ଅନୁଯାୟୀ ସବୁପ୍ରକାର ସାହାଯ୍ୟ କରିବୁ ବୋଲି ପ୍ରତିଶ୍ରୁତି ଦେଉଛନ୍ତି ।

ଏପରି ଆମ ଶିକ୍ଷାକେନ୍ଦ୍ରଟି ଚାଲିଛି । ମୁଁ ଆଶା କରୁଛି ଆମ ଶିକ୍ଷାକେନ୍ଦ୍ରର ଅନେକ ସମସ୍ୟାର ସମାଧାନ ଧୀରେ ଧୀରେ ହୋଇଯିବ ।

ସୁଶାନ୍ତ ପ୍ରଧାନ
ନବସୃଜନ ଶିକ୍ଷାକେନ୍ଦ୍ର, କଡ଼ିସରୁ



# ଲୋକ ବଦଳୁଛନ୍ତି

ପାହାଡ଼ ଡ଼ଙ୍ଗର ଭିତରେ ଥିବା ଗାଁଟିର ନାମ ବରଡ଼ାଯୋଡ଼ି; ପଞ୍ଚାୟତ: ତେନ୍ତୁଳିଖୁଣ୍ଟି, ଜି: ନବରଙ୍ଗପୁର । ଏହି ଗାଁଟି ତେନ୍ତୁଳିଖୁଣ୍ଟି ପଞ୍ଚାୟତଠାରୁ ପ୍ରାୟ ୧୦କି.ମି. ଦୂରରେ ଅବସ୍ଥିତ । ଏହି ଗାଁରେ ମୋଟ ୫୩ଘର ଆଦିବାସୀ ପରିବାର ବସବାସ କରୁଛନ୍ତି । ଗାଁର ମୋଟ ଜନସଂଖ୍ୟା ହେଉଛି ୨୨୨ । ଏଥିମଧ୍ୟରୁ ପୁରୁଷ ୧୦୬ ଜଣ ଓ ମହିଳା ୧୧୬ ଜଣ । ଗାଁରେ କେହି ପାଠଶାଠ ପଢ଼ିନାହାନ୍ତି । ଏହି ଗାଁରେ ରାସ୍ତାଘାଟ, ପିଇବା ପାଣି, ଗାଧୋଇବା ପାଣି ପାଇଁ କିଛି ସୁବିଧା ନାହିଁ । ଏହି ଗାଁକୁ ସରକାରୀ କର୍ମଚାରୀ କେବେ ଯାଆନ୍ତି ନାହିଁ କି ଲୋକମାନଙ୍କ ଭଲମନ୍ଦ ସରକାରୀ ଲୋକ ବୁଝନ୍ତି ନାହିଁ । ଏହାଫଳରେ ଏହି ଗାଁଟି ସରକାରଙ୍କ ପ୍ରତ୍ୟେକ ସୁବିଧାସୁଯୋରୁ ବଞ୍ଚିତ । ଗାଁର ପ୍ରାୟ ସମସ୍ତେ ଗରିବ ଲୋକ; ଜମିବାଡ଼ି କିଛି ନାହିଁ । କେବଳ ଗାଁର ୪/୫ ଜଣଙ୍କର ହିଁ କିଛି କିଛି ଜମିବାଡ଼ି ଅଛି । ସମସ୍ତେ ପୋଡୁଚାଷ ଉପରେ ନିର୍ଭର କରି ଚଳନ୍ତି । ଏହି ଗ୍ରାମରେ ମୁଁ ୧୯୯୬ ମସିହାଠାରୁ ରହିଆସୁଅଛି । ଏଥିମଧ୍ୟରୁ ମୁଁ ଅଢ଼େଇ ବର୍ଷ ଭିତରେ ଘଟିଥିବା ମୋର ଅନୁଭୂତି ମୁଁ କହୁଛି ।

ଗାଁରେ ପିଇବା ପାଣିର ବହୁତ ଅସୁବିଧା ଥିଲା । ଅଗ୍ରଗାମୀ ତରଫରୁ ଦୁଇଟି କୂଅ ନିର୍ମାଣ କରାଯାଇଥିଲା । ଉକ୍ତ କୂଅର ପାଣି ଖରାମାସରେ ସମ୍ପୂର୍ଣ୍ଣ ଭାବେ ଶୁଖିଯାଉଥିଲା । ଗାଁଲୋକ ଏଥିରେ ବହୁତ ହଇରାଣ ହେଉଥିଲେ ଓ ବର୍ଷା ସମୟରେ ବର୍ଷା ପାଣି ପଶି ଏହି କୂଅର ପାଣି ପୂରାଗୋଳିଆ ହୋଇଯାଉଥିଲା । ଏହି ଅସୁବିଧା ଦୂର କରିବା ପାଇଁ ଗାଁଲୋକମାନଙ୍କୁ ଡାକି ବୈଠକ କଲି ଓ ବୁଝାଇ ଆମର ଅସୁବିଧା ବିଷୟ ଜିଲ୍ଲାପାଳ ଓ ବି.ଡି.ଓ.ଙ୍କୁ ଲେଖି ଜଣାଇବା ପାଇଁ କହିଲି । ଏଥିରେ ସମସ୍ତେ ରାଜି ହେଲେ । ଏହାପରେ ଅଭିଯୋଗ ପତ୍ର ଲେଖି ଜିଲ୍ଲାପାଳ ଓ ବି.ଡ଼ି.ଓ.ଙ୍କୁ ନେଇ ଦେବା ପରେ ୧୯୯୮ ମସିହାରେ ଗୋଟିଏ ଓ ୧୯୯୯ ମସିହାରେ ଆଉ ଗୋଟିଏ ନଳକୂଅ ନିର୍ମାଣ ହୋଇଛି । ବର୍ତ୍ତମାନ ଏଇ ଗାଁରେ ପାଣିର ଆଉ ସେତେ ଅସୁବିଧା

ନାହିଁ । ଏହି ବର୍ଷ ରାସ୍ତା ନିର୍ମାଣ କରିବା ପାଇଁ ପଞ୍ଚାୟତ ଅନୁମୋଦନ କରିଛି ।

ଗାଁରେ ଗୋଟିଏ 'ଜଙ୍ଗଲ ସୁରକ୍ଷା କିମିଟି' କରାଯାଇଛି । ଏଥିରେ ଗାଁଲୋକ ଜଙ୍ଗଲର ରକ୍ଷଣାବେକ୍ଷଣ କରୁଛନ୍ତି । ଏହା ବ୍ୟତୀତ ୧୯୯୯ ବର୍ଷରେ ଗାଁର ପୂର୍ବପାର୍ଶ୍ୱରେ ଗୋଟିଏ ଡଙ୍ଗର ଅଛି । ସେହି ଡଙ୍ଗରରେ ଶାଳ ଗଛ ଅଧିକ ଅଛି । ଏହି ଡଙ୍ଗରକୁ କାଟି ପ୍ରତିବର୍ଷ ପୋଡୁଚାଷ କରୁଥିଲେ । ଗାଁଲୋକମାନେ ଏଇଠି ଜଙ୍ଗଲ ଛାଡ଼ିବା ପାଇଁ ମନା କରୁଥିଲେ । ଏହା ଦେଖି ମୁଁ ପିଲାମାନଙ୍କୁ ସ୍କୁଲ୍‌ରେ ବୁଝାଇ କହିଲି, 'ଦେଖ ପିଲେ ! ଏହି ଡଙ୍ଗରରେ କେତେ ଶାଳ ଗଛ ଅଛି । ତୁମେ ବଡ଼ ହେଲା ବେଳକୁ ଏହି ଗଛ ଆହୁରି ବଡ଼ ବଡ଼ ହୋଇଯାଇଥିବ । ତୁମର ସତରେ କେତେ ଉପକାରରେ ଲାଗିବ, କହିଲ । ଏଥିପାଇଁ ଏହି ଡଙ୍ଗରର ଗଛକୁ ଆମେ ରକ୍ଷା କରିବା ।' ତା'ପରଦିନ ସବୁ ପିଲାଙ୍କୁ ଧରି ମୁଁ ଡଙ୍ଗରକୁ ଗଲି ଓ ଆମେ ଡଙ୍ଗରରେ ଥିବା ଅନାବନା ଗଛ ସବୁ କାଟିଦେଲୁ । ଏପରି ୭/୮ ଦିନ ଗଲାପରେ ଲୋକମାନେ ଏକଥା ଦେଖିଲେ ଓ ସେମାନଙ୍କ ମନ ବଦଳିଗଲା । ସେମାନେ ଏଥର ଜଙ୍ଗଲ ଛାଡିବା ପାଇଁ ରାଜି ହୋଇଗଲେ । ବର୍ତ୍ତମାନ ଆମେ ଦୁଇଟି ଜଙ୍ଗଲକୁ ସୁରକ୍ଷା କରୁଛୁ ।

ଗାଁର କେତେଜଣ ଲୋକ ପ୍ରବଳ ମଦ ପିଉଥିଲେ । ସେମାନେ ଅଗ୍ରଗାମୀକୁ ବିରୋଧ କରୁଥିଲେ । ଗାଁଲୋକଙ୍କ ସହିତ ବୈଠକ କଲେ ସେଇ କେତେ ଜଣ ମାତାଲ୍ ମଦପିଇ ଗଣ୍ଡଗୋଳ କରୁଥିଲେ । ମୁଁ ସ୍କୁଲ୍‌ରେ ପାଠ ପଢ଼ାଇବା ବେଳେ ମଧ ମୋତେ ଆସି ଗାଳିଗୁଲଜ କରୁଥିଲେ । ମୁଁ କିନ୍ତୁ ସେମାନଙ୍କ ଉପରେ କେବେ ରାଗ ରଖିନାହିଁ । ମୋର କେବଳ ଚିନ୍ତ ଥାଏ ମୁଁ କିପରି ସେମାନଙ୍କୁ ଠିକ୍ ବାଟକୁ ଆଣିପାରିବି । ମୁଁ ଧୀରେ ଧୀରେ ସେମାନଙ୍କୁ ସବୁକଥା ବୁଝାଇକହିଲି । ପରେ ସେମାନେ ବୁଝିଗଲେ ଓ ଗଣ୍ଡଗୋଳ କଲେନାହିଁ । ମଦ ପିଇବା ବି କମ୍ କରିଦେଇଛନ୍ତି । ବର୍ତ୍ତମାନ ସେହି ମଦୁଆଙ୍କ ଭିତରୁ ଜଣକର ସ୍ତ୍ରୀ ମହିଳାମଣ୍ଡଳର ସଭାପତି ଅଛନ୍ତି ।

ସ୍କୁଲ ପିଲାମାନଙ୍କୁ ନେଇ ଶିଶୁ ବବୈଠକ କରାଯାଉଛି । ଏହି ବୈଠକରେ ଖେଳ, ଗୀତ, ଗପ ଓ ତର୍କ ଆଦି ପିଲାଙ୍କୁ ଶିଖାଯାଉଛି । ଏହାଦ୍ୱାରା ପିଲାମାନଙ୍କ ମଧରେ ଭାବର ଆଦାନପ୍ରଦାନ ହେବା ସହିତ କହିବାର ଶକ୍ତି ବଢୁଛି ।

ଆମେ ଉପକେନ୍ଦ୍ରର ସମସ୍ତ ଗୁରୁଭାଇ/ଭଉଣୀ ମିଶି ସ୍କୁଲର ପିଲାମାନଙ୍କୁ ନେଇ ଗୋଟିଏ ପ୍ରାକୃତିକ କମିଟି କରୁଛୁ । ଏଥିରେ ପିଲା ଯାହା ପ୍ରଶ୍ନ ପଚାରେ ଆମେ ସେସବୁକୁ ଅତ୍ୟନ୍ତ ସରଳ ଭାବରେ ବୁଝାଇବାକୁ ଚେଷ୍ଟା କରିଥାଉ । ଏହାଦ୍ୱାରା ପିଲାଙ୍କ ଜ୍ଞାନ ବା ଭାବନା ଶକ୍ତି ବୃଦ୍ଧି ପାଏ ।

ସ୍କୁଲ୍‌ର ଚାରିଜଣ ପିଲାଙ୍କୁ ନେଇ ଗୋଟିଏ ମନ୍ତ୍ରୀମଣ୍ଡଳ ଗଢ଼ାଯାଇଛି । ଏମାନଙ୍କୁ ମଧ୍ୟରୁ ଜଣେ ଶିକ୍ଷାମନ୍ତ୍ରୀ, ଜଣେ ସ୍ୱାସ୍ଥ୍ୟମନ୍ତ୍ରୀ, ଜଣେ ଆଲୁଅମନ୍ତ୍ରୀ ଓ ଆଉ ଜଣେ ସଫେଇ ମନ୍ତ୍ରୀର ଦାୟିତ୍ୱ ନେଇଛନ୍ତି । ଏମାନଙ୍କର ଦାୟିତ୍ୱସବୁ ଅଲଗା ଅଲଗା । ଉଦାହରଣ ସ୍ୱରୂପ; ଶିକ୍ଷାମନ୍ତ୍ରୀ ଗୁରୁ ନଥିବାବେଳେ ପିଲାମାନଙ୍କୁ ଡାକି ସ୍କୁଲ୍ ଘରେ ଆଣି ଜମାକରେ ଓ ପାଠ ପଢ଼ାଏ । ସ୍ୱାସ୍ଥ୍ୟମନ୍ତ୍ରୀ ପିଲାମାନେ ସଫାସୁତୁରା ରହିଛନ୍ତି କି ନାହିଁ ପରୀକ୍ଷା କରେ ଓ ସେମାନଙ୍କ କଥା ବୁଝେ । ସେମାନଙ୍କୁ ସଫାସୁତୁରା ରହିବା ପାଇଁ ପ୍ରବର୍ତ୍ତାଏ । ପ୍ରତିଦିନ ଲଣ୍ଠନ ଜଳାଇବା ଦାୟିତ୍ୱ ଆଲୁଅ ମନ୍ତ୍ରୀଙ୍କର । ସ୍କୁଲ୍ ସଫା ଅଛି କି ନାହିଁ, ଲଣ୍ଠନ କାଚ ସଫା ଅଛି କି ନାହିଁ, କିରୋସିନି ଅଛି କି ନାହିଁ, ସେ ଏସବୁ କଥା ବୁଝେ । ଏସବୁ ଦ୍ୱାରା ପିଲାମାନଙ୍କ ଭିତରେ ଦାୟିତ୍ୱବୋଧ ବିଷୟରେ ସଚେତନତା ଆସିଥାଏ ।

ଆମ ସ୍କୁଲ୍‌ରେ 'ସ୍କୁଲ୍ ପାଣ୍ଠି' ବି ଅଛି । ଏଥିରେ ବର୍ତ୍ତମାନ ୪ଟି ଛେଳି, ୩୨ମାଣ ଚାଉଳ ଓ ୫୦୦ ଟଙ୍କା ଅଛି । ଭବିଷ୍ୟତରେ ଏହି ପାଣ୍ଠି କେମିତି ବଢ଼ିବ ଓ ଅଗ୍ରଗାମୀର ବିନା ସହାୟତାରେ ସ୍କୁଲ୍‌ଟି କେମିତି ଚାଲିପାରିବ, ସେ ବିଷୟରେ ଲୋକମାନଙ୍କୁ ବୁଝାଇ ଦିଆଯାଇଛି ।

ଗାଁର ଲୋକମାନେ ଆଗେ ସ୍ୱାସ୍ଥ୍ୟ ପ୍ରତି ଆଦୌ ସଚେତନ ନଥିଲେ । ଡାକ୍ତରୀ ଔଷଧପତ୍ର ଉପରେ ମୋଟ ବିଶ୍ୱାସ କରୁ ନଥିଲେ । ଅନେକ ବୁଝାଇବା ପରେ ସେମାନେ ବର୍ତ୍ତମାନ ଜର ହେଲେ କିମ୍ବା ଆଉ କ'ଣ ହେଲେ ମୋ ପାଖକୁ ବୁଝିବା ପାଇଁ ଆସୁଛନ୍ତି ଓ ମୋ ପାଖରେ ଔଷଧ ଥିଲେ ସେମାନେ ନେଇ ଖାଉଛନ୍ତି । ମୁଁ ଏହି ଗାଁକୁ ଆସିବା ପୂର୍ବରୁ ମା'ମାନଙ୍କ ଭିତରେ ସେତେଟା ଏକତା ନଥିଲେ । ମୁଁ ଆସିବା ପରେ ମଧ୍ୟ ସେମାନେ ବୈଠକକୁ ଡାକିଲେ ଆଦୌ ଆସୁ ନଥିଲେ । ମୁଁ ସେମାନଙ୍କୁ ଏସବୁ ବିଷୟରେ ବାରମ୍ବାର ବୁଝାଇଲି । ଏହାରି ଫଳରେ କେବଳ ୫/୬ ଜଣ ମା' ବୈଠକକୁ ଆସିଲେ । କେତେକ ମା' ବୈଠକକୁ ଆସିଲେ ସେମାନଙ୍କର ସ୍ୱାମୀମାନେ ସେମାନଙ୍କୁ ଗଣ୍ଡଗୋଳ କରିବେ ବୋଲି ଡରୁଥିଲେ । କିନ୍ତୁ ମୁଁ ଏ ବିଷୟ ପୁରୁଷ ଲୋକମାନଙ୍କୁ ମଧ୍ୟ ଜଣାଇଲି । ପରେ ସମସ୍ତେ ମା'ଏକାଠି ହେଲେ ଓ ମୁଁ ସେମାନଙ୍କୁ ନେଇ ଏକ ସଂଗଠନ ଅର୍ଥାତ 'ମହିଳାମଣ୍ଡଳ' ଗଢ଼ିବା ବୋଲି କହିଲି । ଏହାପରେ ସେମାନେ 'ମହିଳାମଣ୍ଡଳ' ଗଠନ କରିବା ପାଇଁ ରାଜିହେଲେ । 'ମହିଳାମଣ୍ଡଳ'ର ପ୍ରତ୍ୟେକ ସଭ୍ୟା ୫ଟଙ୍କା କରି ଚାନ୍ଦା ଆଦାୟ କଲେ ଓ ଏହାକୁ ବ୍ୟାଙ୍କରେ ଜମା ରଖାଗଲା । ଏହାପରେ ଅଗ୍ରଗାମୀ ମହିଳାମଣ୍ଡଳକୁ ୧୦,୦୦୦ଟଙ୍କା ଅନୁଦାନ ଦେଲା ।

ଏହି ଟଙ୍କା ଦ୍ୱାରା ମା'ମାନେ କୃଷି ବନଜାତ ଦ୍ରବ୍ୟ କିଣି ବ୍ୟବସାୟ କରୁଛନ୍ତି । ଯାହା ଲାଭ ହେଉଛି, ତାହା ମହିଳାମଣ୍ଡଳ ପାସ୍ ବୁକ୍‌ରେ ଜମା କରୁଛନ୍ତି ଏବଂ ପ୍ରତି ମାସରେ ଥରେ ଲେଖାଏଁ ମହିଳାମଣ୍ଡଳର ବୈଠକ କରି ଗାଁର ସୁବିଧାଅସୁବିଧା ବିଷୟରେ ଆଲୋଚନା କରୁଛନ୍ତି ।

ଗତ ବର୍ଷକ ତଳେ ଏହି ବରଡ଼ାଯୋଡି ଗାଁ ଓ ପାଖରେ ଥିବା ଆଉ ଗୋଟିଏ ଗାଁର ଝଗଡ଼ା ହେଲା । ଉଭୟ ଗାଁଲୋକଙ୍କ ମଧ୍ୟରେ ଗଣ୍ଡଗୋଳ ଓ ଏହି ଘଟଣାରେ ଜଣକର ମୁଣ୍ଡ ମଧ୍ୟ ଫାଟିଗଲା । ମୋତେ ବରଡ଼ାଯୋଡ଼ି ଗାଁର ଲୋକ କହିଲେ ଗୁରୁ ତୁମେ ଖଣ୍ଡିଏ ଲେଖିଦିଅ । ଆମେ ଥାନାକୁ ଯିବୁ । ମୁଁ ସେମାନଙ୍କୁ ବୁଝାଇଲି କହିଲି, 'ଜଣେ ଯଦି ଭୁଲ୍ କଲା, ଆମେ ବି ଆଉ ଥରେ ଭୁଲ୍ କରିବା କାହିଁକି ? ଥାନାକୁ ଗଲେ ତା'ର ଯାହା କ୍ଷତି ହେବ ହେବ, ଆମେ ବି ଥାନାକୁ ଦୌଡ଼ି ଦୌଡ଼ି ମରିବା । ତେଣୁ ଆମେ ଥାନାକୁ ନଯାଇ ଏଇଠି ହିଁ କିଛି ଗୋଟିଏ ସମାଧାନ କରିବା ।' ଲୋକମାନେ ବୁଝିଗଲେ ଓ କହିଲେ 'ସତକଥା; ଥାନା ଦୋଷୀ ଓ ନିର୍ଦ୍ଦୋଷଲୋକଙ୍କୁ ଦଣ୍ଡ ଦେଇ ଜାଣେ ସିନା; ସମସ୍ୟାର ସମାଧାନ କରିପାରେନା ।' ସେମାନେ ଆଉ ଥାନାକୁ ଗଲେ ନାହିଁ ଓ ଦୁଇ ଗାଁର ଲୋକ ବସି ସେହି କଥାଟିକୁ ସମାଧାନ କରିଦେଲେ । ବର୍ତ୍ତମାନ ଏହି ଦୁଇ ଗାଁ ମଧ୍ୟରେ ସୁସମ୍ପର୍କ ଗଢ଼ି ଉଠିଛି ଓ ପରସ୍ପର ମିଳିମିଶି ଚଳୁଛନ୍ତି । ଏହିପରି ଭାବେ ମୁଁ ଏହି ଗାଁରେ ରହି ଲୋକଙ୍କ ସହ ସୁସମ୍ପର୍କ ସ୍ଥାପନ କରି ରହିଛି । ଲୋକଙ୍କ ଓ ପିଲାମାନଙ୍କ ସୁଖଦୁଃଖରେ ଭାଗୀ ହେଉଛି ।

ପ୍ରେମମହାନ୍ତି ସେମିଲି
ନବସୃଜନ ଶିକ୍ଷାକେନ୍ଦ୍ର, ବରଡ଼ାଯୋଡି
ଗୌଡଗୁଡା, ନବରଙ୍ଗପୁର



